# ମନ୍ଦ୍ର ସ୍ୱର

# ଚଃନ୍ଦ୍ରା ସମ୍ଭାର




ଜ୍ଞାନେନ୍ଦୁ କୁମାର ନାୟକ
ଜଗତ୍ କୁମାର ନାୟକ

# ମହେଶ୍ୱର ରଚନା ସମ୍ଭାର

ସଂକଳନ ଓ ସଂପାଦନା
ବ୍ରଜେନ୍ଦୁ କୁମାର ନାୟକ
ଜଗତ କୁମାର ନାୟକ

ପୂଜ୍ୟପୂଜା, ଓଡ଼ିଶା
ମ୍ୟୁନିସିପାଲ୍ ମାର୍କେଟ୍ କମ୍ପ୍ଲେକ୍ସ, ପୁରୁଣା ବସ୍‌ଷ୍ଟାଣ୍ଡ ସାମ୍ନା
ଭୁବନେଶ୍ୱର-୯

# ମହେଶ୍ୱର ରଚନା ସମ୍ଭାର

ସଂକଳନ ଓ ସଂପାଦନା
ବ୍ରଜେନ୍ଦୁ କୁମାର ନାୟକ
ଜଗତ୍ କୁମାର ନାୟକ

ପ୍ରକାଶକ : ପୂଜ୍ୟପୂଜା, ଓଡ଼ିଶା
ମ୍ୟୁନିସିପାଲ୍ ମାର୍କେଟ୍ କମ୍ପ୍ଲେକ୍ସ, ପୁରୁଣା ବସ୍‌ଷ୍ଟାଣ୍ଡ ସାମ୍ନା,
ଭୁବନେଶ୍ୱର-୯

ଅକ୍ଷର : ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ : ପଦ୍ମା କମର୍ସିଆଲ୍ ସେଣ୍ଟର, ଭୁବନେଶ୍ୱର

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପ୍ରଥମ ପ୍ରକାଶ : ୨୦୦୩

ମୂଲ୍ୟ : ଟ ୧୫୦.୦୦

**MAHESWAR RACHANA SAMBHARA**
**Brajandu Kumar Naik**
**Jagat Kumar Naik**

Published By :
**Pujya Puja, Orissa**
Municipal Market Complex, Near Old Bus stand,
Bhubaneswar-9

Laser Typeset :
**Sarala Graphics**, Bhubaneswar

Printed at :
**Padma Commercial Centre**, Bhubaneswar

Cover Designed By :
**Bijay Kumar Pradhan**

First Edition : **2003**

Price **Rs. 150.00**

# ଅଭିମତ

'ମହେଶ୍ୱର ରଚନା ସମ୍ଭାର' ପ୍ରକାଶ ପାଉଥିବା ଜାଣି ଖୁସି ହେଲି । ଏହି କାବ୍ୟ ରଚୟିତା ସ୍ୱର୍ଗତ ମହେଶ୍ୱର ନାୟକ ଇହଲୀଳା ସାଙ୍ଗ କରିବାର ଦୀର୍ଘ ସମୟ ପରେ ତାଙ୍କ ଦୁଇ ସୁପୁତ୍ର ପିତାଙ୍କ ସାହିତ୍ୟାକୃତି ଲୋକ ଲୋଚନକୁ ଆଣିବା ପାଇଁ ଯେଉଁ ପ୍ରୟାସ କରିଛନ୍ତି ତାହା ପଛରେ ରହିଛି ପିତୃଭକ୍ତି ଏବଂ ଓଡ଼ିଆ ସାହିତ୍ୟ ପ୍ରତି ଶ୍ରଦ୍ଧା । ମୟୂରଭଞ୍ଜ ସ୍ୱାଧୀନ ରାଜ୍ୟ ଥିବା ବେଳେ ସ୍ୱର୍ଗୀୟ ମହେଶ୍ୱର ନାୟକ ଥିଲେ ମନ୍ତ୍ରୀ । ତାଙ୍କର ନିରଭିମାନୀ ଅମାୟିକ ଆଚରଣ, ସାହିତ୍ୟ ପ୍ରୀତି ଓ ଜନସାଧାରଣଙ୍କ ସୁଖ ଦୁଃଖ ସହିତ ସାମିଲ ହେବାର ଇଚ୍ଛା ତାଙ୍କୁ କରିଥିଲା ସର୍ବଜନ ପ୍ରିୟ ।

'ମହେଶ୍ୱର ରଚନା ସମ୍ଭାର' ରାଧାନାଥୀ ଶୈଳୀରେ ଲିଖିତ କାବ୍ୟ ଗୁଚ୍ଛ । ଦିନେ ରାଧାନାଥ ରାୟଙ୍କ ଅପୂର୍ବ କାବ୍ୟ ଶୈଳୀ ପାଠକର ଚିତ୍ତଜୟ କରିଥିଲା । ପରବର୍ତ୍ତୀ କାଳର ଅନେକ କବିଙ୍କ ରଚନାରେ ତାଙ୍କର ଭାଷା ପ୍ରୟୋଗ କରିବାର ଶୈଳୀ, ଶବ୍ଦ ଯୋଜନା ଓ ଛନ୍ଦ କବିତାର ଲାଳିତ୍ୟ ପ୍ରତିଫଳିତ ହୋଇଥିଲା । ମହେଶ୍ୱର ନାୟକଙ୍କ କାବ୍ୟ ପୁରୁଷ କିନ୍ତୁ ନିଜ ଗୁଣରେ ଦୀପ୍ତିମାନ । 'ଆଦ୍ୟଭାଷ'ରେ କବି ଆରମ୍ଭ କରିଛନ୍ତି :

ନିକାଞ୍ଚନ ନିଶୀଥର କୃଷ୍ଣ ଆବରଣୀ
ଭେଦି ଯେବେ ଦିଗ ମୂଳେ ଉଏଁ ନିଶାମଣି
କ୍ଳାନ୍ତ କପୋତୀର ତନ୍ଦ୍ରା ଅଳସ ନୟନେ
ଜନମେ ପ୍ରଭାତ-ଭ୍ରାନ୍ତି ନିଶୀଥେ ଯେସନେ ।

ପ୍ରକୃତି ଓ ଜୀବନ ଥିଲା ମହେଶ୍ୱରଙ୍କ କାବ୍ୟପୁରୁଷର ଆଧାର । ସେ କେତେବେଳେ ପ୍ରକୃତିର ବର୍ଣ୍ଣାଢ଼୍ୟ ରୂପ ଦେଖି ମୁଗ୍ଧ ହେଉଥିଲେ ତ ଆଉ କେତେବେଳେ ଜୀବନର ହିରଣ୍ମୟ ରୂପ ତାଙ୍କୁ ଅଭିଭୂତ କରୁଥିଲା । ସେ ନିଜ ବିଷୟରେ ନଭାବି ଅନ୍ୟମାନଙ୍କ ସମ୍ବନ୍ଧରେ ଭାବୁଥିଲେ । 'ଆଦି ନା ଅନ୍ତିମ' କବିତାର ନିଜ ସମ୍ବନ୍ଧରେ ତାଙ୍କର ଉଚ୍ଚାରଣ ଅତି ସ୍ପଷ୍ଟ :

ଧୂଳିଘରେ, ଧୂଳିର ସମ୍ପଦେ
ଆପଣାର ବୋଲି ବଢ଼ି ଉଠୁଥାଏ ଯେ ମୋ
ରାଜକୁମାରର ଐଶ୍ୱର୍ଯ୍ୟ ହୁଁ ବଳି ବଳି
ଅହଙ୍କାର,

ଯଦି ଏକଇ ମୁହୂର୍ତ୍ତେ
ଭାଙ୍ଗି ସେଇ ଧୂଳି ଖେଳ
ଅନେକ ପଲକେ
ଚାଲିଯାଏଁ ନିଚ୍ଛିକାରେ;
ପଛେ ଫେରି କେହି ସାଙ୍ଗସାଥୀ ମୋର
କାହାରି ଜଣକ ହେଲେ ଲାଗେନାହିଁ ମାୟା ।

ମହେଶ୍ୱର କାବ୍ୟ ମାନସରେ ସୌନ୍ଦର୍ଯ୍ୟ କିପରି ଲାବଣ୍ୟମୟୀ ଥିଲା ତାହା ଅନେକ ସ୍ଥାନରେ ପାଠକଙ୍କୁ ବିଭୋର କରିବ । ଗଙ୍ଗାଗୀତିରେ ସେ ଲେଖିଛନ୍ତି :

ଆଗୋ ଗଙ୍ଗା
ଶାନ୍ତ ମଧୁର ସୌମ୍ୟା, ରମ୍ୟା, କେଚିତ୍ କୁଟିଳା ଭ୍ରୂ ଭଙ୍ଗା
ଧାତ୍ରୀ ସ୍ୱରୂପିଣୀ ଗଙ୍ଗା
କେବେ କେଉଁ ବେଶେ ଅବତରି ତୁଲୋ
ଗଢ଼ିଲୁ ଭାରତ ବର୍ଷ
ସ୍ୱର୍ଣ୍ଣ ଶସ୍ୟେ ପୂର୍ଣ୍ଣ କଲୁତୁ
ଉପୁଜିଲା ମହାହର୍ଷ ।

ଆଧୁନିକ କବିତାର ରୂପ ଅନେକ ବଦଳି ଯାଇଛି । ଏହାର ଶୈଳୀରେ, ଶବ୍ଦଯୋଜନା ଓ ଚେତନାର ବିକାଶରେ ଏବଂ ବୌଦ୍ଧିକ ଉତ୍ତରଠାରେ ଅନେକ ପରିବର୍ତ୍ତନ ହୋଇଛି । କିନ୍ତୁ କବିତାର ଆତ୍ମାପୁରୁଷର ଉଚ୍ଚାରଣରେ ଏବେ ବି ପ୍ରକୃତି ଓ ଜୀବନର ମହିମ୍ନାସ୍ତୁତି ଧ୍ୱନିତ ହେଉଛି ପୂର୍ବପରି । ମହେଶ୍ୱର ନାୟକ ୧୯୪୮ ମସିହାରେ ମୟୂରଭଞ୍ଜର ମନ୍ତ୍ରୀ ଥିବା ବେଳେ ମୁଁ ଛାତ୍ରନେତା ଥିଲି । ଜୀବନ ସ୍ରୋତରେ ଭାସି ଚାଲିଛି ମଣିଷ । କିନ୍ତୁ ସେ ଶାସନର ଅର୍ଗଳି ଭିତରୁ ବାହାରି ଆସି କବିତାର ମଧୁର ମୂର୍ଚ୍ଛନାରେ ଯେ ଏତେଦିନ ପରେ ପାଠକମାନଙ୍କୁ ମୁଗ୍ଧ ମୋହିତ କରିବେ ଏହା ତ ଅହଲ୍ୟାର ଶାପମୁକ୍ତି ପରି । ମହେଶ୍ୱର ନାୟକଙ୍କ କାବ୍ୟ ପୁରୁଷ ଅମରତ୍ୱ ଲାଭ କରୁ ଏହାହିଁ କାମନା ।

୯, କ୍ଷେସନ ସ୍କୋୟାର,
ଭୁବନେଶ୍ୱର-୭୫୧୦୦୧

ସାତକଡି ହୋତା

# ପଦେ ଅଧେ

ମୋର ପିତା ସ୍ୱର୍ଗତ ମହେଶ୍ୱର ନାୟକଙ୍କ ଜନ୍ମ ୧୯୦୬ ମସିହାରେ ତତ୍କାଳୀନ ମୟୂରଭଞ୍ଜ ଷ୍ଟେଟର ଖିଚିଙ୍ଗ ନିକଟସ୍ଥ ଗାଲୁସାହି ଗ୍ରାମରେ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେ ଅଞ୍ଚଳ ଗମନାଗମନ, ସ୍ୱାସ୍ଥ୍ୟ, ଶିକ୍ଷା ଇତ୍ୟାଦି ସୁବିଧାରୁ ବଞ୍ଚିତ ହେବା ସତ୍ତ୍ୱେ, ତାଙ୍କର ପିତା ଓ ପିତାମହଙ୍କ ପ୍ରେରଣାରେ ସେ ଶିକ୍ଷା ଆରମ୍ଭ କରିଥିଲେ । କରଞ୍ଜିଆରୁ ମଧ୍ୟ ଇଂରାଜୀ, ବାରିପଦାରୁ ଉଚ୍ଚ ଇଂରାଜୀ ଓ କଟକରୁ ରେଭେନ୍ସା କଲେଜରୁ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ବାଲ୍ୟାବସ୍ଥାରୁ ହିଁ ତାଙ୍କର ସାହିତ୍ୟ ସାଧନାରେ ପ୍ରବଳ ଆଗ୍ରହ ଥିଲା ଓ କବିତା ଆଦି ଲେଖିବାରେ ବହୁ ସମୟ ବିତାଉଥିଲେ ।

୧୯୨୪ ମସିହାରେ ରେଭେନ୍ସା କଲେଜ ପ୍ରବେଶ କଲାପରେ କଲେଜରୁ ପ୍ରକାଶିତ 'ରେଭେନ୍ସାଭିଆନ୍' ପତ୍ରିକାରେ ତାଙ୍କର ବହୁ କବିତା, କ୍ଷୁଦ୍ରଗଳ୍ପ ଆଦି ପ୍ରକାଶ ପାଇଥିଲା । ୧୯୨୮ ମସିହାରେ ବି.ଏ.ପାଶ୍ କଲାପରେ ଇଂରାଜୀରେ ଏମ୍.ଏ.ଓ ତତ୍ ସଙ୍ଗେ ସଙ୍ଗେ ଲ' ପଢ଼ିବା ସମୟରେ ମୟୂରଭଞ୍ଜର ତତ୍କାଳୀନ ମହାରାଜା ଷ୍ଟେଟରେ ସମବାୟ ସମିତି ସଂଗଠନ, କରିବା ଉଦ୍ଦେଶ୍ୟରେ ତାଙ୍କୁ Co-operative Training ପାଇଁ ପଠାଇଥିଲେ । ସେଥିଯୋଗୁଁ ତାଙ୍କର ଏମ୍.ଏ.ଓ ଲ' ପଢ଼ା ବନ୍ଦ ହୋଇ ଯାଇଥିଲା । Training ପରେ ତାଙ୍କର ଚାକିରି ଜୀବନ ଆରମ୍ଭ ହୋଇଥିଲା ମୟୂରଭଞ୍ଜରେ ।

ମୋ ପିତାଙ୍କର କଲେଜ ଓ ଚାକିରି ଜୀବନ ପ୍ରାରମ୍ଭରୁ ହିଁ ତାଙ୍କର ବହୁ କବିତା, କ୍ଷୁଦ୍ରଗଳ୍ପ, ପ୍ରବନ୍ଧାବଳି କଟକରୁ ତତ୍କାଳୀନ ପ୍ରକାଶିତ ହେଉଥିବା 'ନବଭାରତ', 'ସହକାର', 'ମୁକୁର' ଓ ବାରିପଦାରୁ ପ୍ରକାଶିତ ହେଉଥିବା 'ଭଞ୍ଜ ପ୍ରଦୀପ' ଇତ୍ୟାଦି ପତ୍ରିକାରେ ପ୍ରକାଶ ପାଇଥିଲା । ତାଙ୍କର ଲିଖିତ କେତେକ ନାଟକ ମଧ୍ୟ ସେ ସମୟରେ ବାରିପଦାରେ ଅଭିନିତ ହୋଇଥିଲା । ସାହିତ୍ୟର ବିକାଶ ପାଇଁ

୧୯୩୪-୩୫ ମସିହାରେ କେତେକ ସାହିତ୍ୟିକ ବନ୍ଧୁଙ୍କ ସହିତ ଏକତ୍ରିତ ହୋଇ ବାରିପଦାରେ 'ବାରିପଦା ସାହିତ୍ୟ ସମାଜ' ପ୍ରତିଷ୍ଠାରେ ସେ ଉଲ୍ଲେଖନୀୟ ଯୋଗଦାନ ଦେଇଥିଲେ । ଯୁବ ଲେଖକଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ସାହିତ୍ୟ ସମାଜ ତରଫରୁ ପୁରସ୍କାର ବିତରଣ କରିବାରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ବାରିପଦାସ୍ଥିତ ଭିକ୍ଟୋରିଆ ହୀରକ ଜୁବୁଲି ଗ୍ରନ୍ଥାଗାରରେ (ବର୍ତ୍ତମାନର ଶ୍ରୀ ରାମଚନ୍ଦ୍ର ଗ୍ରନ୍ଥାଗାର) ଓଡ଼ିଆ, ବଙ୍ଗଳା, ଇଂରାଜୀ ଭାଷା ପୁସ୍ତକ ଚୟନରେ କରିବାର ଭାର ବହୁବର୍ଷ ଧରି ତାଙ୍କରି ଉପରେ ନ୍ୟସ୍ତ ଥିଲା । ମୟୂରଭଞ୍ଜର ସେ ସମୟର ସାହିତ୍ୟ ପ୍ରସାରଣରେ ଭିନ୍ନ ଭିନ୍ନ ଉପାୟରେ ସେ ନିବିଡ଼ ଭାବରେ ଜଡ଼ିତ ହୋଇ ରହିଥିଲେ । ୧୯୪୧ ମସିହାରେ ତାଙ୍କର 'ପାଷାଣୀ' ନାମକ ଏକ କାବ୍ୟ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା ।

ପ୍ରାୟ ୧୬ ବର୍ଷ ଚାକିରି ମଧ୍ୟରେ ସେ କିଛି ବର୍ଷପାଇଁ ମୟୂରଭଞ୍ଜର Co-operative Society ର Registrar ଓ Development Department ର Director ହୋଇଥିଲେ । ୧୯୪୪-୪୬ ମସିହାରେ ମୟୂରଭଞ୍ଜ State Councilର ସରକାରୀ ସଦସ୍ୟ ହୋଇଥିଲେ । ପରେ ଚାକିରିରୁ ଇସ୍ତଫା ଦେଇଥିଲେ ଓ ରାଜନୀତିରେ ପ୍ରବେଶ କରିଥିଲେ । ୧୯୪୭ ମସିହାରେ ମୟୂରଭଂଜର ୰ଶରତ ଚନ୍ଦ୍ର ଦାସ ଦ୍ୱାରା ଗଠିତ ପ୍ରଥମ ଲୋକପ୍ରିୟ ସରକାରରେ ସେ ଶିକ୍ଷା ଓ ଉନ୍ନୟନ ବିଭାଗର ମନ୍ତ୍ରୀର ଦାୟିତ୍ୱ ନେଇଥିଲେ, । ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ପର୍ଯ୍ୟନ୍ତ । ୧୯୫୦-୫୨ ମସିହା ପର୍ଯ୍ୟନ୍ତ Prorisional Parliament ର ସଦସ୍ୟ, ୧୯୫୬-୬୨ ପର୍ଯ୍ୟନ୍ତ ରାଜ୍ୟସଭାର ସଦସ୍ୟ ଓ ୧୯୬୨-୬୭ ପର୍ଯ୍ୟନ୍ତ ଲୋକସଭାର ସଦସ୍ୟ ହୋଇ ରହିଥିଲେ । ୧୯୫୩-୫୬ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର Senate ସଦସ୍ୟ ହୋଇଥିଲେ ।

ରାଜନୀତିରେ ପ୍ରବେଶ ପରେ ତାଙ୍କର ସାହିତ୍ୟ ସାଧନାରେ କିଛି ବ୍ୟାଘାତ ହୋଇଥିଲା । ତେବେ ସତୁରି ଦଶକରୁ ପୁଣି ଲେଖା ଆରମ୍ଭ କରିଥିଲେ, ପରବର୍ତ୍ତୀ ଲେଖା କିଛି 'ଝଙ୍କାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସତୁରି ଦଶକରେ ଓଡ଼ିଶା ସାହିତ୍ୟ ଏକାଡେ଼ମୀ. ତରଫରୁ ତାଙ୍କୁ ସମ୍ମାନିତ କରା ହୋଇଥିଲା । ତାଙ୍କର କାର୍ଯ୍ୟବହୁଳ ଜୀବନର ଅବସାନ ହେଲା ୧୪-୨-୧୯୮୬ ମସିହାରେ ।

ଏହି ସଂଗୃହିତ 'ରଚନା ସମ୍ଭାର'ରେ ମୋର ପିତାଙ୍କର ୧୯୪୧ରେ ରଚିତ 'ପାଷାଣୀ' ଓ ସେ ସମୟରେ ପ୍ରକାଶିତ କେତେକ କ୍ଷୁଦ୍ରଗଳ୍ପ, ରଚନା ସହିତ ପରବର୍ତ୍ତୀ ସମୟରେ ଲିଖିତ କବିତା ସ୍ଥାନ ପାଇଅଛି । ପରବର୍ତ୍ତୀ କାଳର କବିତା

ଗୁଡ଼ିକର ରଚନାରେ ୨୦/୨୫ ବର୍ଷର ବ୍ୟବଧାନ ଥିବାରୁ ଲେଖାର ଶୈଳୀରେ କିଛି ପରିବର୍ତ୍ତନ ଲକ୍ଷିତ ହେବ । ଦୁଃଖର ସହିତ କହିବାକୁ ପଡୁଅଛି ଯେ ୧୯୪୭ ମସିହା ପୂର୍ବର ବହୁଲେଖା ସଂଗୃହିତ ହୋଇ ପାରି ନ ଥିବାରୁ ଏ ରଚନା ସମ୍ଭାରରେ ସେ ସବୁକୁ ପ୍ରକାଶନ କରାଯାଇପାରୁ ନାହିଁ । ସେହି ପୁରାତନ ଲେଖାବଳୀ ସେ ସମୟର ପ୍ରକାଶିତ ପତ୍ରିକାରୁ ସଂଗ୍ରହ କରିବାର ଉଦ୍ୟମ ହେଉଅଛି । ସେ ଗୁଡ଼ିକ ସଂଗ୍ରହ ହେଲେ ସେ ସବୁର ପ୍ରକାଶନ କରିବାର ସଂକଳ୍ପ ଅଛି । ଏହି ପ୍ରକାଶନର ଉଦ୍ଦେଶ୍ୟ ହେଉଅଛି ଲେଖକଙ୍କ ସାହିତ୍ୟ ସାଧନାର ଲୁପ୍ତ ଥିବା ଲେଖାବଳୀ ସାହିତ୍ୟ-ପ୍ରେମୀଙ୍କ ନିକଟର ପହଞ୍ଚାଇବା ।

ଏହି ସଂକଳନରେ ଓଡ଼ିଶା ଲେଖକ ସମବାୟ ସମିତିର ଶ୍ରୀ ରମାକାନ୍ତ ମିଶ୍ରଙ୍କ ଅଜସ୍ର ପ୍ରେରଣା ମୋତେ ବହୁ ଉତ୍ସାହିତ କରିଅଛି । ଅଧାପକ ବାସୁଦେବ ନନ୍ଦ ବହୁ ସମୟ ବ୍ୟୟ କରି proof ସଂଶୋଧନରେ ବହୁ ସାହାଯ୍ୟ କରି ଅଛନ୍ତି ଓ ତତ୍ ସଙ୍ଗେ ସଙ୍ଗେ ମୁଖବନ୍ଧ ମଧ ଲେଖିଅଛନ୍ତି । ସାହିତ୍ୟିକ ଶ୍ରୀ ସାତକଡ଼ି ହୋତା ଏହି ପ୍ରକାଶିତ ନିମିତ୍ତ ଉତ୍ସାହିତ କରିବା ସହିତ ଅଭିମତ ମଧ ଦେଇଛନ୍ତି । ଏ ସମସ୍ତଙ୍କୁ ମୋର ଅସୀମ କୃତଜ୍ଞତା ଜଣାଉଅଛି ।

ମୋର ପତ୍ନୀ ଶ୍ରୀମତୀ ତିଳୋତ୍ତମା ନାୟକ ପାଣ୍ଡୁଲିପି ସବୁ ପୁନରୁଦ୍ଧାର କରିବାରେ ବହୁ ପରିଶ୍ରମ କରିଅଛନ୍ତି ଓ ବଡ଼ପୁଅ ଭାଇଙ୍କ ପତ୍ନୀ ଶ୍ରୀମତୀ ଲୀଳାବତୀ ନାୟକ ମୂଳ ହାତଲେଖାରୁ ପୁଣି ଉତାରିବାରେ ବହୁ ସାହାଯ୍ୟ ଦେଇଅଛନ୍ତି । ସେମାନଙ୍କୁ ମୁଁ ଧନ୍ୟବାଦ ଦେଉଅଛି ।

ବ୍ରଜେନ୍ଦ୍ର କୁମାର ନାୟକ<br>ଭୁବନେଶ୍ୱର

# ମୁଖବନ୍ଧ

ରାମାୟଣର ଅହଲ୍ୟା ଚରିତ୍ର ଯୁଗ ଯୁଗ ଧରି ସଂବେଦୀ ଭାରତୀୟ ଚିତ୍ତକୁ ଗଭୀର ଭାବେ ଆଲୋଡ଼ିତ କରିଛି । ଅସମ-ବୟସର ଦାମ୍ପତ୍ୟ ଜୀବନ ଯେ ସୁଖର ନୁହେ ତାହା ଅହଲ୍ୟା ଚରିତ୍ରରେ ଦର୍ଶାଇଛନ୍ତି କବି ବାଲ୍ମୀକି । ଯୁଗର ଚିର ବିବର୍ତ୍ତନରେ ପରବର୍ତ୍ତୀ କବିଗଣ ଏହି ଚରିତ୍ରକୁ ଉପଜୀବ୍ୟ କରି ଲେଖନୀ ଚାଳନା କରିଛନ୍ତି ଭିନ୍ନ ଭିନ୍ନ ଭଙ୍ଗିରେ । ସଂଯମୀ, ସାଧକ ତଥା ପ୍ରବୀଣ ଋଷିଙ୍କ ପାଖରେ ଯୁବତୀ ଅହଲ୍ୟାଙ୍କର ନାରୀପ୍ରାଣ ଆପଣାର ମାନସିକ ଓ ଶାରୀରିକ ଭୋଗ-କାମନାର ପରିସ୍ଫୁର୍ତ୍ତି ବା ଚରିତାର୍ଥତା ଯେ ନିଶ୍ଚିତ ଭାବେ ଲାଭ କରି ନାହିଁ- ଏ କଥାଟି ନିରାଟ ସତ୍ୟ । ମନର ମଣିଷ ନିକଟରେ ନାରୀ ଯେଉଁ ପ୍ରଣୟ ସିକ୍ତ ପ୍ରାଣର ପ୍ରୀତିନୈବେଦ୍ୟ ଅର୍ପଣ କରେ ଓ ଯେଉଁ ରୂପ ସମ୍ଭାରର ପୂର୍ଣ୍ଣ ସମର୍ପଣଦ୍ୱାରା ପ୍ରିୟତମରେ ଆତ୍ମ ନିମଜ୍ଜନ କରି ନାରୀତ୍ୱର ପୂର୍ଣ୍ଣତା ଅନୁଭବ କରେ ତାହା ଏହି ଋଷି ଦମ୍ପତୀଠାରେ ବ୍ୟର୍ଥ ହୋଇଛି । ପିତୃଦତ୍ତ ପତିତ୍ୱର ଅଧିକାରରେ ତପସ୍ୱୀ ଗୌତମ ନିଜ ପତ୍ନୀକୁ ସହଧର୍ମିଣୀ କରିବାକୁ ଆଶ୍ରମର କ୍ଷୁରଧାର ମାର୍ଗରେ ଚାଲିବା ପାଇଁ ଆପ୍ରାଣ ଚେଷ୍ଟା କଲେ ମଧ୍ୟ ତାଙ୍କର ସାମୟିକ ଅନୁପସ୍ଥିତି ପ୍ରବୃତ୍ତିର ସହଜ ମଧୁମାଦକତାରେ ବିଡ଼ମ୍ବିତ ଓ ଉପହାସ୍ୟ ହୋଇଛି । ତପୀ ପତିଙ୍କର ସାନ୍ନିଧ୍ୟର ଦୀର୍ଘକାଳୀନ ଅଭାବବୋଧ ହିଁ ଯୌବନକୁ ଉଦ୍ଦଣ୍ଡ ହେବାକୁ ସୁଯୋଗ ଦେଇଛି ଛଇଳୀ ଅହଲ୍ୟାଙ୍କୁ । ଫଳରେ ଆଶ୍ରମ ଧର୍ମର ସଂଯମ, ସାଧନା, ଶୁଷ୍କତା ତଥା ରସଶୂନ୍ୟତା ଏକାଧାରରେ ସ୍ୱଭାବ, ପ୍ରବୃତ୍ତି, ମୁକ୍ତ ମିଳନଦ୍ୱାରା ପରାଭୂତ ହୋଇଛି । ଆଶ୍ରମ ଜୀବନ ଅବଶ୍ୟ ତ୍ୟାଗ, ସଂଯମ ତଥା ସାଧନାଭରା ଜୀବନଯାତ୍ରା ପାଇଁ ଦିଗ୍‌ଦର୍ଶନ ଦେଇପାରେ, ତଥାପି ସେହି ତ୍ୟାଗ କେବଳ ଶୁଷ୍କତା, ଶୂନ୍ୟତା ଓ ବୈରାଗ୍ୟର ନିବୃତ୍ତି ଉପରେ ପଲ୍ଲବିତ ନୁହେ । ତ୍ୟାଗ ଓ ଭୋଗର ସାନୁପାତ ସମ୍ମିଳନରେ ସେହି ତ୍ୟାଗ ବରେଣ୍ୟ ଓ ମହନୀୟ । ପ୍ରାଚୀନ ଭାରତୀୟ ସଂସ୍କୃତି କେବଳ ଶୁଷ୍କ ତ୍ୟାଗ ଓ ବୈରାଗ୍ୟ ଉପରେ ପ୍ରତିଷ୍ଠିତ ନୁହେ । ତାହା ଭୋଗ ଓ

ତ୍ୟାଗର ସାନୁପାତିକ, ସଂଯତ ଓ ମଧୁର ସମନ୍ୱୟ ଉପରେ ପ୍ରାଣବନ୍ତ । ଜୀବନଟା କେବଳ ମୁକ୍ତିପାଇଁ ନୁହେ, ଭୁକ୍ତି ପାଇଁ ମଧ୍ୟ ଅଭିପ୍ରେତ ।

ଭାରତୀୟ ଜୀବନ ତ୍ୟାଗଧର୍ମୀ ଭୋଗବାଦ ଉପରେ ହିଁ ପ୍ରତିଷ୍ଠିତ । କେବଳ 'ଭୋଗ' ଜୀବନ ପକ୍ଷରେ ଯେପରି ଦୁର୍ବିଷହ । କେବଳ ତ୍ୟାଗ ସେହିପରି ନିଜ ଭିତରେ ପ୍ରତିକ୍ରିୟାଶୀଳ ଓ ଆତ୍ମଘାତୀ । ତେଣୁ ଭୋଗ ଓ ତ୍ୟାଗର ସଂଯତ ଅନୁପାତ ପ୍ରଦର୍ଶନ କରିବାକୁ ଅହଲ୍ୟା ଚରିତ୍ରର ଉପାଦେୟତା ମୁକ୍ତକଣ୍ଠରେ ଘୋଷଣା କରନ୍ତି ଆଦିକବି ।

ସ୍ୱତନ୍ତ୍ର ସୃଷ୍ଟିର ମୂର୍ତ୍ତି-ଏଇ ନାରୀ ଓ ପୁରୁଷ । ସ୍ୱକୀୟ ମହିମାରେ ପୁରୁଷ ଯେପରି ମହୀୟାନ୍, ସେପରି ନାରୀ ମଧ୍ୟ ତତୋଽଧିକ ମହୀୟସୀ । କେବଳ ସୃଷ୍ଟିଧାରାକୁ ଅବ୍ୟାହତ ରଖିବା ପାଇଁ ନାରୀ-ପୁରୁଷ ଦୃଢ଼ ବନ୍ଧନ ଅନୁପଯୋଗୀ କାରଣ ଏହାଦ୍ୱାରା ଯୌବନର ଅମର୍ଯ୍ୟାଦିତ ଅବକ୍ଷୟ ଘଟେ । ସଂହିତାର ଦୁହାଇ ଦେଇ ବିବାହ ବନ୍ଧନରେ ନାରୀକୁ ନିଜତ୍ୱହୀନ କରିବାର ପ୍ରକ୍ରିୟା ମନୁ-ମାର୍ଗରେ ଆଜି ବି ଏ ଦେଶରେ ବଳବତ୍ତର ରହିଛି । ଆମର ଦରଦୀ ଯୁବକବି ମହେଶ୍ୱରଙ୍କ ଆଖିରେ ଏହା ପଡ଼ିଛି । ଋଷି ପରି କବି ମଧ୍ୟ ବନବାସୀ ଗୋଷ୍ଠିର । ମୁକ୍ତ ଜୀବନ ଓ ଯୌବନର ଉଚ୍ଛଳ ତରଙ୍ଗରେ ଭାସମାନ ତାଙ୍କ ନିଜ ସଂସ୍କୃତି ।

ଆଦିକବି ତାଙ୍କର ମାନସ ସୃଷ୍ଟି ଅହଲ୍ୟାକୁ ଇନ୍ଦ୍ର ସହିତ ମିଳିତ କରାଇ ତାକୁ ମାତୃତ୍ୱ - ଦୀପ୍ତିରେ ଉଦ୍‌ଭାସିତ କଲାପରେ ଆଶ୍ରମିକ ଅଭିଶାପ ମାର୍ଗରେ ସଂଯତ କରାଇଛନ୍ତି । ତେବେ ଆମର ଦରଦୀ ଓ ଅନୁଭବୀ କବି ଶିଶୁ ସନ୍ତାନର ଲାଳୀକା ଜନନୀକୁ ଅନୁଭୂତ ଭୋଗରେ ତୃପ୍ତ କରାଇବା ପାଇଁ ପତିର ଦୀର୍ଘ କାଳିନ ସାନିଧ୍ୟର ଅଭାବ ଭୋଗାଇ ଏକ ମିଳନାତୁରା, ରକ୍ତମାଂସ ଧାରିଣୀ ଛଇଳୀ ଯୁବତୀର ଅଭିସାରିକା ରୂପ ସଜାଇଛନ୍ତି ଯୌବନଧର୍ମୀ ତୃପ୍ତିବିଧାନ ପାଇଁ । ଏଠାରେ ଆତିଥ୍ୟର କବଚରେ ନିଜକୁ ରକ୍ଷା କରି ଇନ୍ଦ୍ର-ବଣିକ ଦେଖା ଦେଇଛନ୍ତି, ଗୌତମାଶ୍ରମ ଉପକଣ୍ଠରେ, ଆନମନା ଅହଲ୍ୟାକୁ ନାରୀତ୍ୱରେ ମଣ୍ଡିତ କରିବାକୁ । ଏବଂ ଅନୁକୂଳ ପ୍ରାକୃତିକ ପରିବେଶ ଏ ଉତ୍ତେଜନାକୁ ମଧୁର କରିଛି । ହୁଏତ ଏଠାରେ ଭୋଗିନୀର ଅଙ୍ଗେ ନିଭା ସଙ୍ଗମ ତୃପ୍ତି ବାତ୍ସଲ୍ୟ ମମତାକୁ ଶିଥିଳ କରିଛି ସଖୀଦ୍ୱୟର ଉପଯୋଗରେ ।

ଯୁଗ ବଦଳେ, ରୁଚି ବି ବଦଳେ । ଆଧୁନିକ ଯୁଗର କବି ପୁରାତନୀ ଅହଲ୍ୟାକୁ ଆଧୁନିକ ଯୁବତୀ ରୂପରେ ମାପିଛନ୍ତି । ଏତେ ବେଳେ କ୍ଷୟିଷ୍ଣୁ ଆଶ୍ରମ ଧର୍ମ ସଂପୂର୍ଣ୍ଣ ଲୁପ୍ତ, କଳ୍ପନାର ବାହାରେ । ଏହି ଅହଲ୍ୟା ନିଜତ୍ୱରେ ଉଦ୍‌ଭାସିତ

ରୂପର । ସ୍ୱାମୀ ପାଇଁ ବଂଶଧାରାର ଦୁଲାଳ ଦେବାପରେ ଯୌବନର ପୂଜାରେନିଜକୁ ସମର୍ପିତ କରିଛନ୍ତି । ସାଥିର ଅଭାବବୋଧରେ ଆନମନା ଏହି ସୁକୁମାରୀ ଅହଲ୍ୟା ଦାମ୍ପତ୍ୟ ଧର୍ମ ପାଳନରେ ବାଧ୍ୟ ଅହଲ୍ୟା ଶାନ୍ତ ଆଶ୍ରମ ପ୍ରକୃତି କୋଳରେ କେଳି ରଚିବାବେଳେ ଅଭିସାରିକା ଅହଲ୍ୟା ସ୍ୱର୍ଣ୍ଣଦୀ ସୈକତରେ ନଧର ପଦଚାଳିତ ନିଜର ଭୋଗ ଭୂମି ଲଭିଛନ୍ତି, ସ୍ୱର୍ଣ୍ଣଦୀରେ ଭାସମାନ ନୌକାର ସୁସଜ୍ଜିତ ପ୍ରକୋଷ୍ଠରେ ଏବଂ ଉଷାରେ ନିଜ କୁଟୀରକୁ ଫେରନ୍ତି ତୃପ୍ତିସିକ୍ତ ଅର୍ଦ୍ଧଜାଗ୍ରତ ଅବସ୍ଥାରେ ।

ଭାବୀ ରାଜା ରାମଙ୍କ ରକ୍ଷା କବଚରେ ଆତ୍ମସଚେତନ ଏହାଙ୍କ ପ୍ରାଣ କାନ୍ଦିଛି ଶିଶୁ ପୁତ୍ରକୁ କୋଳକୁ ନେବାକୁ । ସାମାଜିକ ମର୍ଯ୍ୟାଦା ଫେରାଇ ଦେଇଥିବା ଆଦିକବି ଓ ଆମ କବି ଏ ପ୍ରାର୍ଥନା ପ୍ରତି ମନ ଦେଇ ନାହାନ୍ତି । ଉଭୟତ୍ର ଅହଲ୍ୟା ବିଫଳ ହୋଇ ପତିଙ୍କୁ ପାଇଛନ୍ତି ସାମାଜିକ ଯନ୍ତ୍ରଣାରେ ଆହତ ଦାମ୍ପତ୍ୟର ଜୟଗାନ କରି ।

ପାଷାଣୀ କାବ୍ୟରେ ସ୍ୱର୍ଗତ ମହେଶ୍ୱର ନାୟକଙ୍କ ନୈସର୍ଗିକ ପ୍ରତିଭା ବେଶ୍ ପ୍ରସ୍ଫୁଟିତ ହୋଇଅଛି । ରାଜନୀତିରେ ଲିପ୍ତ ରହିବା ପରେ ତାଙ୍କର ପରବର୍ତ୍ତୀ ଲେଖନୀ ଚାଳନାରେ ସ୍ମୃତି ଓ ପ୍ରକୃତିର ମନୋଜ୍ଞ ଚିତ୍ର ଫୁଟିଚି । ଏହି ଆତ୍ମା ପ୍ରତି ମୁଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।


ଅଧ୍ୟାପକ ବାସୁଦେବ ନନ୍ଦ
ପିଏଚ୍.ଡି, ଡି:ଲିଟ୍:
(ଓଡ଼ିଆ ସଂସ୍କୃତ)


ବଲାଙ୍ଗିର
୬.୧୨.୨୦୦୩

# ସୂଚୀପତ୍ର

**ସାୟନ୍ତନୀ**



**ସମାପିକା**



**ବାରୁଣୀ**



**ଗଳ୍ପ ବିଭାଗ**



**ପ୍ରବନ୍ଧ ବିଭାଗ**

# ଆଦ୍ୟଭାଷ

ନିକାଞ୍ଚନ ନିଶୀଥର କୃଷ୍ଣ ଆବରଣୀ
ଭେଦି ଯେବେ ଦିଗମୂଳେ ଉଏଁ ନିଶାମଣି
କ୍ଳାନ୍ତ କପୋତୀର ତନ୍ଦ୍ରା-ଅଳସ ନୟନେ
ଜନମେ ପ୍ରଭାତ-ଭ୍ରାନ୍ତି ନିଶୀଥେ ଯେସନେ,
ତେସନେ ଏ ବନଭୂମେ ରୂପସୀ ଅହଲ୍ୟା
ଦେଖିଲେ ନୟନ ଫେଇ ବିସ୍ମୟ ବିହ୍ୱଳା-
ବସନ୍ତର ରୂପରାଶି ଅଦିନେ ଅଙ୍କୁରି
ଉଠେ ପ୍ରତି ତରୁଶାଖେ; ସଲିଳ ଭଉଁରୀ-
ସମ ଖେଳି ବୁଲେ ଚୋରା ମଳୟର ବାସ !
କିନ୍ତୁ ଅଭାଗିନୀ ତା'ର କାହିଁ ଅବକାଶ
ବୁଝିବ ଏ ନିକାଞ୍ଚନେ କିସ ଏ ସୂଚନା ?
ଚିର ପ୍ରତାରିତ ସେ ତ । ଅନନ୍ତ ଲାଞ୍ଛନା
କରମ ଲିଖନ ତା'ର । ଏଣୁ ତରୁଛାୟେ
ତିମିରିତ ବନଭାଗେ ଜ୍ୟୋତିଷ ପରାୟେ
ଆସି ଉଭା ହେଲେ ଯେବେ ଅନିନ୍ଦ୍ୟରୂପର
ଲାବଣ୍ୟ ଲହରୀ ଘେନି ରାମ ଧନୁର୍ଦ୍ଧର-
ସଙ୍ଗେ ଭାଇ ସଉମିତ୍ରି- ଅରଣ୍ୟ ଉଜ୍ଜ୍ୱଳି,
କି ଭାବେ ଘେନିବେ ତା'ଙ୍କୁ ଅହଲ୍ୟା ସୁନ୍ଦରୀ
ନ ପାରିଲେ ବୁଝି କିଛି । ସ୍ମୃତି ପୁରାତନ
କଲା ସେ କୋମଳ ବକ୍ଷେ ନିର୍ମମେ ଦଂଶନ ।

ଜଣେ ନବ-ଦୂର୍ବାଦଳ-ଶ୍ୟାମ ମନୋରମ
ଆରେକ ସୁଗୌର ତନୁ ନବନୀତୋପମ;
ଉଭୟେ କିଶୋର, କିନ୍ତୁ ବୀର ଦର୍ପେ ଦୃପ୍ତ,
ଏ ବନେ ଏ ରୂପ ସୃଷ୍ଟି କାହିଁଥିଲା ସୁପ୍ତ !
କିଏ ଏ କିଶୋର ଯୁଗ ଶରାସନ କରେ ?
ପୁଣି ଏ ତପସ୍ୱୀ କିଏ କିପାଁ ସଙ୍ଗତରେ ?
ଦୃଷ୍ଟିର ଛଳନା ମଣି ପୁଣି ଦେଉଁ ଚାହିଁ
ଦେଖିଲେ ସେ ସେହିରୂପ ଭେଦ କିଛି ନାହିଁ ।
ଚକିତ ବିସ୍ମୟେ ଖେଦ-ଗଦଗଦ ଭାଷେ
ଭାଷିଲେ ଗୌତମ ନାରୀ, ଏତେ ଅନାୟାସେ
ଛଳିବ ନାରୀରେ ପୁଣି ନିରୁପମ ରୂପେ ?
ସବୁଦିନେ ନାରୀ କିବା ରୂପ ମୋହ-କୂପେ
ମଜ୍ଜୁଥିବ ହେ ପୁରୁଷ ? ଭ୍ରାନ୍ତ ଏ ଧାରଣା,
ଅହଲ୍ୟା ନୋହିବ ଆଉ ରୂପବନେ ବଣା ।
ଅହଲ୍ୟା ନୁହଇ ଆଉ ଆଶୁପ୍ରତ୍ୟୟିନୀ
ପାଷାଣୀ ସେ ପୁରୁଷର ଚତୁର ଦୟିନୀ
ଶୁଣିବ ନାହିଁ ସେ ଆଉ, ରୂପର ପିପାସା
ବହୁଦିନୁଁ ମେଣ୍ଟିଛି ତା' ।'' ନାରୀର ଏ ଭାଷା
ଶୁଣି ଦାଶରଥି ଚିତ୍ତେ ଉପୁଜିଲା ବ୍ୟଥା,
ବିସ୍ମୟେ ମୁନିଙ୍କି ଚାହିଁ ପୁଛିଲେ ବାରତା-
''କିଏ ଏହି ପାଗଳିନୀ ? କି ବେଦନା ଭାରେ
ପୋଡ଼ି ମରି ଘୁରି ବୁଲେ ଏ ଘୋର କାନ୍ତାରେ ?
ଉଚ୍ଚକୁଳ କାମିନୀ ଏ ଆସଇ ପରତେ,
ଘଟନା ଚକ୍ରର କେଉଁ ନିଷ୍ଠୁର ଆବର୍ତ୍ତେ
ପଡ଼ି ଆଜି ଏକାକିନୀ, ମୁଖଶ୍ରୀ ପାଂଶୁଳ,
ଦିନାନ୍ତେ ନଳିନ ଯଥା ଝଟିକା-ଆକୁଳ ।
ଅଭାଗିନୀ ନାରୀ ଏ କେ ?'' ଈଷତେ ବିହସି
ଉତ୍ତରିଲେ ମୁନିବର, ''ଅହଲ୍ୟା ରୂପସୀ
ଗଉତମ ପ୍ରିୟା ଏହି, କୃତ କରମର
ଫଳ ଭୁଞ୍ଜେ ଜନହୀନ କାନନ ଭିତର ।''

ଅହଲ୍ୟାରେ ଚାହିଁ ପୁଣି କହନ୍ତି ଏ ବାଣୀ
"କହିଯାଅ ନାରୀ, ତବ ଅତୀତ କାହାଣୀ,
ରାମ ଦାଶରଥି ଏହି-ଅନୁଜ ଲକ୍ଷ୍ମଣ
ସଙ୍ଗେ ତାଙ୍କ- କରିବାକୁ ଯାଗ ସଂରକ୍ଷଣ
ଆଗତ ଅଯୋଧ୍ୟା ପୁରୁଁ, ଦେଖ ଗୋ ବରାଙ୍ଗୀ,
ଅନୁତାପ ବ୍ରତ ତବ ଉଦ୍‌ଯାପନ ଲାଗି
ଚାହିଁଥିଲ ପଥ ଯାର, ସେ ନରସତ୍ତମ
ତୁମରି ପୁରତେ ଉଭା, ବିକାର ଭରମ
ନାଶିବେ ଏ ତବ ଚିତ୍ତୁଁ, ଦେବେ ବରାଭୟ,
ଛାଡ଼ ନାରୀ ସବୁ ଭୀତି ସକଳ ସଂଶୟ।"

ଏସନ ଆଶ୍ୱାସ ବାଣୀ ମୁନିଙ୍କ ବଦନୁ
ଶୁଣି ଗଉତମ ପ୍ରିୟା ଶଙ୍କା ତେଜି ମନୁ
କହିଲେ ସଜଳ ଦୃଷ୍ଟି କୃତ କୃତ୍ୟ କରି
"ଅପରାଧ କ୍ଷମ ମୋର, ମୁଁ ଦୀନା ପାମରୀ,
ଜାଣେ ନାହିଁ ଅତିଥିର ଯୋଗ୍ୟ ସତ୍କାର।
କଳଙ୍କିନୀ ବିଶ୍ୱେ ମୁହିଁ, ତବ କରୁଣାର
କେସନେ ଗୋ ହେବି ଯୋଗ୍ୟ, ବିଶାଳ ଜଗତ
ନିଦେଶିଛି ମୋତେ ଯଦି ଆରଣ୍ୟକ ବ୍ରତ ?

ଶୁଣିବ ମୋ ଇତିଗାଥା ? ଏତେ ଦୟା ସତେ
ନବୀନ କିଶୋର ପ୍ରାଣେ ସମ୍ଭବେ ଜଗତେ।
ସେହି ପୁରାତନ କଥା। ଅବଳା ତ ମୁହିଁ
କେସନେ ଆଣିବି ମୁଖେ; ମୋ ମରମ ଛୁଇଁ
ତାରି ଶତ ଲୋଳ ଶିଖା ଦିଏ ମୋତେ ଜାଳି
ଦଗଧ ନୟନୁଁ ଅଶ୍ରୁ-ବିନ୍ଦୁଟିଏ ଢ଼ାଳି
ପାରେ ନାହିଁ ମୁହିଁ, ଆହା କିବା ତାର ଦାଉ
ପୁରୁଷ ତ ତୁମେ ତାହା ଜାଣିବ ବା କାହୁଁ ?"

କହୁ କହୁ ଅହଲ୍ୟାଙ୍କ ଚାରୁ ଆଖି ମୁଖେ
ଖେଳିଲା ବିକାର, ଖେଦେ ହାତ ଚାପି ବୁକେ
ଅବଶେ ପଡ଼ିଲେ ବସି ଭୂତଳେ ସୁନ୍ଦରୀ
ସମଦୁଃଖେ ରାମଚନ୍ଦ୍ର ଚିତ୍ତ ଗଲା ଭରି,
କହିଲେ କୋମଳ ଭାଷେ, "ଏ ପୂଜା କୁସୁମେ
ଲାଗିପାରେ ନାହିଁ ଧୂଳି; ତଥାପି ଗୋ ତୁମେ
ସୁମରି ସେ ଗତ କଥା ପାଅ ଯଦି ବ୍ୟଥା
ସେ ଗାଥା ଶ୍ରବଣେ ମୋର ଅନିଚ୍ଛା ସର୍ବଥା ।
ପାଶୋରା ସ୍ମୃତିର ରୂପ ପୁଣି ଲେଖି ଆଗେ
ଦୁଃଖିନୀକି ଦୁଃଖ ଦେବା ପରାଣେ ମୋ ଲାଗେ ।"

ଆହତେ ଆଘାତ ଦେଇ ଜାଣନ୍ତି ସରବେ,
ବ୍ୟଥିତର ବ୍ୟଥା କାହିଁ କିଏ ଅନୁଭବେ ?
ତରୁଣ ରାଘବ ପ୍ରାଣ କିନ୍ତୁ ପର ଦୁଃଖ
ପାରିଅଛି ଚିହ୍ନି- ଏଥେ ଅହଲ୍ୟାଙ୍କ ମୁଖ
ବହୁଦିନ ପରେ ଆଜି ଉଠିଲା ଉଜ୍ଜ୍ୱଳି,
ନିର୍ମଳ ଆନନ୍ଦେ ନେତ୍ରୁଁ ଅଶ୍ରୁ ଗଲା ଗଳି ।
କୃତଜ୍ଞତାଭରା ତା'ଙ୍କ ସମଗ୍ର ଅନ୍ତର-
ଭାଷା ଖୋଜିଲେ ମିଳେନା- କି ଦେବେ ଉତ୍ତର ?
ବିପୁଳ ପ୍ରୟାସେ ଭଗ୍ନ ଗଦଗଦ ସ୍ୱରେ,
କହିଲେ, "ହେ ବିଶ୍ୱବନ୍ଦ୍ୟ । ମୋର ଏ ବିଶ୍ୱରେ
କେ ଅଛି ଶୁଣିବ ମୋର କରୁଣ କାହାଣୀ
ବିଶ୍ୱ ଜାଣେ ଖାଲି ଦୁଃଖୀ ବକ୍ଷେ ବଜ୍ର ହାଣି ।
କେଉଁ ଜନମର ମୋର ଗୁରୁ ତପସ୍ୟାର
ଫଳପ୍ରାପ୍ତି ରୂପେ ଆଜି ତବ କରୁଣାର
ଅଧିକାରିଣୀ ମୁଁ ଯଦି, ଏସନ ସୁଯୋଗ
ହରାଇ କରିବି କିକି ପଛେ ଅନୁଯୋଗ ?
ସେ ଦିନ ଲଜ୍ଜାର ଯଦି ଖାଇଅଛି ମଥା
ଆଜି ତା'ର ପ୍ରାୟଶ୍ଚିତ୍ତ । ଆଜି ପୁଣ୍ୟ ସତ୍ତା

ତୁମରି ଆଶିଷେ ଯଦି ଆମ୍ଭ ପରକାଶେ
କେସନେ ରୋଧିବି ତାର ପଥ ଲଜ୍ଜା ତ୍ରାସେ ?
ମୋହ-କୃତ ଦୁଷ୍କୃତର ଶ୍ରେଷ୍ଠ ପ୍ରାୟଶ୍ଚିତ୍ତ
ପର ଆଗେ ପରକାଶ, ଶାସ୍ତ୍ରର ବିହିତ ।
କେସନେ ଏ ମୋହପଥେ ଦେଲି ମୁଁ ପୟର
କପଟ ନ ରଖି କହେଁ, ଶୁଣ ରଘୁବର ।



# ପ୍ରଥମ ସର୍ଗ

ଆଜି ଯେ ଦେଖୁଛ ହତଶିରୀ ଏ ବନର,
ମୋହ ବିନା ଗତାଗତ ଆଉ ଦ୍ୱିତୀୟର
ନାହିଁ ଏଥି, ବିହଙ୍ଗର ଲଳିତ କାକଳୀ
ମୁଖରିତ କରୁ ନାହିଁ ଏ କାନନ ସ୍ଥଳୀ,
କୁରଙ୍ଗ ବିହୁନେ ଏ ଯେ ବନ୍ୟ କୁଶରାଜି,
ବଢ଼ି ଊର୍ଦ୍ଧ୍ୱେ ତରୁଶାଖେ ଯାଇଅଛି ବାଜି-
ରିକ୍ତ ଚଉଦିଗ -ଖାଲି ଶୁଭେ ଝାଇଁ ସ୍ୱନ
ବିଧବାର ବୁକୁଫଟା ପ୍ରଶ୍ୱାସ ଯେସନ;
ତେଜି ଶ୍ୟାମ ପର୍ଣ୍ଣଛାୟେ ସ୍ନିଗ୍ଧ ପୀଠ ସ୍ଥାନ
କରିଛନ୍ତି ବନଦେବୀ କି ଅବା ପ୍ରୟାଣ !
ଥିଲା ଦିନ ଯେବେ ଏଥି ପରିହରି ସ୍ୱର୍ଗ
ନୃତ୍ୟକଳା ସାଧୁଥିଲେ ଅପସରୀ-ବର୍ଗ
ରଚି ଏ କାନନ କୁଞ୍ଜେ- ଶୋଭା ବେହରଣ;
ଯାଇଛି ସେଦିନ ଯଥା ପାହାନ୍ତି ସ୍ୱପନ ।
ଅଦୂରେ ଦିଶଇ ଯହିଁ ବିଶାଳ ରସାଳ-
ସେହି ଏକ ଆଶ୍ରମର ନିର୍ଜୀବ କଙ୍କାଳ;
ଅଶ୍ୱତ୍ଥ, ବିରାଟ ବଟ, ପନସ, ପୁନ୍ନାଗ
ବର୍ଣ୍ଣେ ପର୍ଣ୍ଣରାଜି ଯାର ଜିଣଇ ମାରାଗ,
ସରବେ ସେ ଆଶ୍ରମର ଚ୍ୟୁତ ଧ୍ୱଂସ ସ୍ତୂପେ
ଉଭା ସେଇ ଅତୀତର ମୂକ ସାକ୍ଷୀରୂପେ ।
ପନ୍ତି ପନ୍ତି ଦ୍ରୁମରାଜି ଅଭ୍ୟନ୍ତରେ ଏଥେ

ଉଟଜ ଉଦ୍‌ଗତ ଧୂମ କୁଣ୍ଡଳୀ ସମେତେ
ମୁନିମୁଖୁଁ ବିନିଃସୃତ ପବିତ୍ର ଓଁକାର
ବନେ ବନେ ତୋଳି ଥିଲା ମଧୁରେ ଝଙ୍କାର;
ଶିଷ୍ୟବୃନ୍ଦେ ଘେନି ଏଥି ମହର୍ଷି ଗୌତମ
ମହାଯୋଗେ ଲୟ ଥିଲେ ରଚି ପୁଣ୍ୟାଶ୍ରମ,
ଅଯୋଗ୍ୟା ପତ୍ନୀ ମୁଁ ତାଙ୍କ- (ପତ୍ନୀ ବୋଲିବାର
ଆଉ କି ଅଛି ସେ ମୋର ପୁଣ୍ୟ ଅଧିକାର !)
ଅଯୋଗ୍ୟ ପତ୍ନୀ ମୁଁ ତାଙ୍କ; କିନ୍ତୁ ସେ ମୋ ପତି
ତାଙ୍କ ଘେନି ଯୁଗେ ଯୁଗେ ମୁହିଁ ଭାଗ୍ୟବତୀ ।
ଶରଦିନ୍ଦୁ ସମ ତାଙ୍କ ଶୁଭ୍ର ଯଶୋଭାତି
ପ୍ରକ୍ଷାଳି ପାରିବ ବୋଲି ମୋର ଅପଖ୍ୟାତି
ସକଳଙ୍କ ନାମ ମୋର ଯୋଡ଼େଁ ତାଙ୍କ ନାମେ
(ଦେବତା । କ୍ଷମିବ ଦୋଷ, ଏହି ଶୁଭ ଯାମେ !)

ସିଦ୍ଧତପା ମୁନି ସେହୁ ଚରଣେ ତାଙ୍କରି
କେତେ ମନସ୍ୱିନୀ ହୋଇ ପାରନ୍ତେ କିଙ୍କରୀ,
ଅହଲ୍ୟାର ସଉଭାଗ୍ୟ, ସେହି ପଦପ୍ରାନ୍ତେ
ବସି ସେ ଶୁଣିଛି କେତେ ବିରଳେ ଏକାନ୍ତେ
ଅନାସକ୍ତ ପ୍ରୀତି ଯୋଗ, କିନ୍ତୁ ନିକି ସତେ
ଉଭିନ୍ନ ଯୌବନ ମୋର ସେ ମତ୍ତ ବସନ୍ତେ
ଲଭିଲା ସେତିକେ ତୃପ୍ତି ? କହୁଥାନ୍ତି ମୁନି,
'ରୂପସୀ ଗୋ ! ରୂପଭାତି ଦେଇଛ ତ ବୁଣି
ଦୀନତମ ମୋର ଏହି ଆଶ୍ରମ କୁଟୀରେ
ଅନ୍ଧାର ମାଣିକ୍ୟ ପରି । ତରୁ ଶିରେ ଶିରେ
ଅବା କୁଟୀର ଅଙ୍ଗନେ ପୂର୍ଣ୍ଣିମା ନିଶୀଥେ
ବିସ୍ମିତ ଜୋଛନା ଦେଖି, ମଣେ ମୁହିଁ ଚିତ୍ତେ,
ସତେ ଅବା ତୁମରି ଏ ମୁଖ ସୁଧାକର
ଢାଳିଦିଏ ସୁଧାଧାରା ତପ-କ୍ଳାନ୍ତି-ହର ।
ତୋ ଗୁଣ କୀର୍ତ୍ତନ ହୁଏ, ଆଗୋ ଚାରୁଶୀଳେ,

କୁଟୀରେ କୁଟୀରେ ପ୍ରତି ନିଶି ପ୍ରଭାତିଲେ।
ଦିନର ସମାଧି ଶେଷେ ଦିବା ଅବସାନେ
କୁଟୀରେ ଫେରଇ ଯେବେ, ମୋର ଅନୁଧ୍ୟାନେ,
ଜାଣେ, ତୁମେ ବସିଥାଅ। କିନ୍ତୁ ଗୋ ପ୍ରେୟସୀ,
କ୍ଷଣିକ ବିଚ୍ଛେଦ ଅନ୍ତେ ଯେ ମିଳନ ବଂଶୀ
ବାଜି ଉଠେ ପୀରତିର ଅନୁବାଦ ସୁରେ,
କିଏ ବେଶୀ ସୁଖୀ ତହିଁ ? କାହା ପ୍ରାଣ ପୂରେ
ସମଧିକ ତୃପତିରେ ? ତୁମର ନା ମୋର ?
ଜୋଛନାରେ ଏତେ ପ୍ରୀତି ପାଏ କି ଚକୋର ?
ତପକ୍ଲିଷ୍ଟ ଭାଲୁଁ ମୋର ଶ୍ରମସ୍ୱେଦବାରି
ସୁରଭି ସଞ୍ଜ ବାତ ତ ପାରେ ନା ନିବାରି,
କିବା ଅଛି ପ୍ରିୟେ ତୋର ଏ ଚୂର୍ଣ୍ଣ ଚିକୁରେ
ସବୁ କ୍ଲାନ୍ତି ଅବସାଦ ଅପସାରେ ଦୂରେ।
ଦୀନର କୁଟୀର କୋଣେ ଦେଖି ଏତେ ସୁଖ
ସ୍ୱର୍ଗସୁଖେ ଦେବତାଏ ହୋଇବେ ବିମୁଖ !
କିନ୍ତୁ ପ୍ରିୟେ ଗୁରୁଭୟ ଉପୁଜେ ମୋ ପ୍ରାଣେ
ମାନବର ସୁଖ ଦେବ-ମନେ ଈର୍ଷା ଆଣେ,
ଏତେ ସଉଭାଗ୍ୟ, ଏତେ ସମଦ-ସମ୍ଭାର
ସହିବାକୁ ସମର୍ଥ କି ଋଷିର ସଂସାର ?'

ଅନାଗତ କଥା ସତେ ମୁନି ଏ ଜାଣନ୍ତି।
କି କୁକ୍ଷଣେ ଅବା ମୁନି ମୁଖୁଁ ଏ ଉକତି
ସ୍ଫୁରିଥିଲା, ମୋ ଜୀବନେ ହେଲା ତାହା ଭୋଗ;
ମୋ ଭାଲେ କି ସତେ ଏହି ଅଭିଶାପ ଯୋଗ
ଲିହି ରଖି ହସୁଥିଲା ବିଧି ନିରଦୟ-
ମୁଁ ତାହା ବୁଝିବି କାହୁଁ ? ଅବଳା ହୃଦୟ
ସତେ କିଛି ଚିରଦିନ ପରିଣାମ ଅନ୍ଧ
ଭୋଗିବାକୁ ଚାହେଁ ଚିର ପ୍ରୀତି-ମକରନ୍ଦ !

କାନ୍ତ ମୋର ମହାଯୋଗୀ ନିୟତ ସଂଯତ
ମୋ ବାଞ୍ଛା ପୂରଣେ ସଦା ଥାଇ ଅନୁରତ
ଦିନେ ହେଲେ ତପୋମାର୍ଗୁ ନୋହି ବିଚଳିତ
ଆଶ୍ରମ ଧରମ କରୁଥାନ୍ତି ସମାହିତ ।

ଆଶ୍ରମବାସୀଏ ଚିର ସ୍ନେହ-ପରବଶ
ମୁହିଁ ଯେହ୍ନେ ତାଙ୍କ ଚିର ଅଭୀପ୍‌ସିତ ଧନ ।
ବାଲୁଁ ବୃଦ୍ଧ ପରିଯନ୍ତେ ସରବେ ମୋ ପ୍ରତି
ଅଯାଚିତେ ଢାଳିଥିଲେ ସେନେହ ଭକତି ।
ମୋର ସୁଖ ଦୁଃଖ ସବୁ ମିଶି ଆପଣାର
ମୁନି କୁମାରୀଏ ମୋର ପାଶେ ଅନିବାର
ରହିଥାନ୍ତି ଘେରି, ଯଥା କୁସୁମ କେଶରେ
କୁସୁମର ଦଳରାଜି । ମୋର ମାନସରେ
ମୁନିଙ୍କ ଫେରିବା ଯାଏ ଅବସାଦ ଲାଗି
ତେଣୁ ଥାଏ ନାହିଁ ସ୍ଥାନ ତିଳେ । ମୁଁ ଅଭାଗୀ
ତାଙ୍କରି ସେ ଅକପଟ ସରଳ ଅନ୍ତର-
ପାଶେ ପଡ଼ିଥିଲି ଧରା, ନିମିଷ ମାତର
କାହିଁ ମୋର ଅବକାଶ କ୍ଳାନ୍ତି ଅନୁଭବେ ?
ବନାଶ୍ରମେ ଗୃହାଶ୍ରମ ଏତେ କି ସମ୍ଭବେ ?

ଆଶ୍ରମ ବର୍ଦ୍ଧିତ ତରୁଲତା ଆଳବାଳେ
ଜଳ ସେଚୁଁ, ଶ୍ରମ-ସ୍ୱେଦ-ବାରିକଣା ଭାଳେ
ଉଇଁବାର ଦେଖି ମୋର ସମବୟସୀର
ଉଛୁଳି ପଡ଼ଇ ମୁଖୁଁ ପରିହାସ ଗିର,
କହଇ 'ଷୋଡଶୀ, ତୁଲୋ ! ଏତିକେ ତ କ୍ଳାନ୍ତ,
କେହ୍ନେ ତୋ ଉସବ-ନିଶା ହୁଏ ଲୋ ପ୍ରଭାତ ?'
ସରମେ ମଉଳି ଭୂମିତଳେ ଲୋଟିବାରେ
ବାଞ୍ଛଇ ମୁଁ ମନେ ମନେ, କିନ୍ତୁ କି ତା ପାରେଁ ?

ନ ଶୁଣିଲା ଭାନ କରି, କୁରଙ୍ଗ ଶିଶୁର
ପଛେ ପଛେ ଧାଏଁ ମୁହିଁ, ପୁଣି ସେ ମଧୁର
ପରିହାସ, ଭଲ କରି ଶୁଣିବାର ଲାଗି
ତୃଷିତ ପରାଣେ ଆଶା ଉଠୁଥାଏ ଜାଗି ।

ହାସ ପରିହାସ କେତେ ସ୍ନେହ ପ୍ରୀତି ରାଶି
ଘେନି ମୋ ସୁଖର ଦିନମାନ ହେଲେ ଭାସି
ଚାଲିଥିଲା ଅବିଶ୍ରାନ୍ତ କାଳସ୍ରୋତ ବକ୍ଷେ,
ଚିର ବାଧାବନ୍ଧହୀନ, ଅସୀମର ଲକ୍ଷ୍ୟେ
ସସୀମର ବିସ୍ମୃତିରେ; କିଛି ଦିନ ଅନ୍ତେ,
(କେତେ ଦିନ ମୁଗ୍ଧା ମୁହିଁ କହିବି କେମନ୍ତେ ?)
ଆଦି ପ୍ରତ୍ୟୁଷର ଆଦି-ରଶ୍ମିରେଖା ପରି
ଆଶ୍ରମ ସଂସାର ମୋର ପ୍ରମୋଦିତ କରି
ଆସିଲା ଅତିଥି ଶିଶୁ- ସୁରଙ୍ଗ ଅଧରେ
ନିଖୁଣ ହସର ଉସ ଯେହ୍ନେ ନାହିଁ ଧରେ ।
ମାତୃତ୍ୱର ଗଉରବେ ମୋର ଅନ୍ତର୍ଗତେ
ସୁପ୍ତା ନାରୀଟିକ ଅବା ଜାଗ୍ରତ ଜଗତେ
ମୁଖ ତୋଳି ଅନାଇଲା ସେହି ଦିନ । ମୁଁ ତ
ସେହିଦିନୁଁ ସେ ଗୌରବେ ହେଲି ଅଭିଭୂତ ।

ମହର୍ଷି କହିଲେ, ପ୍ରିୟେ ! ଏତେଦିନେ ଆଜି,
ଫଳବନ୍ତ ତବ ମମ ଅଭିଳାଷ ରାଜି,
ତୁମରି ଏ ମହାଦାନେ । ଋଷିର ସଂସାର
ପୂରିଅଛି ଯଦି, ଯୋଗ୍ୟ ପ୍ରତି ପୁରସ୍କାର
କି ଦେଇ ତୋଷିବି ତୋତେ ?' ମୁନିଙ୍କ ଏ ଗିରେ
ତାଙ୍କ ପଦରଜ ନେଇ ବୋଳିଲି ମୁଁ ଶିରେ ।



# ଦ୍ୱିତୀୟ ସର୍ଗ

"ସୁଖର ବାସରମାନ ପକ୍ଷ ସଂବଳିତ,
ଦୁଃଖର ନିମିଷ ଚିର ପାଷାଣ - ପିହିତ,-
କେଜାଣି ଥିଲା ସେ ଦିନ ? ସେ ଦିନେ ଏ ଦିନ
ତୁଳିଲେ କି ଦେଖେଁ ? ଆଜି ଶତଧା ମୁଁ ଦୀର୍ଣ୍ଣ
ପାରିଅଛି ଜାଣି ଖାଲି ମଧୁ ଆସ୍ୱାଦନ
ନୁହଇ ନରର ଭାଗ୍ୟ; କ୍ଷୁଦ୍ର ଏ ଜୀବନ-
ପାତ୍ରେ ସୁଧା ଉପୁଜଇ ଝଞ୍ଜା ଘନଘଟା,
ଜୁଆର ଯହିଁରେ ଯେତେ, ତେତେ ତହିଁ ଭଟା
ମୋ ଦୃଷ୍ଟି ସିନା କେବଳ ଆପାତ-ଦରଶୀ,
ନିଷ୍ଠୁରା ନିୟତି କିନ୍ତୁ ଅନ୍ତରାଳେ ବସି
କରୁଥିଲା ପରିହାସ ଅବା । ଦିବସାନ୍ତେ
ଦିନେ ମୁହିଁ ବସି ମୋର କୁଟୀରେ ଏକାନ୍ତେ,
ଇଙ୍ଗୁଦୀ ତଇଳେ ଥିଲି ପ୍ରଦୀପଟି ଜାଳି,
ମୋ ଶିଶୁ ତନୟ ଖେଳେ ପ୍ରାଣ ମନ ଢ଼ାଳି;
ସନ୍ଧ୍ୟା ଆହ୍ନିକ ବଢ଼ାଇ ପତି ତପୋଧନ
ମୋ ପାଶେ ବସିଲେ ଆସି; ଶରଦନ୍ତ ଘନ
ପରାୟେ ବଦନ ତାଙ୍କ ଦିଶୁଥିଲା କ୍ଲାନ୍ତ,
ଅନ୍ତରେ ତାଙ୍କର ଯେହ୍ନେ ଘାତ ପ୍ରତିଘାତ
ଚାଲିଥିଲା କେଉଁ ଏକ ଘୋର ଦୁଶ୍ଚିନ୍ତାର,
ମୁଖ-ଦରପଣେ ବିମ୍ବ ପଡୁଥିଲା ତାର ।
ଝଡ଼-କ୍ଲିଷ୍ଟ ତରୀ ଯଥା ତରଙ୍ଗ ଆକୁଳ-

ସାଗର ଉଷଙ୍ଗେ ବିମ୍ବି କୋଡ଼ିବୁକେ କୂଳ ।

ଅବଶେଷେ ମହାଋଷି ବିପୁଳ ଆୟାସେ
କହିଲେ ଫିଟାଇ ମୁଖ, ପ୍ରିୟେ ତବ ପାଶେ
ବହୁ ଋଣେ ଋଣୀ ମୁହିଁ, ନ ଶୁଝି ତା କିଛି
ଆଜି ଆସିଅଛି ପଣି ମନେ ମନେ ଇଚ୍ଛି
ତବ ପରସାଦ ଲଭ; ଜାଣେ ମୁଁ ବରାକୀ
ତବ ଆଶା ପୂରିବାକୁ ଅଛି ବହୁ ବାକି-
ମୋ ବାସନା ଏବେ ଯଦି କହେ ଲୋ ଶୋଭାଙ୍ଗୀ
ଅପୂର୍ଣ୍ଣ ସ୍ୱପନ ତୋର ଯିବ ହେଲେ ଭାଙ୍ଗି;
ତଥାପି ଲୋ ନ କହିଲେ ନୁହେ । ଅପରାଧ
ନ ଘେନିବୁ ମନସ୍ୱିନୀ ! ଯୋଗେ ପରମାଦ
ଘଟଇ ଏ ବନେ ଯେଣୁ, ମୋ ଶେଷ ସମାଧି
ମନାସିଛି କପିଳାସେ ଆସେ ଯାଇ ସାଧି ।''

ମୁଁ କହିଲି, ପ୍ରିୟ ତବ ଯୌବନ କାମନା
ପୂରିଛି ଏତେକେ ଯଦି, କେସନେ ମୁଁ ମନା
କରି ତବ ମୋକ୍ଷ ପଥ ରୋଧିବି ? କେବଳ
ଜାଣିବାକୁ ଚାହେଁ ମୁହିଁ ଯୌବନ ସମ୍ବଳ
ଅଛି ଆଜି ଯାହା ମୋର କାଲି କିକି ତାହା
ଥିବ ଅକ୍ଷୁଣ୍ଣ ଏପରି ଚିରଶ୍ୟାମ ଆହା !
ଆଜି ଯେ ଦେଖୁଛ ଏହି ଲାବଣ୍ୟ ସରସୀ
ଶତ ଲୀଳା ଅରବିନ୍ଦେ ଉଠଇ ସରସୀ,
ହିମାଦ୍ରି ଉତ୍ତରା ବାତ ଯେବେ ଆସି କାଲି
ସୁକୁମାର କଞ୍ଜରାଜି ଦେଇଯିବ ଜାଳି
ସମାଧି ସମାଧା ପୂର୍ବେ ତବ, ତୁମେ ଆସି
କି ଦେଖିବ ଏଥି ? ତବ ମାନସ ଉଲ୍ଲାସୀ
ଏ ସରସୀ ସଉନ୍ଦର୍ଯ୍ୟ ଝରା ଦଳ ପରି
ଲୋଟିବାର ଦେଖି ତୁମେ ହୃଦେ ଧୃତି ଧରି

ପାରିବ ତ ରହି କହ ?' କହି ହେଉଁ ତୁନି;
କି ଦେବେ ଉତ୍ତର ଖୋଜି ନ ପାଇଲେ ମୁନି ।
ଅବଶେଷେ ଦୁର୍ବଳର ବିକାର ସମ୍ଭାଳି
କହିଲେ ସେ, 'ତବ ପ୍ରୀତି କରି ମୁଁ ସଞ୍ଚାଳି
ଉଦ୍‌ଯାପିବି ଯୋଗ ମୋର । ବିରହ ବାସର
ବୁଝିବାକୁ ସଖି ତୋର ନୋହୁଁ ଅବସର
ଆସି ଉଭା ହେବି ଯେବେ ଚତ୍ୱରେ ତୋହରି
ପ୍ରଣୟର ନବାଙ୍କୁର ଘେନି ଗୋ ସୁନ୍ଦରୀ,
ରାତ୍ରି ପରଭାତେ ରବି ଆଶ୍ଳେଷେ ପ୍ରଫୁଲ୍ଲ
ପଦ୍ମିନୀ ପ୍ରମୋଦୁଁ ବଳି ସେ ମିଳନ ମୂଲ୍ୟ
ହେବ ତୋର ମହୀୟାନ ।' ଶତ ଅନୁନୟ,
ଭୂରି ଅଶ୍ରୁ ବରଷଣ ହେଲା ମୋ ବାଙ୍ମୟ,
ତେବେ କି ଏ ଦୁଃଖିନୀର ଘନାୟିତ ବ୍ୟଥା
ଅନ୍ତସ୍ତଳ ପୂରି ହଳୁଥିଲା ଯା ସର୍ବଥା
ହେଲା ଅଭିବ୍ୟକ୍ତ ? ଆହା ଦ୍ରୁମରାଜି ଶିର
କମ୍ପଇ ଝଟିକାଘାତେ, କିନ୍ତୁ ଚିର ସ୍ଥିର
ନିର୍ବିକମ୍ପ ଶୈଳ ଶୃଙ୍ଗ । ହାୟ । ମୋର ପୁରେ
ଆସନ୍ନ ବିରହବଂଶୀ ନିପଟ ବେସୁରେ
ବାଜିଲା ଯେ ନିଦାରୁଣ ତାର ପ୍ରତି ତାଳ
କି ଦେବେ ମୋ ସ୍ୱାମୀ ସେ ଯେ ନିଜେ ଅସମ୍ଭାଳ

ସେ ଦିନୁଁ ଆସିଲା ଘେରି ନେତ୍ରେ ଅଭାଗୀର
ଦିଗ ଚକ୍ର ରେଖାଯାଏ ଶ୍ରାବଣ ତିମିର ।



# ତୃତୀୟ ସର୍ଗ

'ବିପୁଳ ମିନତି ଏଡି ମୋକ୍ଷ ପରିକାମୀ
କାନ୍ତ ମୋର ହେଉଁ କପିଳାସ ପଥଗାମୀ,
ଉଦ୍‌ବେଳିତ ଯୌବନର ଗଭୀର ଉଲ୍ଲାସ
ରୋଧି ବକ୍ଷେ ଯୋଗଲୟେ ବିରହ ଅଭ୍ୟାସ
ଆରମ୍ଭିଲି ମୁହିଁ ଏଣେ । ମୋ ଯୋଗ ଧାରଣା
ଥିଲା ସେହି ତରୁତଳ, ଯହିଁ ମହାମନା
ପୁଣ୍ୟ କପିଳାସ ପୀଠେ ବ୍ରହ୍ମ ଆରାଧନେ
ନିଷ୍କମ୍ପ ପ୍ରଦୀପ ସମ ବସି ଏକାସନେ
ରହିଥିବେ ଧ୍ୟାନମଗ୍ନ । ମୋର ଅନୁଚିନ୍ତା
ଥିଲା ଚିର, - ଘରେ ଯାର ରୂପସୀ ବନିତା
ବାହୁ ଉପାଧାନ ଅଶ୍ରୁନୀରେ ସିକ୍ତ କରି
ପୁହାଇ ଦିଅଇ ଦୀର୍ଘ ପୌଷ ବିଭାବରୀ
ବିରହ ପ୍ରଦୀପ ଜାଳି, କେସନେ ତା ଚିତ୍ତ
କଠୋର ତପୋବରତେ ହୁଏ ଅବହିତ ?

କବି ଏ କହନ୍ତି ରୂପସୀର ଚାରୁଭୃରୁ
ଫୁଲଧନୁ ଆମଞ୍ଚନେ ମନୋଜର ଗୁରୁ-
ତେଣୁ ମୋତେ ଗୁରୁ ଆତ୍ମଗ୍ଳାନି ବେଳେ ବେଳେ
କରେ ଅବ୍ୟବସ୍ଥ; ଭାବେଁ ରୂପସୀର ମେଳେ
ତେବେ କି ମୋ ନାହିଁ ସ୍ଥାନ ? କିବା ପ୍ରୟୋଜନ
ଏ ଭୃରୁ ବିଳାସେ ତେବେ, ଯଦି ସ୍ୱାମୀମନ

ନ ପାରିଲି ବଶ କରି ଦିନକର ଲାଗି ?
ପୋଷା ବିହଗ ଶିଶୁ ଯେ ମୋର ବଶତ୍ୟାଗୀ
ହୋଇ ଉଡ଼ିବାକୁ ଚାହେଁ, ଦାୟିତ୍ୱ ସେଥିକି
ତାଙ୍କ ଯେତେ, ନୁହେ ନିକି ମୋହରି ତେତିକି ?
ମୁଁ ଯେଣୁ ପାରିଲି ନାହିଁ କାନ୍ତ ପଥ ରୋଧି
ମୋ ମାନସ ତେଣୁ ମୋର ହୁଅଛ ବିରୋଧୀ ।

ହାରେ ଆଶା ! କେତେ ଦିନ ପାଇଁ ଏ ଶୟଳେ
ଆସେ ନର ? ପୁଣି କେତେ ତପସ୍ୟାର ଫଳେ
ଆସେ ଯେ ଯୌବନ- ଯୋଗ, ପ୍ରତି ପଳ ତାର
ସମ୍ଭୋଗେ ନିୟୋଜିବାକୁ କରେ ସେ ବିଚାର,
କିନ୍ତୁ ତାର ଅଭିଳାଷୁଁ କଣିକା ଟିକକ
ନପୁରୁଣୁ ଚାଲିଯାଏ କ୍ଷିପ୍ର ସେ ପଲକ
ସଙ୍ଗୀତର ସ୍ୱର ସମ । ହା ନର ଜନମ !
ଯଉବନ ଯୋଗ ପଦ୍ମ ପତ୍ର ନୀର ସମ
କ୍ଷଣସ୍ଥାୟୀ ତାର; ପୁଣି କେତେ ଜଣଙ୍କର
ସୌଭାଗ୍ୟେ ଜୁଟେ ସେ ଯୋଗ ? ଏଣୁ ସେ ଯୋଗର
ପ୍ରତି ପଳକଟି କରିବାକୁ ଉପଭୋଗ
ଅସାଧ୍ୟ ସାଧନେ କେତେ ଆତ୍ମ ବିନିଯୋଗ
କରୁଛନ୍ତି ଏ ଶୟଳେ । କିନ୍ତୁ ଆହା କିଏ
ପାଇଲା ସୁଯୋଗମାନ ଆପେ ଫିଙ୍ଗିଦିଏ
ଏହିପରି ? ସେହି ସିନା ଦୀନ ଅକିଞ୍ଚନ
ନିଶ୍ଚିତରେ ପରିହରି ଅନିଶ୍ଚିତେ ମନ
ବଳାଏ ଯେ । ମରଣର ଦିଗରେଖା ପାରେ
କେ ଜାଣେ କି ଅଛି, କିବା ନାହିଁ ? ମୋ ବିଚାରେ
ତେଣୁ ଏହି କରଗତ ସତ୍ୟ ବର୍ତ୍ତମାନେ
ଲଭିବ ଯେତିକ ମଧୁ, ନିଃଶେଷେ ତା ପାନେ
ନୋହିବ ବିମୁଖ ନର । କିନ୍ତୁ ହା ଦୁରାଶା ।
ଚାତକିନୀ ବୁକେ ଯେଉଁ ରଙ୍ଗିମ ପିପାସା

ଚିର ସଜାଗ ସକ୍ରିୟ, ଜୀମୂତ କି ତାହା
ପାରେ ନାହିଁ ତିଳେ ଲକ୍ଷି ? ନିର୍ବିକାରେ ଆହା
ଉଡ଼ି ମିଶେ ମହାଶୂନ୍ୟେ ! ଭାବିଲି ମୁଁ କେତେ,
ମୁନି ମୋ ସାଧନ୍ତି ଏହି ତପୋଯୋଗ ଯେତେ
କାହିଁ ପରିଣତି ତାର ? ଆଶ୍ରମ ଉଦ୍ୟାନେ
ଫୁଟେ ଯେତେ ଫୁଲ ନିଶି ଦିବା ଅବସାନେ,
ତହୁଁ ଯେଚି ଝରିପଡ଼େ ବୃନ୍ତେ ଏକା ଏକା
ଜାଣେ ସେ ପ୍ରଶଂସ୍ୟ ବୋଲି ନରଶାସ୍ତ୍ରେ ଲେଖା;
କିନ୍ତୁ ଯେଉଁ ଫୁଲଟିକ ଆଶ୍ରମ ବଧୂର
କବରୀ ମଣ୍ଡିତ କରି ବିରହ ବିଧୁର
ପତି ପ୍ରାଣ ତରପଇ, ତାର ସିନା ମୂଲ୍ୟ
ସଦା ଚଞ୍ଚଳ ଜଗତେ ଯଥାର୍ଥ ଅତୁଲ୍ୟ ।
ସାର୍ଥକ ତାହାର ସୃଷ୍ଟି, ଯେଣୁ ସେ ଆପଣେ
ଭୋଗେ ଭୋଗ୍ୟ, ଲାଗେ ପୁଣି ପର ପ୍ରସାଦନେ ।
ଭାବିଲି ମୁଁ- ଅବା ମୋର ଜୀବନ କି ସତେ
ଫୁଟି ଝରା ଫୁଲ ପରି ଦୁଇ ଦିନ ଅନ୍ତେ
ଅକାଳେ ମଉଳି ଯିବ ? ଭାବିଲି ମୁଁ ସିନା,
ଆଶା ଯେ ନିରୋଧି ନୁହେ, ଚିର ସେ ନବୀନା
ପରାଣେ ଉଚ୍ଚାଟ ଆଣେ, ପୁଣି କାନେ କାନେ
କହେ, 'ଗୋ ଯୁବତୀ । ଯଉବନ ଅପମାନେ
ବଞ୍ଚି କି ପାରିବୁ ? ଏଥୁଁ ମରଣ ଯେ ପ୍ରେୟ'
ଅଭାଗୀ ମୁଁ ତାହା ନିକି କରି ପାରେଁ ହେୟ ?

ତପୋବନେ ତପଃକ୍ଲିଷ୍ଟା ମୁନିବାଳା ସହ
ଯାପିଲି ମୁଁ ଉପାଗତ ଦୁର୍ଜ୍ଞେୟ ବିରହ
ବାହାରେ ପ୍ରଶାନ୍ତ ମୁଖେ; କିନ୍ତୁ ଅନ୍ତରର
ଅଦମ୍ୟ ଆକାଙ୍କ୍ଷା ମୋତେ ନିୟତ ଜର୍ଜର
କରୁଥାଏ ଘାତ ପ୍ରତିଘାତେ, ପୁରା ଯଥା
ଉଦ୍‌ଗତା ଜାହ୍ନବୀ ସ୍ରୋତେ ଐରାବତ ମଥା

ଲଭିଥିଲା ବଜ୍ରାଘାତ। ଦିନମାନ ଯାଏ
ମୋର ଏହିପରି କେତେ; ପ୍ରବାହ ପର୍ଯ୍ୟାୟେ
ଗ୍ରୀଷ୍ମାନ୍ତ ବରଷା ଆସେ, ଶରଦନ୍ତ ହିମ,
ନିରାଶାର ଶେଷେ ଆଶା, ଆଶା ପଛେ ଭୀମ
ନୈରାଶ୍ୟ ଆସଇ ଧାଇଁ; ନିର୍ଜନ ନିଶୀଥ
ସବୁଠୁ ହୁଏ ଅସହ, କଣ୍ଟକ ପିହିତ
କିବା ତାର ପଥ ? ନଗ୍ନ ବିରାଟ ବିରହ
ଶଯ୍ୟା ଚଉପାଶେ ମୋର ତୋଳଇ ବିଗ୍ରହ
ତମିସ୍ର ଶୂନ୍ୟତା ପୂରି; ଉଲଙ୍ଗ କୃପାଣ
ବର୍ଷେ ତା ଅନଳ କଣା ବିରହିଣୀ ପ୍ରାଣୁଁ
ଶୁଖାଏ ରକ୍ତର କ୍ଷୀଣ ଧାରଟି। ବିଫଳେ
ସନ୍ତ୍ରସ୍ତା ଶଙ୍କିତା ମୁହିଁ ବାହୁପାଶ ତଳେ
ଲୋଡ଼ଇଁ ଦୟିତ ଗଳ, କିନ୍ତୁ ସବୁ ରିକ୍ତ
କରଇ ଲାଞ୍ଛିତ ମୋତେ। କେବେ ହିମସିକ୍ତ
ଅରଣ୍ୟାନୀ ଶୀର୍ଷ ଦେଶେ ଚକୋର ଲଳନା
ନିରଳସେ ପ୍ରିୟ ସାଥେ ନିର୍ମଳ ଜୋଛନା
ପିଇବାର ଦେଖେଁ ଯଦି ଅସୂୟା ବିକଳ
ଚିତ୍ତେ କାନ୍ତ ମିଳନାଶା ହୁଏ ମୋ ପ୍ରବଳ;
କେବେ ଆହା ଶୁଣେ ଯଦି କୁଟୀର ପ୍ରାଙ୍ଗଣେ
କଳ୍ପିତ ଚରଣଧ୍ୱନି ମୋ କର କଙ୍କଣେ,
ଚିତ୍ତ ବିକ୍ଷୋଭିତ କରି ଜାଗଇ ଶିଞ୍ଜିତ
ପ୍ରିୟ ଆଲିଙ୍ଗନେ, କିନ୍ତୁ ଭ୍ରାନ୍ତି ଅପନୀତ
ହେଲେ ମୁଁ ମରଇ ଲାଜେ; ଥାଉ ବା ନ ଥାଉ
ପାଶେ କେହି ଦେଖିବାକୁ ଏ ମୋ ରୀତି, ଆଉ
ଦୂରେ ଶୁଭ୍ର ସୁଧାକର ମୋ ଭାବେ, ବିଭୋର
ହୋଇ ଉଠେ ଲଜ୍ଜାରୁଣ, ପଳାଇ ମୁଁ ମୋର
ବଦନ ଲୁଚାଏଁ ଶେଯେ। ତଥାପି ନିରୋଳେ
ସୁପ୍ତିର ସ୍ୱପନେ ହସେ ଶିଶୁ ସୁତ କୋଳେ।



# ଚତୁର୍ଥ ସର୍ଗ

'ଏକାନ୍ତ ବେଦନା ମୋର କେ ବୁଝିଲା ଖାଲି ?
ମୁହିଁ ମୋ ଅଶ୍ରୁପ୍ରବାହେ ତା ପଥ ପଖାଳି
ପିଚ୍ଛିଳ କଲି ଯେତିକି, ସେତିକରେ ଯାହା
ଅସରନ୍ତି ଦିବାନିଶି ଚଳାଇଲା ନାଆ ।

ସେତିକେ ସେ ଦିନମାନ ହେଉଁ ଅଗ୍ରସର
କଟିଗଲା ବିଧୁରାର ଗୋଟିଏ ବତ୍ସର-
ବୋଲି ହେଲି ଅବଗତ ସେ ଦିନ, ଯେ ଦିନ
ନିତ୍ୟ ପୁଷ୍ପବନ୍ତ କେଉଁ ବନେ ସୁଖାସୀନ
ସୁଖସ୍ପର୍ଶ ମଳୟର ପ୍ରଥମ ଗୁଞ୍ଜନେ
ଚମକିଲା ତରୁସାଥେ ବଲ୍ଲୀ । ପୁରାଙ୍ଗନେ
ନିଆଳୀ ନିକୁଞ୍ଜ ପ୍ରାନ୍ତେ ଅଳସ ଦିନାନ୍ତେ
ଭାଳୁଥିଲି କାନ୍ତ ଅନୁଭାବନା ଏକାନ୍ତେ,
ଥିଲା ନାହିଁ ଚିନ୍ତା ଦକ ରିକ୍ତ ଆଶ୍ରମର,
ଜନନୀ ପଣନ୍ତ ଧରି ଅବୋଧ କୁମର
କଟାକ୍ଷ କରିବା ଲାଗି ଶତ ପ୍ରଶ୍ନେ ପାଶେ
ଥିଲା ନାହିଁ । ଘେରିଥିଲା ନିର୍ମମ ଉଦାସେ
ମୋତେ ଶୂନ୍ୟ; ଅବସର ସ୍ୱଚ୍ଛନ୍ଦ ତେଣୁ ବା
ମିଳିଥିଲା ଭାବିବାରେ ମୋତେ । ଶ୍ୟାମ ଦୂର୍ବା
ଅବହେଳିତ ସେ ଦିନ ମୋର ପାଦତଳେ
ବେଢ଼ିଛି କେଡ଼େ ପୟର ପ୍ରତିଶୋଧ ଛଳେ

ଦେଖୁଛ କୁମାର ଆଜି ? ପାଷାଣୀ ପରାଣେ
ଥିଲା ଅନୁଭୂତି ଯାହା ସେତିକେ ମୁଁ ଜାଣେ
ବିବିକ୍ତର ନିଦାରୁଣ ଝଞ୍ଜା ହିଆ ଦୀର୍ଣ୍ଣ
କରିଥାନ୍ତା ମୋର ଯଦି ପାଶେ ନିଶି ଦିନ
ଥାଇ ଶ୍ୟାମ ସୁଶୀତଳ ଉପଚାର ଦାନେ
ବ୍ୟଥା ପ୍ରତିଷେଧ ଢ଼ାଳି ନଥାନ୍ତା ଏ କାନେ ।
ମହତର ପ୍ରତିଶୋଧ ମହତ୍ତର । ଶୁଣ
ମୋ କାହାଣୀ କହେଁ ପୁଣି, ଫଗୁଲ ଫଗୁଣ
କିବା ଯାଦୁ ବିଦ୍ୟାବଳେ ଧରଣୀର ବୁକେ,
ଫୁଲେ, କିଶଳୟେ ଅବା ଦିଗବଧୂ ମୁଖେ
ତରଳ ତାରୁଣ୍ୟ ଢ଼ାଳି, ବିଶାଳ ବିଶ୍ୱର
ପ୍ରତିଅଙ୍ଗ କରିଗଲା ପାଟଳ ଭାସ୍ୱର ।

ପଡ଼ିଲା ମୋ ମନେ ପୁଣି ସେହି ଦିନ କଥା
ପ୍ରଥମ ଯୌବନେ ଯେବେ ଭୋଗାମୋଦରତା
ଦେଖୁଥିଲି ମୁହିଁ ପ୍ରତି ଆଖିର ପଲକେ
ରାଶି ରାଶି ରୂପଲୀଳା ବସୁନ୍ଧରା ଅଙ୍କେ;
ସରଣୀ ପାରୁଶେ ଶ୍ରାନ୍ତ ସୁପ୍ତି ଅବସାନେ
ସେ ଦିନ ବି ପଥଚାରୀ ଚକିତ ଧିଆନେ
ଦେଖୁଥିବ ଯେଉଁ ଚୂତ ଦ୍ରୁମ ଦଣ୍ଡ ଆଗେ
ଥିଲା ଉଭା ରିକ୍ତ କରେ ନିଷ୍ଫଳ ବିରାଗେ,
ମୁକୁଳ ମଞ୍ଜୁଳ ସେହି, ଅଳିକୁଳାକୁଳ ।
ରୂପ, ରସ, ଗନ୍ଧ ଅବା ଏକାଧାରେ ତୁଳ ।
ନିତ୍ୟ ବସନ୍ତବିଳାସୀ କୋକିଳ ଆହ୍ୱାନେ
ଜଡ଼ଭାବ ପରିହରି ଧ୍ୱନି ପ୍ରତିତାନେ
ବିଭ୍ରାଜିଲା ବନଭୂମି ଜୀବନ ପ୍ରଚୁରେ
ଏକତମ ଆନନ୍ଦର ବହୁମୁଖ ସ୍ପୁରେ ।

ଥିଲି ଏକାକିନୀ ମୁଁ, ମୋ ଅବସନ୍ନ ଚିତ୍ତେ
ଏ ସବୁର ଆକର୍ଷଣ କେବଳ କିଛିତେ
ନଥିଲା, ତଥାପି ଏକ ସୁରଭି ପ୍ରବାହ
ପ୍ରିୟ ଆଲିଙ୍ଗନ ପରି ମୋ ଅନ୍ତର ଦାହ
ଶୀତଳି ଯା ଦେଇଗଲା ଫେରି ମୁଁ ସେତିକେ
ଚାହାନ୍ତେ ଦେଖିଲି ଉଭା ମୋହରି ଅନ୍ତିକେ
କାମକାନ୍ତି-ରୂପ-ଜିଣା ସୁନ୍ଦର ତରୁଣ
ପ୍ରଭାପୂରେ ପରାଭବି ପ୍ରଭାତ ଅରୁଣ ।
ରୂପରାଜ୍ୟେ ଏତେ ରୂପ ହୁଅଇ ସମ୍ଭବ
କିଏ ଜାଣିଥିଲା ଆଗେ ? ସେ ରୂପ ବିଭବ
ଏତେ ଦିନ ଯାହା ଯାଇଥିଲା ମୋ ପାଶୋର
ଆଜି ପୁଣି ଅନୁଭବେ ଯୁଗଳ କିଶୋର
ତବ ଯୁଗ୍ମରୂପେ; କିନ୍ତୁ ଷୋଳ କଳା ଏଥି
ସବୁ କମନୀୟ ଯଥା ବାଳାରୁଣ, ସେଥି
ସବୁ ଯେହ୍ନେ ଦୀପଶିଖା ନାରୀ ଚିତ୍ତ ଚିତା;
ଜାଣି ନ ଜାଣି ଝାସିଲେ ପୋଡ଼େ ନାହିଁ କି ତା ?
କି ଥିଲା ସେ ରୂପାନଳେ କେଜାଣି, ଏ ଭୀରୁ
ଦୃଷ୍ଟି ମୋର ଚାହିଁ ଆପେ ନତ ହେଲା, ଶିରୁ
ପାଦଯାଏ ଘେରିଗଲା ଶିଥିଳ ବେପଥୁ,
ଘର୍ମିଲା ସର୍ବାଙ୍ଗ ଯେହ୍ନେ ବହ୍ନି ଯୋଗେ ଜତୁ ।
ବସନ୍ତ ବିଜୟ ବାନା ରକ୍ତାଶୋକ ପରି
ଏ ମୁଖେ ଯେ ରକ୍ତ ରାଗ ଉଠିଲା ସଞ୍ଚରି
ମୋହରେ ତ ଆପେ ହେଲା ବୋଧ, ଆଗନ୍ତୁକ
ଏ ଭାବେ ମୋ ଲଭିଥିବେ କେତେ ଯେ କୌତୁକ-
ସୁମରି ତା ଆଜି ସୁଦ୍ଧା ମରେଁ ମୁହିଁ ଲାଜେ ।
ଅବଳା ତ ମୁହିଁ କାହିଁ ସାହସ କି ବ୍ୟାଜେ
'ଆଗତ ଅପରିଚିତ' ପୁଚ୍ଛିବି ଭରସି ?
ବ୍ରୀଡ଼ାରେ ତ ଚିତ୍ତତଟ ଯାଇଥିଲା ଧସି ।
ପଳାଇ ଲୁଚେ ମୁଁ ଯାଇ ଆଶ୍ରମ କୁଟୀରେ

ପାଞ୍ଛିଲି କିନ୍ତୁ ଏ ଭାବେ ତ୍ୟଜି ଅତିଥିରେ
ଯିବାର ଆଶ୍ରମ ଧର୍ମବିଧି ନୁହେ ଜାଣି
ମଉନେ ରହିଲି ବସି, ମୋ ବଶ ନ ମାନି
ଥରେ ଥରେ ନେତ୍ର ଯୁଗ ବିଦେଶୀ ଚରଣେ
ପଡୁ ଅତର୍କିତେ, ମୁଁ ତା ଅତି ସଂଗୋପନେ
ଆଣୁଥିଲି ନିବର୍ତ୍ତାଇ ତସ୍କର ପରାୟେ,
ତଥାପି ମୋ ମନ ଯେହ୍ନେ ସଦା ଧାଉଁଥାଏ-
ନିର୍ମଳ ଲୋତକଧାର ପୟରେ ଅଜାଡ଼ି
ସବୁ ତାର ପଥପ୍ରାସ ନିଅନ୍ତି ମୁଁ କାଢ଼ି ।

କେଜାଣି ମୁଁ ଜାଣେ ନାହିଁ କେତେ କ୍ଷଣ ପରେ
ଷ୍ଟମ୍ଭିଲା ପ୍ରବଳ ବାତ୍ୟା କ୍ଷୋଭିତ ଅନ୍ତରେ ।
ଜାଣିଛି ଏତିକି ମାତ୍ର ନିଃଶ୍ୱସନୁ ତାର
ଅନନ୍ତ ଆବେଶକର ସୌରଭ ସମ୍ଭାର
ଘନ ଘନ ସମ୍ପ୍ରସରି ଅନାୟତ୍ତେ ମୋତେ
ଟାଣି ଘେନି ଯାଉଥିଲା ତାରି ଗତିସ୍ରୋତେ ।
ମୋର ତ୍ରସ୍ତ ନୀରବତା ଭାଷାହୀନ ଭାଷ
ବୁଝିଲେ ବା, ବୁଝିବାକୁ ବିଫଳ ପ୍ରୟାସ
କରି ଶେଷେ, ମଉନତା ଭାଙ୍ଗି ନିଜ କଣ୍ଠେ
ଯେ ବାଣୀ ସେ ଆଳାପିଲେ ଆଜି ଅକପଟେ ।
କହେଁ ଶୁଣ, ଧ୍ୱନି ତାର ଦାରୁଣେ ମୋହର
ଦୁର୍ବଳ ମରମ ଭେଦି କଲା ଜରଜର ।

କହିଲେ ସେ, 'ଶୁଣିଥିଲି ରମଣୀୟାଶ୍ରମ
ରଚିଛନ୍ତି ତପୀକୁଳଗୁରୁ ଗଉତମ
ଏହି ପୁଣ୍ୟ ବନଭାଗେ, ବହୁଦିନୁଁ; ମାତ୍ର
ଦେଖିଥିଲି ନାହିଁ, ଆଜି ଦେଖି, ମମ ଗାତ୍ର
ପୁଲକେ ରୋମାଞ୍ଚ ଉଠେ; ବହୁ ପୁଣ୍ୟାଶ୍ରମ
ସିଦ୍ଧତପା ଅଧ୍ୟୁଷିତ ସାମଗାନ ରମ୍ୟ

ଭ୍ରମିଛି ମୁଁ, କିନ୍ତୁ କାହିଁ ଏସନ ସୌଭାଗ୍ୟ-
ବନାଶ୍ରମେ ଗୃହାଶ୍ରମ, ସମ୍ଭୋଗେ ବୈରାଗ୍ୟ,
ସବୁ ଅବିକଳ ପୁଣି ସବୁ ଅନାବିଳ,
ପଙ୍କେ ଥାଇ ପଙ୍କେରୁହ ନୋହିଛି ପଙ୍କିଳ।
ଯୋଗୀ ଯତି କଣ୍ଠେ ତେଣୁ ଗଉତମ ନାମ
ହୋଇଅଛି ଜପାମାଳୀ। ଆଜି ତାଙ୍କ ଧାମ
ଦେଖିଲି ମୁଁ ଆଖି ଭରି ପ୍ରସନ୍ନ ମୋ ବିଧି
କହି ନୀରବିଲେ ଯୁବା। ଉଚ୍ଛଳ ବାରିଧି
ଉଚ୍ଛ୍ୱସିତ ସଙ୍ଗୀତର ଅବା ଅଧ ପଥେ
ହଜାଇଲା ଭାଷା। ଏଣେ ମମ ଅନ୍ତର୍ଗତେ
ପତି ପରଶସ୍ତି ଯେତେ ହେଲା ବହୁମୁଖୀ,
ତହୁଁ କି ଅଳପେ ମୁହିଁ ହୋଇଥିଲି ସୁଖୀ
ସେହି କଣ୍ଠବାଣୀ ଶୁଣି ? ଅଜଣା ଇଙ୍ଗିତେ
ପିପାସା ବଢ଼ିଲା ଯେତେ ଚଞ୍ଚଳ ଏ ଚିତ୍ତେ,
'କିଏ ଏ ଅପରିଚିତ, ସ୍ତାବକ ତରୁଣ-'
ପୁଛିବି କି ନାହିଁ ଭାବୁଁ ଭାବୁଁ, ସେହି ପୁଣ
ଆରମ୍ଭିଲେ, 'ମନସ୍ୱିନି ! ମୋର ପରିଚୟ
ଜାଣିବାରେ ହେଉଥିବ ଆଗ୍ରହ ନିଶ୍ଚୟ,
କିବା ଲାଭ ତହିଁ ? ତେବେ ଜାଣ ଗୋ ଏତିକ
ବିଦେଶୀ ମୁଁ ପାରାବାର ପାରର ବଣିକ।
ମଣି ମୁକୁତାର ମୋର ପଣ୍ୟ କାରବାର
ଘେନି ଆସିଛି ଏ ଦେଶେ, ଅନୁଚରବାର
ଯାଇଛନ୍ତି ତରୀ ଘେନି ରାଜପୁରୀ ଦେଖି,
ମୁଁ ଆସିଲି ଏହି ପଥେ ତରଣୀ ଉପେକ୍ଷି,
ଆଶ୍ରମ ଦର୍ଶନ ଚିନ୍ତି; ଥିଲା ଅଭିଳାଷ
ଯାପିଥାନ୍ତି ରାତ୍ରି ଏଥି ଗଉତମ ପାଶ,
ଆଶ୍ରମ ଆତିଥ୍ୟେ କରି କୃତାର୍ଥ ଜୀବନ
ନିଶି ଶେଷେ ଫେରିଥାନ୍ତି; ଏଣେ ତପୋଧନ
ମୋ ଭାଗ୍ୟକୁ ଦୂରଗତ ବୋଲି ପଥେ ଶୁଣି

ଫେରୁଥିଲି ଅଧପଥୁଁ, ପଛନ୍ତେ ମୁଁ ଗୁଣି
ଦେଖିଲି,- ଏ ପୁଣ୍ୟପୀଠ, ଅୟି ତାରୁଣୀଙ୍କେ,
ଦେଖିଯିବା ଭଲ । କ୍ଷମ ଧୃଷ୍ଟପଣ ଥିଲେ–
ତୁମେ ନିକି ଭାଗ୍ୟବତୀ ଗଉତମ ନାରୀ
ତପୋଧୂମ କ୍ଲେଶେ କୃପା-କମଣ୍ଡଳୁ ବାରି ?''

ବିନୀତ ଏ ପ୍ରଶ୍ନେ ମୂକ ରହିବାରେ ଆଉ
ନ ଥିଲା ମୋ ଚାରା, ତେଜି ଲଜ୍ଜାତ୍ରାସ ଦାଉ
ଉତ୍ତରିଲି, 'ପଥିକର ସତ୍ୟ ଅନୁମାନ
ମୁହିଁ ସେହି ଅଭାଗିନୀ ଅହଲ୍ୟା ମୋ ନାମ ।
ଯୋଗ ଆଶେ ସ୍ୱାମୀ ମୋର ନିବସନ୍ତି ଦୂରେ
ବସର ଅବଧିଃ ଏକା ମୁଁ ଆଶ୍ରମ ପୁରେ,
ତଥାପି ତ ଏ ପୀଠର ଚିର ଆଚରିତ
ଧରମ ଅତିଥି ସେବା, ସେ ହେଲେ ହେଳିତ
ଆଶ୍ରମର ଯଶୋରଥେ ଅଖ୍ୟାତିର କେତୁ
ଉଡ଼ିବ ଯେ,- ଅଭାଗିନୀ ନୋହୁ ତାର ହେତୁ ।'

ଏତେ କହି ଘେନିଯାନ୍ତେ ପୁରେ ଅତିଥିରେ
ଉଦିଲା ପ୍ରଥମା ତାରା ପ୍ରଥମ ତିମିରେ ।



# ପଞ୍ଚମ ସର୍ଗ

'ଶୀତଳା ମାଧବୀ ନିଶା ନିମିଷକ ପରି
ପାହାନ୍ତି ତନ୍ଦ୍ରିମା ମୋର ଅକରୁଣେ ହରି
ପାହିଗଲା; ଅସଂବୃତ ଚେତନା ସକଳ
ଜାଗି ଉଠି ଦ୍ରାସିଲେ ମୋ ଅବଳାର ବଳ ।
ମଣିଥିଲି ଶଯ୍ୟା ଯାହା ଶ୍ଲାଘ୍ୟ ମୁଁ ଶୟନେ
ଜାଗ୍ରତେ ତା ଦେଖି ଭୀତି ଉପୁଜିଲା ମନେ;
ନଥିଲା ସାହସ ଆଉ ପାଶେ ହୋଇ ଠିଆ
ନିଶିର ଚରିତ ସ୍ମରି ଦଗ୍ଧ କରେଁ ହିଆ ।
ଆତ୍ମ ପ୍ରବଞ୍ଚନା ତାହା ଜାଣେ ମୁଁ, ତଥାପି,
ଉଲ୍ଲାସ ନିରୋଧେ ହୃଦେ ବେନି କର ଥାପି
ପ୍ରବେଶିଲି ଉପବନେ ଅତି ସଂଗୋପନେ,
(ହା'ରେ ନିର୍ବୋଧ ରମଣୀ), ଚିତ୍ତ ସଂଯମନେ ।

ତହିଁ ସୁଦ୍ଧା ମୋରି କଥା ! ଦିଗରେଖା ପାରେ,
ଜାଣେ ନା ମୁଁ କି ଅଭାବ ପ୍ରବାଳ ଭଣ୍ଡାରେ
ଅମର ଶିଳ୍ପୀର ? ସେହି ଚତୁର ନିପୁଣ,
ମାନବୀର ଏ ଅଧରୁ ରାଗାମ୍ବୁଜ ଚୂର୍ଣ୍ଣ
କେତେବେଳୁଁ ଅପହରି, ପହଣ୍ଡି ମଣ୍ଡଣି-
ଲାଗି ଉଷା କନ୍ୟାର ବା, ଅରୁଣ ସରଣୀ
ସିନ୍ଦୂରିତ କରିଅଛି । ସୁଦୂରେ ଏକାନ୍ତେ
ଅର୍ଦ୍ଧଜାଗରିତ ଅର୍ଦ୍ଧ ସୁପ୍ତ ଧରା ପ୍ରାନ୍ତେ

ଢାଳିଲା ଯେ ସ୍ୱରଧାରା ଭରତିଆ ବଂଶୀ
ସୁପ୍ତ ପିକବଧୂ କର୍ଣ୍ଣେ ପରଭାତ-ଶଂସୀ
ସେ ବି ଯେହ୍ନେ ରୂପାୟିତ ମୋ ଅଧର ରଙ୍ଗେ,
କି କରେଁ ମୁଁ, ଯାଏଁ କାହିଁ -? ଅବସନ୍ନ ଅଙ୍ଗେ
ଅତି ପ୍ରିୟ ପରି ଫୁଲ ପରାଗ ସୁରଭି
ପରଭାତ ବାୟୁ ଏକା ମୋ ଦୁଃଖେ ଦରବି
ଦେଉଥିଲା ବୋଳି ଶୀତସ୍ପର୍ଶ ଉପଚାର
କ୍ଲାନ୍ତି ଅବସାଦରାଶି ପୋଛି ବାରମ୍ବାର ।

ଜିଜ୍ଞାସୁ ଦୃଷ୍ଟିର କଥା ବୁଝିଛି ମୁଁ ତବ,
'କିବା ମୋର ଅବସାଦ ?'- ଏତେ ଅନୁଭବ
କାହିଁ ତବ ସୁନ୍ଦର ହେ ବୁଝିବ ସେ କଥା,
ତଥାପି ଇଛିଛି ଯଦି ଗୁରୁ ମନୋବ୍ୟଥା
ତବ ଆଗେ ଫେଇ ଲଘୁ କରିବି ମୋ ଦୁଃଖ,
ରହିବି ନ କହି କେହ୍ନେ- ମୋ ମୁକ୍ତି ମୟୂଖ
ଘେନି ଆସିଅଛ ରଘୁକୁଳ ମଣି ଯେଣୁ ?
ପତି ଦେବତା ମୋ ଶିରେ ଦିଅ ପଦରେଣୁ
ଯଦି ପାରେଁ ତହିଁ ମୋର ଅପଖ୍ୟାତି କ୍ଷାଳି
ଦୀର୍ଘ ଅନୁବେଦନାର ଅଶ୍ରୁପୁଞ୍ଜ ଢାଳି ।

କୁସୁମ ଚୟନ ଛଳେ ଶୁଣ ରାଜସୁତ
ବୁଲିଲି ଉଦ୍ୟାନ ସାରା, ମାନସ ପ୍ରସୂତ
ଦାରୁଣ ସାଧ୍ୱସେ ଆଉ କୁଟୀରେ ପ୍ରବେଶି
ପାରିଲି ମୁଁ ନାହିଁ ପୁଣି; ଏଣେ ମୁକ୍ତକେଶୀ
ଦିଗଙ୍ଗନା ଲଜ୍ଜାରୁଣା ମୋ ଭାବ ବିଲକ୍ଷି,
କାହିଁ ଯାଏଁ ? ମନୋମୃଗେ ବଶାଧୀନ ରଖି
ନ ପାରି ମୁଁ ଛିଡ଼ା ହେଉଁ ଯୂଥୀ କୁଞ୍ଜ ଲାଗେ,
ସଞ୍ଚର ଅତିଥି ଆସି ଉଭା ହେଲେ ଆଗେ

ରୂପେ ଜିଣି ନବୋଦିତ ଭାନୁ । ମୃଦୁ ଭାଷେ
ଭାଷିଲେ ସେ, 'ରୂପସୀ ଗୋ- ଦୀର୍ଘ ମୋ ପ୍ରବାସେ
ଏଥି ଏକା ଲଭିଲି ମୁଁ ଗୃହ ସୁଖୁଁ ବଳି
ପରମ ସମ୍ଭୋଗ ଯାହା, ତୁମେ ଯଦି କଳି
ପାରନ୍ତ ଗୋ ସୋହାଗିନୀ ! ରାତିକର ଲାଗି
ଆସିଥିଲି ସିନା ତବ ଆତିଥ୍ୟ ମୁଁ ମାଗି,
କିନ୍ତୁ ଘେନିଗଲି ସାଥେ ଜାଣ ସଖୀ କିସ ?
ମର୍ତ୍ତ୍ୟର ଅମର୍ତ୍ତ୍ୟ ଭୂତି,- ଅମର ଅଧୀଶ
ଯାର ପାଶେ ତୁଚ୍ଛ ମଣେ ନିର୍ଜ୍ଜର ଯୌବନା
ଉର୍ବଶୀର ଭ୍ରୂବିଳାସ- ବିଶ୍ୱର କାମନା ।

ମେଲାଣି ଘେନିବା ଆଗୁଁ ଆଉ ଏକ କଥା
ଅଛି ମୋ ପଚାରିବାର, ଅଭୟ ବାରତା
ଲଭିଛି ଯେଣୁ ମୁଁ ତବ ପ୍ରସନ୍ନ ନୟନୁଁ
ସାହସ ମୋ ବଢ଼େ ତନ୍ୱୀ । ଶଙ୍କା ତେଜି ମନୁଁ
କହ ଦେଖି ଜଗତର ରୂପୈଶ୍ୱର୍ଯ୍ୟସାର
ଆଶ୍ରମ କୁସୁମ ଯେଉଁ ନୈବେଦ୍ୟ ସମ୍ଭାର
ଅରପିଲା, ତା ଘେନି କି ନିଶାନ୍ତ ପଥିକ
ଅପରାଧୀ ପଦେ ? ଏହି ପ୍ରଭାତୁଁ ଅଧିକ
କମନୀୟ ମୁଖେ ଯଦି ଅବସାଦ ରେଖେ
ବିଦାୟ ବେଳାର ସ୍ମୃତି-ମୂଳେ କେବେ ଦେଖେଁ
ସେ ଦିନ ସେ ପ୍ରଭାତର ବିଜୟ ବିଭବେ
କେହ୍ନେ ଗୋ ନୋଇଁବି ଶିର କହ ପରାଭବେ ?'

ଚାଟୁଗିରେ ତରଳଇ ପାଷାଣଦେବତା
ରମଣୀ ତ ସୁକୁମାରୀ ମାନସୀ ସର୍ବଥା ।
ସୁଚତୁର ସ୍ତୁତିବାଣୀ ତେଣୁ ମୋ ରୂପର
ରୂପପ୍ରାଣା ରମଣୀର ପୁଷ୍କଳ ଅନ୍ତର
କଲା ଜାଗରିତ । ମୁଁ ଗୋ ଭଜିଲି ସେ ଦଶା

ବିଧୁଭାବେ ବିଧୁମଣି ଭଜେ ଯା । ସହସା
ଗ୍ଲାନି ମୋର ବିଦୂରିଲା, ସ୍ଫୁରିତ ଅଧରେ
ହୃଦୟର ଅଭିଭାବ ଫଳିଲା ସତ୍ୱରେ
ଭାଷା ଘେନି, କହିଲି ମୁଁ, 'ଚଞ୍ଚଳ ସକ୍ରିୟ
କରି ଶାନ୍ତ ଚିତ୍ତ ବୃରି ଅନୁରାଗୀ ପ୍ରିୟ
ବାହୁଡ଼ଇ ନିଜ ପଥେ ଉତ୍ସବ ନ ସରୁଁ,
କାହୁଁ ସେ ଜାଣିବ ତ୍ୟକ୍ତ ତମିସ୍ର ବାସରୁଁ
କି ବେଦନା ଧ୍ୱନି ଉଠେ ।' ନ ଥିଲା ମୋ ଜ୍ଞାନ
କି କହୁଁ କି କହିଲି ମୁଁ । ଈପ୍‌ସିତ ସନ୍ଧାନ
ପାଇଲେ ବା ଯୁବା ମୋର ଏଇ ପ୍ରତିଗିରେ,
ଯୌବନ-ଭାସ୍ୱର ଭାଲ ଦ୍ୱିଗୁଣ କାନ୍ତିରେ
ଦେଖିଲି ଝଳିଲା, ଯେହ୍ନେ ଚାନ୍ଦିନୀ ନିଶିରେ
ତୁଷାର କିରୀଟ ଝଳେ ହିମଗିରି ଶିରେ ।

ମନ୍ଦହାସେ ମକରନ୍ଦ ବରଷି ଅଧରୁ
କହିଲେ ସେ 'ସୁଭଗା ଗୋ ! ଅମର ପଦରୁ
ଅଧିକରେ ଲୋଭନୀୟ ମର୍ତ୍ତ୍ୟ ଅଧିବାସ
ପରିପୂର୍ଣ୍ଣ ପୀରତିର ଉନ୍ମୁଖ ନିର୍ଯ୍ୟାସ
ପ୍ରତି ପଦେ ପରିଗ୍ରହି- ତାରି ପାଶେ ବନ୍ଦୀ
ହେବାରେ ମୋ ଆନନ୍ଦ ଯେ କାହିଁ ତା ଅବଧି !
ଅଖଣ୍ଡ ଏ ଆତ୍ମଦାନ ଅବହେଳି ତବ
ଭାବୁଛ ମୁଁ ରହିପାରେଁ ଦୈନ୍ୟ ଅନୁଭବ
ନ କରି ଏ ଚିତ୍ତେ ତବ ତହୁଁ ବହୁଗୁଣ ?
ମାଗେଁ ତେଣୁ ଏ ବିଦାୟ ବେଳା ଅଶ୍ରୁ ପୂର୍ଣ୍ଣ
କର ନାହିଁ ଆଉ । ଥିଲେ ସମ ଅଭିଳାଷ
ମିଳନ କାମନା କେବେ ନୋହିବ ନିରାଶ ।

❖❖❖❖❖❖❖❖❖❖❖❖❖❖❖❖❖❖❖❖❖❖❖❖

ଅଶନ, ବସନ, ଭୂଷା, ବେଶ ବାସେ କାହିଁ
ନୋହିଲା ମୋ ରୁଚି; ଯୁବ ମୌଳି ପଛେ ଧାଇଁ

ଯାଇଥିଲା ଚିତ୍ତ ଚେତା, କସ୍ତୂରୀ ବିରାଗୀ
ମୃଗ ଯଥା ଘୂରି ବୁଲେ ଫୁଲ ଗନ୍ଧେ ଜାଗି ।
ଉଚ୍ଚାଟ ଚଞ୍ଚଳ ମନୋଭାବ ରାଜି ଦମି
ସଙ୍ଗ ସଙ୍ଗନୀଙ୍କ କଉତୁକ ଅତିକ୍ରମି
ବଢ଼ାଇଲି ଦିବା ପୁରୋଭାଗ ନୀତି କୃତ୍ୟ
ଯଥା ଅନୁଭୂତିହୀନ ପ୍ରବୃତ୍ତିର ଭୃତ୍ୟ ।

ବାସର ଯୌବନେ କିନ୍ତୁ ନିଃସଙ୍ଗ ବିଶ୍ରାମ
ବିଜନ ଯବନୀ-ପଟେ ପାନ୍ଥ -ରୂପ-ଦାମ
ଲେଖି, ଅନିବାର ମୁଗ୍ଧ ମୋ ନେତ୍ର ପୁରତଃ
ଦେଖାଇଲା ସଖୀନାଟ, ଚନ୍ଦ୍ରବିମ୍ବ ଶତ
ଉକୁଟାଇ ଲୀଳାୟିତ ନଦୀ ଜଳେ ଅବା
କଷିଲା ମୋ ଧୃତି; ଏଣେ ଅନନ୍ତ ଗରଭା
ବିଜନତା ଭେଦି ରଣି ଉଠିଲା ମୋ କର୍ଣ୍ଣେ
ଯେସନେ କା ମୂକ ବାଣୀ,- ଯାର ପ୍ରତି ବର୍ଣ୍ଣେ
ରହିଥିଲା ସମାଶ୍ଚିତ ପଥିକ ବନ୍ଧୁର
ପୀୟୂଷ ସମ୍ମିତ ଭାଷା ପ୍ରୀତି ଭରପୂର ।
ମାଧ୍ୟଦିନୀ ବିଜନତା; ଏକା ଏକା ଭୟ
ଲାଗେ ମନେ, ତଥାପି ସେ ନିଭୃତ ନିଳୟ
ପ୍ରୀତି ଅନୁପ୍ରାଣେ ସ୍ମୃତି-ବେଦନା-ମଦିର
ବ୍ୟଥା ପ୍ରଲୋଭନ ଦିଏ ଛନ୍ନ ମୋ ମତିର ।

ଭାବୁଥାଏଁ ମନେ ମନେ, - ଅକୁହା ଆବେଗ ଗୋ
କିପରି ବୁଝିଲେ ମୋର, ପଡଚାରୀ ସେ ଗୋ ?
ଲଜ୍ଜାମାନ ତେଜି ମୁଁ ବା ଏଡ଼େ ଅନାୟାସେ
କେହ୍ନେ ଧରା ଦେଲି ପ୍ରିୟଭାଷୀ ପାନ୍ଥ ପାଶେ
ଦୋଷାଦୋଷ ନ ବିଚାରି ? ନିଶି କଥା ମାନ
ପ୍ରତ୍ୟକ୍ଷେ ଘଟଇ ପୁଣି ବୋଲି ଅନୁମାନ
କରୁଥାଏଁ, ସେ ଚରିତ ଯୁବରାଜ ! ଶୁଣ,
କହିଲେ କହିବ ଏ ମୋ ଅକ୍ଷମ୍ୟ ଦୁର୍ଗୁଣ;

କିନ୍ତୁ ଚିର ଦୁର୍ବଳତା ଏଇ ଯେ ନାରୀର
ସେଇ ଘେନି କଲ୍ୟାଣୀ ସେ, କରୁଣାର ନୀର
ଢ଼ାଳି ଜାଣେ ନେତ୍ରୁଁ- ଯାହା ଯୋଗେ ନରସୃଷ୍ଟି
କଠୋର ଜୀବନ ଯୁଦ୍ଧେ ଲଭେ ସୁଧା ବୃଷ୍ଟି ।

ଥାଉ ସେ କଥା । ମୁଁ ଭାବୁଥିଲି ମନେ ମନେ
କର୍ମହୀନ ମଧ୍ୟାହ୍ନର ବିଜନ ଶୟନେ,-
କାହିଁକି ମୁଁ ଲଭୁଥିଲି ଆନନ୍ଦ ବିପୁଳ
ଅତିଥି ସତ୍କାରେ କାଲି; ହୃଦୟ ଆକୁଳ
ହୋଇ ଉଠୁଥିଲା ମୋର କାଳେ ବା କେଉଁଠି
ଅଲକ୍ଷ୍ୟେ ମୋ ରହିଯିବ କଣିକାଏ ତ୍ରୁଟି ।
ପଡୁଥିଲା ମନେ,- ଚିର ଅନୁଗତ ପରି
ତୃଷ୍ଣା ଢ଼ଳ ଢ଼ଳ ଦୃଷ୍ଟି କେସନେ ତାଙ୍କରି
ପରିଚର୍ଯ୍ୟା ବ୍ୟସ୍ତ ମୋର ଗତାଗତ ଲକ୍ଷି
ଅନୁସରି ବୁଲୁଥିଲା, ବିବ୍ରତେ ଅଟକି
ଯାଉଥିଲି କେତେ କେତେ ବେଳେ ମୁଁ ତଥାପି
ସପ୍ରଶଂସ ଚିତ୍ତର ମୋ ଭାବରାଶି ଚାପି
ଥାଏଁ ଲାଗି କର୍ତ୍ତବ୍ୟେ ମୋ । ସେହି ଅବଶେଷେ
ଆଳାପିଲେ, 'ତନ୍ୱୀ, ଆମ୍ଭ ପରନିର୍ବିଶେଷେ,
ନାରୀ ବିନା କେ କରିବ ନରର ଏ ଚର୍ଯ୍ୟା ?
କର୍ମକ୍ଲାନ୍ତ ପୁରୁଷର ନୈଶ ଫୁଲ ଶଯ୍ୟା
ଏକା ଜାଣେ ନାରୀ ରଚି; ତଥାପି ଇଚ୍ଛିତେ ।
ପୁରୁଷ ମୁଁ, ରହିଯାଏ ସଂଶୟ ମୋ ଚିତ୍ତେ,
ପ୍ରାଣଭରା ଶୁଶ୍ରୂଷା ତ ଦିଅ ଅଯାଚିତେ
ଅଜଣାରେ, କିନ୍ତୁ ତବ ହୃଦୟେ କିଛିତେ
ଆଶଙ୍କାର ଛିଟା ଏକ ରହିଗଲା ପରି
ମଣେ ମୁହିଁ, ରୂପସୀ ଗୋ । କହ ସତ କରି-
ତାପସୀର ପୁରେ ମୁହିଁ ଏକାନ୍ତ ଆତିଥ୍ୟ,
ପରିଗ୍ରହ ଲଂଘି ଯାଇ ନାହିଁ ତ ଔଚିତ୍ୟ ।'

ଏତେ ସଉଜନ୍ୟ ? ହାୟ, ଦୁର୍ବଳତା ରୋଧ୍
କହ କେ ପାରିବ ? ମୋରେ ଅଳପେ ପ୍ରବୋଧ୍
ପ୍ରଭାବିଲା ଛନ୍ଦ ତାର; ମୁଖ ଟୋକି ମୁଁ ଗୋ,
ଦେଖିଲି ତନ୍ମଧ୍ୟେ ସେଇ ରମ୍ୟ ନେତ୍ରଯୁଗ
ଝଳି ଉଠେ କାମନାର ସ୍ୱର୍ଣ୍ଣ ଘନ ସମ
ଗଭୀର ଇଙ୍ଗିତେ ଦୃଷ୍ଟି ଅନ୍ଧ କରି ମମ ।
ସେ ଆଲୋକେ ଗଲା ଆଖି ତାରା ମୋ ଆଲୋକି ;
ନିସ୍ପନ୍ଦେ ମୁଁ ହେଲି ଉଭା, ସେ ମୁଖ ବିଲୋକି,
ଦେଖିଲି ସେ ମୁଖ ନୁହେଁ ମର୍ତ୍ତ୍ୟ ମାନବର,
ପ୍ରୀତିର ଅଗାଧ ସିନ୍ଧୁ ଚିର ବିଭାସ୍ୱର ।

କହିଲି, 'ଅତିଥି ପ୍ରିୟ ! ବିରହିଣୀ ପ୍ରାଣେ
କିସ ଅଛି କପଟର ? ତବ ସନ୍ନିଧାନେ,
ଆଜି ମୁଁ ଲଭଇଁ ପ୍ରିୟ ବିରହାନ୍ତ ସୁଖ-
ଗୁପତ ବେଦନା ଯାହା ଏତେ ଦିନ ମୂକ
ହୋଇ ରହିଥିଲା ମୋର ମର୍ମ ତଳ ଦେଶେ
ସେ ହୁଏ ସବାକ ହାୟ ଅନନ୍ତ ଆବେଶେ ।
ଏହି ଲାଜେ ମରମ ମୋ ମରିବାର ଆଗେ
ଦେଖିଲି ବନ୍ଦିନୀ ମୁହିଁ ତାଙ୍କ ବାହୁଭାଗେ-

ବଣା ହେଲା ଭାବନାର ଖିଅ ମୋ ଏଠାବେ
କାନ୍ଦିଲି ମୁଁ ଅନର୍ଗଳ, ନିଃସଙ୍ଗ ମୋ ଭାବେ
ଶିଶୁର ମୋ ପ୍ରାଣେ ଅବା ଲାଗିଲା ଆଘାତ
ଆସି ହେଲା ମୋ କୋଳେ ସେ, କ୍ରୀଡ଼ାସଙ୍ଗୀବ୍ରାତ
ପରିହରି; କେଜାଣି ବା ଏ ମୋ ରୀତି ଦେଖି
ବୁଝିଲା ସେ କିସ କିବା ନାହିଁ, ମୁଖ ଟେକି
ଅନାଇଁ ନ ପାରି ମୋରେ, ରଖି ବକ୍ଷେ ମୁଖ
କାନ୍ଦିଲା ଅବୋଧ; ମୋର ସତ୍ତା ଜାଗରୂକ

ହେଉଁ ବହୁକ୍ଷଣେ, ଶିଶୁସୁତ ଘେନି କୋଳେ
ପ୍ରବେଶିଲି ଉପବନେ; ସେଥି ବି ନିରୋଳେ
ଅଜଣା ଆଶଙ୍କା ମୋତେ କଲାକ ବିବ୍ରତ
ଆଶ୍ୱସେଁ କି ବୋଲି ପୁତ୍ରେ ମୁଁ ଯେ ଅନାୟତ୍ତ ।

ସଜ ସୌରଭର ଏକ ବିପୁଳ ପ୍ରବାହ
ଅତିଥିର ସେଇ ଶ୍ୱାସ ପରି ଅଙ୍ଗ ଦାହ
ବଢ଼ାଇ ମୋ ଦେଇଗଲା । ଚୁମଟିଏ ଆଙ୍କି
ଶିଶୁର ସରଳ ମୁଖେ ମନୋବ୍ୟଥା ଢ଼ାଙ୍କି
ପାରିଲି ମାତର, ଯଥା କୁଶ ଖିଏ ଦେଇ
ଲୋଡି ବୁଲେ ଆଶ୍ରା ଜଳେ ମଜ୍ଜମାନ ଦେହୀ ।

***************************

ଫୁଲ ସଞ୍ଜ, ବସନ୍ତର ଉଦ୍ଦାମ ହିଲ୍ଲୋଳ
ଜୀବନ୍ତ ଯେସନ କଳ ଗୁଞ୍ଜନ କଲ୍ଲୋଳ,
ଉଲ୍ଲାସ-ବହୁଳ ଅବା ଉତ୍ସବ କାମନା
ନିଖିଳ ହିଆର ! ରତ୍ନ-ଦ୍ୱୀପେ ବନ୍ଦାପନା
କରୁଥିଲେ ଅମରୀଏ ବାସନ୍ତୀ ସନ୍ଧ୍ୟାର
ଉଦ୍‌ବିଗ୍ନାର ପ୍ରୀତି-ଦୂତୀ ସେ ସିନା ! ଅନ୍ଧାର
ଆସିଲା ଘନାଇଁ କ୍ରମେ । କୁଳ ମାନ ଶିରେ
ନିର୍ମମେ ପ୍ରହାରି ପାଦ, ସେ କୃଷ୍ଣ ତିମିରେ
ଭାଗୀରଥୀ- ତୀରେ ପଥ ବରି ନେଲି ବାଛି
ତାରକାର କ୍ଷୀଣାଲୋକେ; କୁଶାଙ୍କୁର ଲାଛି
ଚରଣୁଁ ମୋ ବହିଗଲା ରକ୍ତଧାର କେତେ,
ସବଳା ସେଦିନ ମୁହିଁ, ଦୃଷ୍ଟି ମୋର ସେଥେ
ନଥିଲା । ମୋ ଆଗମନ ପ୍ରତୀକ୍ଷା ଉତ୍ସୁକ
ବିଦେଶୀର ସ୍ୱର୍ଣତରୀ ଯେହ୍ନେ ଜାଗରୂକ
ରହିଥିଲା ଅନ୍ଧକାରେ, ମୋର ପ୍ରୀତି ସାଥୀ
କର ଧରି ଘେନିଯାନ୍ତେ ଦୀପମାଳେ ଭାତି
ଧୀର ସ୍ରୋତା ଜାହ୍ନବୀର ନିସ୍ତରଙ୍ଗ ବକ୍ଷେ

ଚଳିଲା ଉଜାଣି । ମମ ନିରୂପିତ କକ୍ଷେ
ଶତ ଇନ୍ଦ୍ରନୀଳମଣି ଆଲୋକେ ଉଜ୍ଜ୍ୱଳ
ଧିକାରିଲା ନଭୋଦେଶେ ତାରକା ପଟଳ ।
ନିମ୍ନେ ନୀରେ ତରୀସୃଷ୍ଟି ବୀଚୀ ମାଳେ ମାଳେ
ବିମ୍ବିତ ଆଲୋକ ପୁଞ୍ଜେ ମଣିକରଜାଳେ
ଗଳିତ ସୁବର୍ଣ୍ଣ କାନ୍ତି ସ୍ରୋତର ଭରମ
ଆସୁଥିଲା, ମୋ ପ୍ରାଣର ପ୍ରୀତି-ତୃଷ୍ଣା ସମ ।

ପ୍ରୀତି କାଙ୍ଗାଳିନୀ ମୁହିଁ ପଦପ୍ରାସ ଯାହା
ଲଭିଥିଲି ପଥେ ଦୁଇ ଦଣ୍ଡେ ସବୁ ତାହା
ହରି ନେଲା ନଦୀବାୟୁ ଶୀକରଶୀତଳ;
ତଥାପି ବିଦେଶୀ ବନ୍ଧୁ ମୋ ପାଇଁ ଚଞ୍ଚଳ
ହୋଇ ଉଠି ନିବେଦିଲେ ଖେଦ ଗଦଗଦେ
'ହେ ସୁନ୍ଦରୀ ! ରମଣୀର ଅମୂଲ୍ୟ ସମ୍ପଦେ
ଲୁଣ୍ଠି ଶେଷେ କଲି ତାକୁ ବାସ ବିରାଗିଣୀ
କ୍ଷମିଛ ତ ଅପରାଧ ଏ ମୋର ଭାବିନୀ ?'
କହିଲି ମୁଁ, 'ସୁନ୍ଦର ! ମୋ ଅଭିମାନେ ଲଜ୍ଜା
ଦିଅ ଯେତେ ପାର, ଆଉ ପଉରୁଷ ଧ୍ୱଜା
ଉଡାଅ ସେ ଜୟଗର୍ବେ, ନାହିଁ ତିଳେ କ୍ଷତି,
ସତ କହେଁ କିନ୍ତୁ, ପ୍ରିୟ, ବେଦନା ବିପତ୍ତି
ଅନୁଭବୀ ହିଆ ପାଶେ ମାନେ ପରାଭବ,
ତହିଁ କିସ ପ୍ରତିଦାନ ନାରୀର ସମ୍ଭବ ?'

ସବୁଁ ନ ସରୁଣୁଁ ମୋର ମୁଖୁଁ ଏ ଉକତି
ନିବିଡ଼ ଆଶ୍ଳେଷେ ତାଙ୍କ ଅନ୍ତର ପୀରତି
ଆଙ୍କି ଦେଲେ ସେ ମୋ ମୁଖେ, ମୁକ୍ତି ଅଭିଳାଷ
ସଫଳିଲା ଯେହ୍ନେ ମୋର ଏ ବନ୍ଧନ ପାଶ ।



# ଷଷ୍ଠ ସର୍ଗ

"କାମନାର କଳାପୁରୀ, ଆବେଶର ଧାମ
ଚିର ସ୍ୱପନର ଭ୍ରାନ୍ତି; ଭୋଗର ବିରାମ
ଥିଲା ପରି ତହିଁ ମୋର ହେଲା ନାହିଁ ପ୍ରତେ,
ସବୁ ମାୟା, ଯେହ୍ନେ କେଉଁ ମାୟାବୀର ହସ୍ତେ
ରଚିତ ଆଲୋକ ପୁରୀ, କଳା କଳ୍ପନାର
ସେଇ ଅବା ସୀମା ରେଖା, ପରପାରେ ଯାର
ସୀମାହୀନ ମସୀମୟ ସିନ୍ଧୁ ! ସେଇ ପୁରେ
ଢ଼ାଳି ଯାଏ ଅଂଶୁମାଳୀ ସ୍ନିଗ୍ଧ ପ୍ରଭା ପୂରେ
ଦିବା ଭରି ଯେ କିରଣ-ମାଳା ଯେସନ ସେ
ଶାରଦ ଚନ୍ଦ୍ର ମଣ୍ଡଳୁ କୌମୁଦୀ ବରଷେ ।
ଆଉ ସେ ଚନ୍ଦ୍ରିକା, ସେ ତ ରୂପ ଦେବତାର

ବିଶ୍ୱ-ହୃଦୟ ଆବେଶୀ ଅନୁରାଗ ଧାର ।
ସଦା ତହିଁ ରାଶି ରାଶି ସୌରଭବହୁଳ
ଫୁଲ ଫୁଟେ ମୂଲ ଯାର ଭୁବନେ ଅତୁଳ;
ମନୋଭାବ ମନୋଗତି ରଥୁଁ ତାର ଫେଇ
ମକର ଲାଞ୍ଛିତ ବାନା, ଏ କୁସୁମ ଦେଇ
ଚାଳଇ ତା ଅଭିଯାନ ଏଥି । ଅନାୟାସେ
ଆପଣାରେ ଭୁଲିଲି ମୁଁ ଆପଣା ସକାଶେ ।
ଅଖଣ୍ଡ ଭୋଗ ବିଳାସେ ମଜି ଅହରହ
ଭୁଲିଲି ମୁଁ ଯୋଗବାସୀ ଦୟିତ ବିରହ,

ଭୁଲିଲି ଅଝଟ ପଣ ତନୟମଣିର
ନିରାମୟ ବଇରାଗ୍ୟ ମୁନି ରମଣୀର,
ଭୁଲିଲି ନିଖିଳ ବିଶ୍ୱେ; ବିସ୍ମୃତି ଗରଭେ
ରହିଥିଲା ମୁଖ ଟେକି କ୍ଳାନ୍ତିହୀନ ଦମ୍ଭେ
କେବଳ ମୋ ତାରୁଣ୍ୟର ଦୀପ୍ତ ପ୍ରେମ ଶିଖା
ଦିଗଭ୍ରାନ୍ତ ପଥିକର ଦିଗ ନିରୂପିକା
ମେରୁ ତାରା ସମ । ଦିନେ ନଭଃ ସାରା ଛାଇ
ତାରକିତ ଜ୍ୟୋସ୍ନାଜାଲେ ବିତାନ ମେଲାଇ
ଆସିଥିଲା ପୌର୍ଣ୍ଣମାସୀ, ଛାୟାଲୋକପୁଞ୍ଜେ
ସୁବଳିତ ଉଦ୍ୟାନର ଲତା କୁଞ୍ଜେ କୁଞ୍ଜେ
ଲୁଚକାଳି ଖେଳ ଶେଷେ କ୍ଳାନ୍ତ ମୋତେ ଲକ୍ଷି
କହିଲେ ରସଶେଖର, 'ଦେଖୁଛ ତ ସଖି !
ସୁନ୍ଦର ଏ ନିଶି ? ମଧୁଚନ୍ଦ୍ରିକା ପାଇନେ
ଆସ ସଖି ! ରଚିବା ଏ ନିକୁଞ୍ଜ ସଦନେ
ପ୍ରଥମ ଜ୍ୟୋଛନା ରାସ ! କାଲି କିଏ ଜାଣେ
ନିଶିର ଏ ମଧୁରିମା ଏଇ ପରମାଣେ
ଥିବ କି ନଥିବ ।' ମୁହିଁ ଚକିତ ଚମକେ
ଭୁଜେ ଭୁଜ ଛନ୍ଦି ତାଙ୍କ ମୁଖେ ଅପଲକେ
ଚାହିଁ ଦେଖିଲି ତା ସୌମ୍ୟ, ପ୍ରେମ ଢ଼ଳ ଢ଼ଳ,
ସେ ନୈଶ ଜୋଛନା ପରି ଗଭୀର ଅତଳ ।

ସୁଖିନୀ ମୁଁ ଆଶାତୀତ । ଏ ମୋ ସୁଖ ସ୍ତୂପ
ଆନନ୍ଦ-ବିଷାଦେ ଗଢ଼ା, ଜ୍ୟୋସ୍ନା ଛାୟା ରୂପ ।
ଆତ୍ମସୁଖ ପରିତୋଷ ଲଭିଲି ଯେତିକି
କୃପା-ଅଧିକାରୀ ବୋଲି ମଣିଲି ତେତିକି
ସେମାନଙ୍କୁ ଯେଉଁମାନେ ବଞ୍ଚିତ, ବାରିତ
ସୁଖ ଭୋଗୁଁ । ପୁଣି ଚିର ଆଶାୟୀ ମୋ ଚିତ୍ତ
ବଞ୍ଚିବାର ଉନ୍ମାଦନେ ଗଣୁଥିଲା ଶଙ୍କା-
ନଶ୍ୱର ବିଶ୍ୱ ଯେ ହାୟ ପାଣିର ଫୋଟକା ।

ସୁଖର ସନ୍ଧାନୀ ସେ ଗୋ ଭୋଗ ଆହରଣ
କରିବାରେ ଜାଣନ୍ତି ସେ କାହିଁରୁ କେସନ।
ଅଖଣ୍ଡ ତାଙ୍କର ଏହି ଭୋଗ ଅଧିକାର
ମୁଁ ହେଲି ସମଭାଗିନୀ। ମୁକ୍ତ ଶ୍ୟାମାଗାରେ *
ନିର୍ବିଘ୍ନ ସେ ପ୍ରୀତି ଯାତ୍ରା, ଅନୁକୂଳା ରାତ୍ରି
ବଢ଼ାଇଲା ମୂଲ୍ୟ ତାର; ନିରଞ୍ଜନ ଯାତ୍ରୀ
ବେନି ଆମେ, ଏକଇର ସୁଖେ ଆରେକର
ବଢୁଥିଲା ଗଉରବ, ସେ ଯେହ୍ନେ ସୁନ୍ଦର
ସ୍ୱପ୍ନର ପ୍ଲାବନ। ଭାସି ଆସି ବହୁଦୂରୁ
ଏକଇ ଭେଳାରେ ଉଠି ଅନ୍ଧକାର ପୁରୁଁ
ଚାଲିଛୁଁ ଅନନ୍ତାଲୋକ ବେନିଏ ଅନ୍ୱେଷି
ଏକ ଆରେକର ପ୍ରାଣେ ପରାଣ ନିବେଶି।
ଉଭୟେ ସ୍ୱପନ ସୃଷ୍ଟି, ଉଭୟେ ଉଦ୍‌ବୁଦ୍ଧ
ମହାନିଶା ଯାପିବାର ଦ୍ୱି-ଧାର ଆୟୁଧ।
ଉତ୍ସବ ଜାଗର କ୍ଳାନ୍ତି ଅଙ୍ଗେ ଯାଉଁ ଘାରି
ପାହାନ୍ତିଆ ଶୀତବାୟୁ ଫୁଲରାଗ ଭାରୀ
ମୋ ନୟନେ, ପକ୍ଷ୍ମେ ଦେଇ ତନ୍ଦ୍ରା ଅବଲେହ
ଲୋଟାଇଲା ପ୍ରିୟଅଙ୍ଗେ ଅଳସ ମୋ ଦେହ।
ପୁଲକ ରଭସ ଭୋଳା କେତେ ବେଳେ ମୁଁ ତ
ନିଦ୍ରାର କାଉଁରୀ ସ୍ପର୍ଶେ ହେଲି ଅଭିଭୂତ।

ସ୍ନିଗ୍ଧ ଶ୍ୟାମ ଲତାପତ୍ରି କରି ସ୍ୱିପ୍ତତର
ବାଳ ଭାନୁରଶ୍ମି ଯେବେ କୁଞ୍ଜ ଅଭ୍ୟନ୍ତର
ପାଉଁଛିଲା ପର୍ଣ୍ଣ ଫାଙ୍କେ ଫାଙ୍କେ ପରବେଶି,
ଭାଜିଲା ମୋ ସୁଖନିଦ୍ରା, ଅସଂବୃତବେଶୀ
ଆପଣାରେ ମୁକୁଳାଇ ପ୍ରିୟ ଭୁଜବନ୍ଧୁଁ
ନିବାରୁଁ ମୋ ଲଜ୍ଜା, ନିଦ୍ରା ପରିହରି ବନ୍ଧୁ

*ଶ୍ୟାମାଗର : Green House

ଉଠିଲେ ଅଳପେ ହସି ଏ ମୋ ରୀତି ଦେଖି,
କପଟ କ୍ରୋଧେ ମୁଁ ତହୁଁ କହିଛି, 'ଗୋ ଏ କି
ଆଚରଣ ତବ ପ୍ରିୟ ? ଆଉଁ ଆଉଁ ନିଶି
ଉଠାଇଲ ନାହିଁ ମୋତେ, ଇଚ୍ଛାଭରେ ମିଶି,
ଯାଏଁ ମୁଁ ଯେ ଭୂମିତଳେ, ବେଳ ହେଲା ଆସି ।'
ଉତ୍ତରେ ଭାଷିଲେ ସେହୁ; 'ଶୁଣ ମରକାଶୀ
ଏସନ ନିରବଚ୍ଛିନ୍ନ ସମ୍ଭୋଗ ପ୍ରେମର
ନୁହନ୍ତା ସମ୍ଭବ ବୋଲି ମୁନି ଆଶ୍ରମର
ନିଃଶଙ୍କ ଏ ଅଭିସାର ରହିଛି ଏ ଦେଶେ,
କହ ସଖୀ ଭୋଗିବାର ତହିଁ ଯଦି ଲେଶେ-
ମାତ୍ର ରହିଯାଏ ବାକୀ, ମାନେ କି କା' ମନ
ସହିବାରେ ଏତେ ତ୍ୟାଗ, - ଯଥାର୍ଥ ପୂରଣ
ନୋହିଲେ ତା ସ୍ଥାନ ? ଏଣୁ ଏ ପ୍ରମୋଦ ମଧ୍ୟେ
ଅକ୍ଳାନ୍ତ ତରଙ୍ଗରାଜି ଲୀଳାଶୀଳ ଛନ୍ଦେ
ଉଠଇ ଯେ ମନ ଜାଣି ତହିଁ ପ୍ରାଣ ଭରି
ଆବଗାହ ନେବା ତୃପ୍ତି ଆଗୁଁ ଗୋ ସୁନ୍ଦରୀ ।'

ଅଳସ ଦିନାନ୍ତେ ଦିନେ ପ୍ରସାଧନ ସାରି
କର୍ମାନ୍ତରେ ଯା'ନ୍ତେ ମୋର ବେଶ-ପରିଚାରୀ
ଉଭା ହେଲି ଯାଇ ଯହିଁ ମାଣିକ୍ୟ ମୁକୁର
ସ୍ଫଟିକର ସ୍ୱଚ୍ଛତମ ଶିରୀ କରି ଚୂର
ଖୋଦିତ ସୁଶୁଭ୍ର ଶଙ୍ଖମର୍ମର ଉସଙ୍ଗେ;
ନିର୍ମଳ ଗରଭେ ତା'ର ପରିପାଟୀ ଭଙ୍ଗେ
ପ୍ରସାଧିତ ରୂପରାଶି ସଗର୍ବେ ବିଭାତି
ବିମୋହିଲା ରମଣୀର ଏ ଚିତ୍ତ, ମୋ ସାଥୀ
ସହଜେ ତରୁଣ ସେତ ରୂପର ପୂଜକ ।

ରୂପବତୀ ଅଭିମାନ ମୋର ଯା କାଳକ
ଗୋପନେ ଅସ୍ଫୁଟ ଥିଲା ସେ ଦିନ ତା ଦୀପ୍ତ

ହୋଇ ଉଠି ଆଶ୍ରମର ତ୍ୟାଗ ଧର୍ମେ କ୍ଷିପ୍ର
କରି ଦେଇଗଲା ମୋତେ । କେତେବେଳୁ ଆସି
ଆନ ଏକ ପରିଚାରୀ ମୋ ଏ ଭାବ ରାଶି
କଳୁଥିଲା ପାଶେ ଥାଇ ମୁକୁର ଫଳକୁଁ,
କହିଲା, 'ଏ ପରା ରୂପ ଏକା ଏ ପୁରକୁ
ସାଜେ ସିନା । ଆହା । ସତେ ଏହି ପରା ମୋତି
ଅଯତନେ ବନଭୂଇଁ ମାଟିତଳେ ପୋତି
ରହିଥାନ୍ତା ଚିରଦିନ । ଅଧିକେ ଉଲ୍ଲସି
କହିଲି ମୋ ମନେ ମୁହିଁ, 'ସତ କଥା ଋଷି
କି କରିବେ ଏତେ ରୂପେ ? ତାଙ୍କ କାରବାର
ରୂପାତୀତ ପ୍ରୀତିଭୟେ ବିଧୁର ବାଳାର
ବିଶାଳ ମନୋରଥ ଯେ ବ୍ୟୋମଦେଶେ ଉଡି
ନୀଳିମା କୋହରେ କାହିଁ ପଥ ଯାଏ ବୁଡ଼ି-
ଏ ଖବର ମୋର ସେ ଗୋ ରଖିବେ କି ଲାଗି,
ଯୋଗୀ ସେ ବୁଲନ୍ତି ଆନପଥେ ଭିକ୍ଷା ମାଗି ।'

ଏରୂପେ ସେ ପୁରେ ମୋର ରଜନୀ ବାସର
କଟିଯାଏ ଅଲକ୍ଷିତେ ପ୍ରମୋଦ ନାବର-
ପ୍ରଣୟର ଉତ୍ତରୀୟ ଯହିଁ ପାଇ ରୂପେ
ଉଡୁଥାଏ ଫରହର ଅନନ୍ତ ବିଦ୍ରୂପେ
ମୁମୁକ୍ଷୁର ବଇରାଗ୍ୟ ପାଦତଳେ ଦଳି ।
ଯଉବନେ ଏତେ ସୁଖ ପାରିଲି ମୁଁ କଳି
ଏ ଯେହ୍ନେ ପ୍ରଥମ କରି । ଆଦି ପରିଚୟ
ସେ ଅବା ନାରୀ ନରର । ଅନନ୍ତ ବିଜୟ
ସର୍ବ କାମନାର ଏଇ ଜୀବନ-ପ୍ରବାହେ,
ଖାଲି ଯେହ୍ନେ ପୀରତିର ଅଚ୍ଛିନ୍ନ ପର୍ଯ୍ୟାୟେ
ତରୁଣ ଓ ତରୁଣୀର ଅନ୍ୟୋନ୍ୟ କାମନା
ପାଟଛତି ତୋଳି କଲା ବିଜୟ ଘୋଷଣା ।

ଏକାନ୍ତେ ଦିନେ ମୋ ପ୍ରିୟ ଭାଷିଲେ ବିନୟେ,
'ପ୍ରୀତି-ପ୍ରବଣା ଗୋ ଦେଖି କହ ତ ନିର୍ଭୟେ,
ବୈରାଗ୍ୟ ଦୀକ୍ଷିତ ତବ ଆଶ୍ରମ ଧରମ,
ଆଉ ଏ ଅମର କୁଞ୍ଜେ ସମ୍ଭୋଗ ବିଭ୍ରମ,-
ଏ ବେନିର ମଧ୍ୟେ କିସ ଦେଖିଲ ପ୍ରଭେଦ ?
କ୍ଷଣେ ଭାବି କହିଲି ମୁଁ, 'କିପାଇଁ ଗୋ ଖେଦ
ଜଗାଅ ମୋ ପ୍ରାଣେ ଗତ କାହାଣୀ ଶୁଣାଇ,
ଛାଡ଼ିଛି ସେ ପୁର ମୁଁ ତ ଖାଲି ଭୋଗ ପାଇଁ ।
କି କହିଲ ପ୍ରିୟ ? ମୋର ଜାଗଇ ସନ୍ଦେହ,
ଅମରର ଅଧିଷ୍ଠାନ ? ସତେ ମର ଦେହ
ବହି ମୁଁ ଆସିଛି ବାହି ଅଗମ୍ୟ ଏ ପଥେ
ଯା'ର ପ୍ରାପ୍ତି ପାଇଁ ନର ସନ୍ତାନେ ମରତେ
ଆଚରନ୍ତି ତପ ଧରି ଯୁଗଯୁଗାନ୍ତର ?
ନୁହଇ ଛଳନା ଏ ତ ? ହେ ଚିର ସୁନ୍ଦର !
କିଏ ତେବେ ତୁମେ କହ କେବଣ ମାୟାବୀ
ମୁନିରମଣୀର ଚିତ୍ତ ଅନୁରାଗ-ସ୍ରାବୀ
ପ୍ରଲୋଭନେ କଲ ବଶ ? ପ୍ରବାଳ ମୌକ୍ତିକ
ପଣ୍ୟ ପୁଞ୍ଜେ ସାଜି ତରୀ ଆସିଲ ବଣିକ
ମୋ ପୁରେ ଅତିଥିବେଶୀ ? ଅଜ୍ଞାତେ ମୁହିଁ ଯେ,
ଅନାୟାସେ ତବ ପାଶେ ଧରା ଦେଲି ନିଜେ ।'

ଆଶ୍ଳେଷ ମଧୁର କଣ୍ଠେ କହିଲେ ସେ, 'ପ୍ରିୟେ,
ପୂର୍ଣ୍ଣିମା ନିଶିର ଶଶୀ ଅଶ୍ରାନ୍ତ ଅମୀୟେ
ଜୁଆର ସଞ୍ଚାରେ ଯଦି ବାରିଧିର ଅଙ୍କେ,
ସେ କି ଦୋଷ ବାରିଧିର ? ମର୍ତ୍ତ୍ୟପୁର ପଙ୍କେ
ଫୁଟିଥିଲ ତୁମେ ଚାରୁ ସୁବର୍ଣ୍ଣ ସାରସ
ଅମର୍ତ୍ତ୍ୟ ବିଭବେ ଯାର ରୂପାଲୋକ ବଶ
ହେଲେ ଆପେ ଦେବରାଜ । ଅନୁଶୋଚନା କି ?
ପ୍ରେମର ସୌରଭ ସଖୀ, ବାସାଉଲେ ଡାକି

କେ ରଖିଛି କହ ଦେଖି ? ବନେ ପର୍ଣ୍ଣ-ବାସେ
ଗୋପନେ ମାଳତୀ ଫୁଟେ ସହସ୍ର ପ୍ରୟାସେ
ପାରେ କି ସେ ଧରି ରଖି ସଉରଭ ରାଶି ?
ଅଳି ପାଶେ ଅର୍ପି ଦିଏ ନୋହୁଁ ତାହା ବାସି ।
ପ୍ରେମର ଏ ରୀତି ସଖି । ପ୍ରୀତିର ତଉଲେ
ନାହିଁ ଭେଦାଭେଦ ଭାବ, ଅମରୀର ତୁଲେ
ସମାନ ଆସନ ଲଭେ ମର୍ତ୍ତ୍ୟର ମାନବୀ,
ପ୍ରଶସ୍ତି ଯାହାର ଗାଏ ଶତମୁଖେ କବି ।'

ପୁଲକ ବିସ୍ମୟେ ମମ ବିକାର ନିଚୟ
ଆତ୍ମ ସମର୍ଥନେ ତାଙ୍କ ଭଜିଲା ବିଳୟ ।
କ୍ଷଣିକର ନୀରବତା ପରକ୍ଷଣେ ଭାଙ୍ଗି
କହିଲି, 'ଜାଣେ ମୁଁ ପ୍ରିୟ ପ୍ରୀତି ଅନୁରାଗୀ
ତୁମେ ଏଇ ଚକୋରୀକି ଶଶୀ ବିମ୍ବୁଁ ସୁଧା
ଚଖାଇ ବଢ଼ାଇଛ ତା' ତୃପ୍ତି ହୀନ କ୍ଷୁଧା ।
ଅନନ୍ତ ଯୌବନେ ହେରି ଅନନ୍ତ ପୂର୍ଣ୍ଣିମା
ବଧୂ ସେ ଭୁଲିଛି ହେଲେ କୁଳବଧୂ ସୀମା ।
କିନ୍ତୁ ତୁମେ ସୁରପତି ? ଅତଳ ପରଶ
ମାନସରୋବରେ ତବ ସୁବର୍ଣ୍ଣ ସାରସ
ଫୁଟଇ ଅଜସ୍ର ଚିରପ୍ରଭ ମନୋରମ
ଆପଣା ସୌରଭେ ମୁଗ୍ଧା ତଡ଼ିଲ୍ଲତା ସମ
ଛନ୍ଦିଛି ମୃଣାଳମାଳା ଚରଣାନ୍ତ ଯାଏ
ଚିର ଯଉବନବାହୀ ମଳୟ ପ୍ରବାହେ
ସଦା ଚଞ୍ଚଳ ବିଲୋଳ ? ତୁମେ ବଜ୍ରପାଣି ?
ଲାବଣ୍ୟରୂପିଣୀ ଶଚୀଦେବୀ ଯାର ରାଣୀ ?

ରୂପସିନ୍ଧୁ ଊର୍ମିଶିଖେ ହିଲ୍ଲୋଳେ ହିଲ୍ଲୋଳେ
କେଳିକଳା ସୁକୁଶଳା ତରଣୀ ଯା ଦୋଳେ
ଦିବା ନିଶି- ସେଇ ତୁମେ କେ ଯିବ ପରତେ
ଆସି ଧରା ଦେବ କଷା ବସନ ପଣତେ

ତାପସ-ବଧୂର ? ନୁହେ ବିଡ଼ମ୍ବନା ଏ ତ ?'
ସେ ବୋଇଲେ, 'ମାନିନୀ ଗୋ । ଅସୂୟା ସଙ୍କେତ
କାହା ପାଇଁ ? ଶଚୀ ? ସେ ତ ରାଜରାଣୀ ସିନା,
ପ୍ରଣୟର ଅଭିଷେକେ ତାର କଳବୀଣା
ଜାଣେ ନାହିଁ ବାଜି, ରମ୍ଭା, ଉର୍ବଶୀ, ମେନକା,
ରୂପ-ସୌଦାମିନୀ ଦାମେ ଅଳକା ଚମକା ?
ମେଣ୍ଟାନ୍ତି ସେ ଆଖି ତୃଷ୍ଣା, କିନ୍ତୁ ସେ ରୂପେ କି
ପ୍ରାଣର ପିପାସା ପୂରେ ? ମଦିରା ଉପେକ୍ଷି
ଏଥି ମୁଁ ଲଭିଛି ଯେଉଁ ପୀୟୂଷର ଉତ୍ସ
ତବ ପକ୍ୱ ରଙ୍ଗାଧରେ, ସେ ବିନୁ ମୋ ତୁଚ୍ଛ
ହୋଇଥାନ୍ତା ସୁରଲୋକେ ଦେବରାଜପଣ
କ୍ଷତି ସହି ପାଇଛି ମୁଁ ସହସ୍ରେ ପୂରଣ ।'

ହା ରେ ଶଠ ଶିରୋମଣି ! ଲାଳସା ଅନଳ
କେସନେ ଲଭିଲା କ୍ଷାନ୍ତି ଏତିକେ କେବଳ ।



# ସପ୍ତମ ସର୍ଗ

'ଅବିଶ୍ରାନ୍ତ ବରଷଣ ଶେଷେ ସେ ଦିନର
ସନ୍ଧ୍ୟା ପୁରୋଭାଗେ ମେଘମାଳା ଶ୍ରାବଣର
ସୁଦ୍ଧା ଭଜିଥିଲା କ୍ଳାନ୍ତି, ଦିନାନ୍ତେ ତପନ
ବଉଦର ଫାଙ୍କେ ଫାଙ୍କେ ସୁବର୍ଣ୍ଣ କିରଣ
ଢାଳି ହସାଇଲେ ମୋର ଶ୍ୟାମ ପୁରୋଦ୍ୟାନ,
ହସିଲି ମୁଁ, ମୁକୁଳା ମୋ ପୁରକୁଦ୍ଧ ପ୍ରାଣ
ହସିଲା ପରଶି ସ୍ନିଗ୍ଧ ସମୀର; ଚକିତା
ଦେଖିଲି ଫେରାଇ ଆଖି ବିଶ୍ୱେ ଅନିନ୍ଦିତା
ରୂପରାଣୀ, ଲାବଣ୍ୟର ସଚଳ ଲହରୀ
ବାସାଞ୍ଚଳେ ଦୋଳାୟିତ; ନବ ମେଘୋପରି
ବିଜୁଳୀ ଚମକ ସମ ସୁବଦନ ଦ୍ୟୋତି
ଘନକୃଷ୍ଣ କେଶତଳେ; ଅବତଂସ ମୋତି
କପୋଳ ମଣ୍ଡଳେ ଦୋଳି ଉଭୟର ଉଭେ
ବଢ଼ାନ୍ତି ଗରିମା; ଆଉ ନେତ୍ର ବେନି ଶୋଭେ
ଯେସନେ ଉଜ୍ଜ୍ୱଳ ତାରାଯୁଗଳ, ଭ୍ରୂଦ୍ୱଇ
କୋମଳ, ସୁସଞ୍ଚ ବେନି କର୍ଣ୍ଣମୂଳ ଛୁଇଁ ।
କଣ୍ଠ ପାରିଜାତମାଳା ଉନ୍ନତ ଉରସେ ।
ଉଠେ ପଡ଼େ ଘନ ଘନ କେଉଁ କ୍ଷୋଭ ବଶେ ।
ଉଷାରୁଣ ସୂଚୀ ତାଙ୍କ ଚାରୁ ପାଦତଳ-
ପରଶେ ଆଗମ ପଥେ ଶ୍ୟାମ ଦୂର୍ବାଦଳ-
ଦେଖିଲି ଧରିଲା ରକ୍ତ କୋକନଦ କାନ୍ତି
ଅହଲ୍ୟାର ଊର୍ଦ୍ଧ୍ୱମୁଖୀ ରୂପଗର୍ବେ କ୍ଷାନ୍ତି

ଆସିଲା ସେତିକେ; ମୋର ସର୍ବ ଅଭିମାନ
ପ୍ରଣତି ନିବେଦି କ୍ଷଣେ ହେଲା ମୂହ୍ୟମାନ ।

ପାଶେ ଆସି ବସିବାର ମିନତି ଉପେକ୍ଷି
କହିଲେ ସେ, 'ତେଜସ୍ୱିନୀ, ଏ ରୂପ ନିରେଖି
ମଜ୍ଜିଥିବେ ନିଶ୍ଚେ ରୂପପାୟୀ ଅମରେଶ
ନୁହଇ ବିଚିତ୍ର, ଯେଣୁ ଜାଗଇ ଅଶେଷ
ଇନ୍ଦ୍ରବଧୂ ପ୍ରାଣେ ମାୟା, କିନ୍ତୁ ଲୋ ଦାମ୍ଭିକା
କହ ଦେଖି ମାନବୀର ଏ କି ଅହମିକା-
ଯୁଗାନ୍ତ କଳଙ୍କ ବୋଲି ଧରଣୀ ବନ୍ଦନେ
ନୋହିଲୁ ନିଶ୍ଚିନ୍ତ, ଆସି ଅମର ଭୁବନେ
ବାସବୀର କର ତାଙ୍କୁ ଏକାନ୍ତ ପ୍ରଣୟ
କାଢ଼ି ଭୋଗିବାକୁ ଲୋଡ଼ୁ ? (ହେ ମୋର ନିର୍ଦ୍ଦୟ
ମଜ୍ଜିଥିଲ ଅପ୍ସରୀଙ୍କ ପ୍ରୀତି ପାରାବାରେ
ସହିଥିଲି ମୁଁ ତା, ତାଙ୍କୁ ଅମରୀ ବିଚାରେ
କ୍ଷମା କରି; କିନ୍ତୁ ପ୍ରିୟ ବରି ଅଧୋଗତି
ମାନବୀ ପ୍ରୀତିରେ ଶେଷେ ବଳାଇଲ ମତି ।)

ଅହଲ୍ୟା ! ମୋ କଥା ଶୁଣ, ଆପଣା ନିଳୟେ
ଯାଅ ଫେରି; ପତି ତବ ଆକୁଳ ବିରହେ
ଯାପୁଥିବେ ଶ୍ରାବଣର ଭୀମା ବିଭାବରୀ
ନିରୁଦ୍ଦିଷ୍ଟା ପତ୍ନୀ ଲାଗି ତପ ପରିହରି ।
ଆଉ ଏକ କଥା, ନାରୀ ଜନନୀ ଲୋ ତୁହି
ଶିଶୁ ସନ୍ତାନ ଯେ ତେଣେ ଲୋଟୁଥିବ ଭୂଇଁ
ତ୍ୟକ୍ତ ଅନାଥ ପରାୟେ ମାଆ ମାଆ ଡାକି,
ମାତାର ସେ ଅଧିକାରେ କେସନେ ଲୋ ଫାଙ୍କି
ଦେଇ ତୁ ହୃଦୟହୀନା ଗୋପନ ପ୍ରୀତିର
ମଧୁ ଚାଖୁ, ତେଣେ ଖାଇ ଲଜ୍ଜା ମାନ ଶିର ?

ନାହିଁ, ନାରୀ, ଫେରିଯାଅ ନିଜପୁର ଲାଗେ
ଆନ ରମଣୀର ମୁଖ କଳଙ୍କର ଦାଗେ
କର ନାହିଁ କଳଙ୍କିତ କ୍ଷଣିକ ଭରମେ,
ଏଣେ ଯେ ଅଳକା ପୁରେ ତୋ ଲାଗି ସରମେ
ମୁଖ ଟେକି ପାରେ ନା ମୁଁ, ବୁଝିବୁ ତା କାହୁଁ ?
ପୁଣି କହେଁ ଫେରି ଯାଅ ରଜନୀ ନ ପାହୁଁ ।'

ସ୍ୱଜାତି ପୀରତି ଯାହା ରମଣୀ ହୃଦୟେ
ଜାଗିଥିଲା ପ୍ରଥମେ ମୋ ତାର ବିନିମୟେ
କରିଗଲେ ଇନ୍ଦ୍ରଜାୟା କୁଳୀଶ ପ୍ରହାର,
ସହିଲି ମୁଁ ସହିବାର ପୁଣ୍ୟ ଅଧିକାର
ଜନମ ଅବଧି ସେ ତ ନାରୀର ସୌଭାଗ୍ୟ ।
ସବୁ ଅପରାଧ ତ୍ରୁଟି ଯଦି ଅଙ୍ଗରାଗ
କରି ନ ଘେନିଲା ନାରୀ କ୍ଷମା ଯେ ତେବେ ତା'
ନାହିଁ କାହିଁ- ଶୁଣିଛି କହନ୍ତି ଶାସ୍ତ୍ରବେତ୍ତା ।
ଥାଉ,- ଶଚୀ ସୁନ୍ଦରୀଙ୍କ ଅନୁନୟ ମିଶା
ଭର୍ତ୍ସନାର ଜାଲେ ମୋର ଧୂମାୟିତ ଦିଶା
ହରୁଥିଲା ଯେତେ ମୋର ମୁନିବଧୂ ମାନ,
ଦୀପି ଉଠୁଥିଲା ସେତେ ରୂପ ଅଭିମାନ
ମୋର, ଶଚୀପତି ସମ ପ୍ରଣୟ ପ୍ରବୀଣ
ଅମରେ କରିଛି ବୋଲି ମୋ ପ୍ରୀତି ଅଧୀନ
ପ୍ରୀତି ପ୍ରତିଯୋଗିନୀ ମୋ ପୁଲୋମ ତନୁଜା
ଘେନି ସଙ୍ଗେ ଶତ ଅପସରୀ ବରଭୁଜା-
କହ ରଘୁସୁତ, ଏହି ଗୌରବ ଗରବେ
କେଉଁ କାମିନୀର ଛାତି ନ ଫୁଲିବ ଭବେ ।
ଥାଉ ପତିସୁତସ୍ମୃତି ଉଠି ଏଥି ଥରେ
ବୁଦ୍‌ବୁଦ ପରାୟେ ଯଦି ଭଭେ କ୍ଷଣ ପରେ
ସେ କି ଅଭାଗୀର ଦୋଷ ? କିନ୍ତୁ ଗୋ ସୁନ୍ଦର
ଜଳଭ୍ରମେ ମରୀଚିକା ବେଣୀରେ ଆଦର

କଳି ସିନା । ଶିଶୁ ପରି, ବାଳିବନ୍ଧ ଦେଇ
ଭବିତବ୍ୟ ରୋଧିବାରେ ହେଲି ମୁଁ ସେନେହୀ
ଯାର ଅନୁରାଗେ ରଖି ଚିରନ୍ତନୀ ଆଶା
ଚାତକୀରୁ ବଳି କଣ୍ଠେ ଜାଳିଲି ପିପାସା,
ହାୟ ! ସେଇ ହେଲେ ଶେଷେ ମୋର ବିଧିବାମେ
ନିର୍ଦ୍ଦୟ ବିମୁଖ ଏଇ ଲଳନା ଲଲାମେ ।

ପ୍ରଥମ ଦର୍ଶନ ଦିନ ପରି ସେ ଦିନ ବି
ଆସନ୍ତେ ମୋ ପୁରେ ପ୍ରିୟ, ମୋ ମନଜାହ୍ନବୀ
ଉନ୍ମାଦିନୀ ପ୍ରାୟ ତାଙ୍କ ତୁଙ୍ଗ ତରଙ୍ଗିଳ
ଉଲ୍ଲାସେ ମିଶିବ ବୋଲି ହେଲାକ ଉର୍ମିଳ ।
କିନ୍ତୁ ତାଙ୍କ ନତ ନେତ୍ର, ସ୍ଫୁରିତ ଅଧର,
ବିଧୃତଗମ୍ଭୀରଭାବ ମୁଖ ମଣ୍ଡଳର
ଦେଖି ଶଚୀ କଥା ସ୍ମରି ଗଣିଲି ଆତଙ୍କ,
ସନ୍ଧ୍ୟାମୁଖେ ମେଘାୟିତ ଆକାଶର ଅଙ୍କ
ନିରେଖି ପଥିକ ବଧୂ ଶିଥିଳଚରଣା
ତ୍ରାସ-ଭରେ ଭାବେ ଅବା ହେବ ବାଟବଣା ।

କହିଲେ ସେ ସସଂକୋଚେ, 'ଶୁଣ ବରାରୋହେ ।
ଅନୁକ୍ଷଣ ଯଉବନ ମରୀଚିକା ମୋହେ
ଧାଏଁ ଯେଉଁ ପଥେ, ତହିଁ କେତୋଟି ପରାଣୀ
ଲଭନ୍ତି ସୁଖ୍ୟାତି ? ତବ ମମ ମନ ଜାଣି
ରୂପ ଧରି ଅଛି ଯଦି ମୃଗତୃଷ୍ଣା ବେଣୀ,
ବ୍ୟୋମ ବ୍ୟବଧାନ ଭେଦି ବୈଦୁର୍ଯ୍ୟ ନିଃଶ୍ରେଣୀ
ସମ୍ଭବିଛି ଯଦି, ଆସ ଯୁଗ ଯୁଗ ବ୍ୟାପି
କାଳ ସ୍ରୋତେ କୀର୍ତ୍ତି ସ୍ତମ୍ଭ ରଖିଯିବା ସ୍ଥାପି,
ଭୋଗେ ନୁହେ, ତ୍ୟାଗେ । ସଖି, ଏ କୀରତି ମୂଳେ
ମିଳନର ଆତ୍ମବଳି, ସ୍ମୃତି ଅନୁକୂଳେ ।
ପ୍ରଣୟ ଦୀପିତ ଏହି ଦିବା ନିଶି ଯେତେ

ଦୂରେ ଥାଇ ବିଭାସିବ ମଧୁର ସଂକେତେ ।
ଜାଣ ତ ସୁନ୍ଦରୀ କେତେ ଦୂରେ ନଭୋଦେଶେ
ଉଠେ ମେଘମାଳା, ତାରି ନୀଳିମ ଆବେଶେ
ଦୂର ବନେ ଚନ୍ଦ୍ରକିତ ବରହ ଉଲୋଳି
ନାଚେ କେକୀ । ପ୍ରିୟେ ଆଜି କହେ ହୃଦ ଖୋଲି
ଗୁପତ ପୀରତି ରସେ ସମାନ ଆସ୍ୱାଦ
ଥାଏ ନାହିଁ ସବୁଦିନେ, କେ ଜାଣେ ପ୍ରମାଦ
ନ ଘଟିବ କେଉଁ କ୍ଷଣେ ? ଏଣୁ ଥାଉଁ ବେଳ
ଆସ ସଖୀ । ରଖିଦେବା ଲୁଚକାଳି ଖେଳ ।
ପତି ତବ ତପୋଗୁଣେ କ୍ଷମାଶୀଳ ଚିର
ମାଗିନେବ ଅପରାଧ ଯଦି ପାତି ଶିର
ନିଶ୍ଚୟ କ୍ଷମିବେ ତବ ଏ ମୋହ-ପ୍ରମାଦ
ଫେର ନାରୀ, ହରାଅନା ସ୍ୱାମୀ ପରସାଦ ।'

ବୀତରାଗ ଏ ଉକତି ବଜ୍ରପାଣିଙ୍କର
ବିନ୍ଧିଲା ମରମ ମମ, ଯେହ୍ନେ ଭୟଙ୍କର
ବିଜୁଳୀ ବଜରବାଣ ଜନମି ପଲକେ
ହାଣି ଯାଏ ମେଘାଶ୍ରିତ ଚାତକିନୀ ବକ୍ଷେ ।
କହିଲି, 'ସିନ୍ଧୁ ତରଙ୍ଗେ ବିପଦ ନ ଗଣି
ଅଗାଧେ ମୁଁ ମେଲି ଦେଲି ସମ୍ଭୋଗ ତରଣୀ
କାହା ଲାଗି ? କିସ ପାଇଁ ? ଏଇ କଷାଘାତ
ଦେବ ବୋଲି, ହେ ନିର୍ମମ ! ଏ ପିଚ୍ଛିଳ ବାଟ
କରି ନେଲି ପରିଷ୍କାର ! ପୁଣି କହ କିନା
'ଫେରି ଯାଅ', କାହିଁ ଯିବି ? ତବ ଲାଗି ସିନା
ନିଭୃତେ ବସିଲି ତାଖି ନିଷିଦ୍ଧ ଫଳଟି;
ଯାହା ଲାଗି କଲି ଚୋରି, ହାୟ ! ସେ ଓଲଟି
କହେ ଯଦି ଚୋର, କେଉଁ ମୁଖ ଘେନି କହ
ଫେରିଯିବି ଗଉତମ ପବିତ୍ର ନିଳୟ ?

ଇନ୍ଦ୍ରାଣୀ କହନ୍ତି, 'ଫେର', ପୁଣି କହ ତୁମେ,
ଫେରି ଯିବି ଓଁକାର ଝଙ୍କୃତ ପୁଣ୍ୟ ଭୂମେ ?
କିନ୍ତୁ ପ୍ରିୟ ଏ ରଙ୍ଗ ଅଧର ପାତ୍ର ବାଢ଼ି
ଦେଇଛି ଯା ମୁଖେ ତବ, କେହ୍ନେ କହ କାଢ଼ି
ସେ ଚଷକେ ସେ ପୀୟୂଷ ଧରିବି ନିର୍ଲଜେ
ଆଗ ପରି ମୁନୀନ୍ଦ୍ରଙ୍କ ଜିହ୍ୱାଗ୍ରେ ସହଜେ ?
ଶୁଣିଛି ତ୍ରିଦିବବାସୀ ଶଠ ପଣେ ଖ୍ୟାତ
ତ୍ରିଭୁବନେ, ଆଉ ଯଦି ତ୍ରିଦିବର ନାଥ
ଗୁରୁପଣ ଆଚରନ୍ତି ତହିଁ କିବା ଦୋଷ
ପ୍ରିୟ ତବ ? ତେବେ କିବା ପ୍ରଣୟ ପ୍ରଦୋଷ
ସତେ ମୋର ଏହା ? ଏହି ମେଘାକୁଳ ସଞ୍ଜେ
କୁଳତ୍ୟାଗିନୀର ମୂଳହଣା ପରାଣ ଯେ
ଆଶ୍ରା ଲୋଡ଼ି ଲୋଟି ବୁଲେ ତୁମରି ସନ୍ନିଧି,
କହ ପ୍ରିୟ ତହିଁ ଏହି ଶଠାଚାର ବିଧି
ଆଚରିବା ହୋଇବ କି ଉଚିତ ବେଭାର ?
ସାନୁରାଗେ ପ୍ରେମେ ଯଦି କଲ କାରବାର
ଅବଳାରେ ଅନାଶ୍ରିତ କରି ଅଧପଥେ
ନିର୍ଲିପ୍ତ ରହିବ ଶେଷେ ନ ଆସେ ପରତେ ।
କହ ସଖା ଯା କହିଲ ସବୁ ପରିହାସ,
ଭୀରୁ ପ୍ରାଣୁ ଅପସରି ଯାଉ ଶଙ୍କା ତ୍ରାସ ।
କହିଲେ ସେ, ପରିହାସ ମଣି ଯଦି ସୁଖୀ
ହୋଇପାର ସେ ବିଭ୍ରମ ଭଙ୍ଗାଇ ସୁମୁଖୀ
ଫେରିଯାଅ କହିବାକୁ ବାଧେ ମୋ ପରାଣେ,
କିନ୍ତୁ ଗୋ ଦାରୁଣ ସତ୍ୟ ସ୍ୱପ୍ନ ଅବସାନେ
ନ ଇଛିଲେ ମଧ ଆସେ, କେ କରିବ କିସ
କଠୋର ନିୟତି ସେ ଯେ ମଣେ ଶୁଭାଶିଷ
ବରଷଇ, ମନଛାଏ ଅଭିଶାପ ଢ଼ାଳି ।
ଆହୁରି କଥାଏ ଏଣୁ ଶୁଣ କହେଁ ବାଳୀ,
ଧରଣୀ ଦୁହିତା ତୁମେ ଧରଣୀ ସମାନ

ସବୁ ସହିବାରେ କ୍ଷମ। ଏ ଯେ ପ୍ରୀତି ଦାନ
କରିଅଛ ମମ କରେ, ସେ ଦାନ ଅପାତ୍ରେ
ପଡ଼ି ନାହିଁ- ଏଇ କଥା ସ୍ମରିବା ମାତ୍ରେ
ସରବ ଶୋଚନା ତବ ହେବ ତିରୋହିତ
ଯାଅ ପ୍ରିୟେ ଫେରି ପତି ପୁତ୍ର ସନ୍ନିହିତ।
ଦେବ ମାନବୀର ଏହି ପ୍ରଣୟ କାହାଣୀ।
ପୁରାଣ ପ୍ରଥିତ ହେଉ ଯୁଗୋତ୍ତର ଜାଣି।'

ମୁଁ କହିଲି, 'ପ୍ରିୟ, ଏହି ଯଶ ପ୍ରଲୋଭନ
ଦେଖାଇ କି ଲାଭ ? ମୋର କାମନା ସ୍ପନ୍ଦନ
ସେ ଦିନୁଁ ସେ ପଥ କରିଅଛି ପରିହାର
ଯେଉଁଦିନ ଏ ଗୋପନ ପ୍ରୀତି ଅଭିସାର-
ତୃଷାରେ ମୁଁ ହେଲି ବାଇ; ଯେଉଁଦିନ ତବ
ଅଙ୍ଗୁଳି ପରଶେ ମୁଁ ଗୋ ଦେଖିଲି ବାସ୍ତବ
ଅକାଳ ମୋ ଜରତୀର ଫେରିଲା ଯୌବନ
ସନ୍ଧ୍ୟାରାଗ ଥରି ଥରି ବାଣ୍ଟିଲା ଚୁମ୍ବନ
ଜୀବନ୍ତ ମରଣେ ଆଉ ବଳେ ନା ମୋ ଆଶ
ସବୁ ବୁଝି, ତେବେ ସଖା କର ପରିହାସ !

କି ଘେନି ମୁଁ ଯିବି ଫେରି ? କେବଣ ପୁରକୁ
ଯହିଁ ଯାଏଁ କହ ଦେଖି କେସନେ ତୁମକୁ
ନ ଲାଗିବ ଏ କଳଙ୍କ ? ନାହିଁ, କହେଁ ଶୁଣ
ନାରୀ ପ୍ରାଣେ ପ୍ରୀତି ତୃଷା ସତତ ମଣ୍ଡନ
ଇଚ୍ଛା ଆବରଣେ ଯଥା ଫୁଲରେଣୁ ତଳେ
ଥାଏ ଛପି ମଧୁଧାର; ମଧୁବ୍ରତ ବଳେ
କରେ ତାହା ଆବିଷ୍କାର; ଆଜି ସେ ରମଣୀ
ଡେଇଁ ତା ରମଣୀ ସୀମା ତୁମରି ସରଣୀ
ଅନୁସରି କରିବାକୁ ପ୍ରୀତି ନିବେଦନ
ନ ଗଣଇ ଅପବାଦ। ମହତ ଶରଣ-

ବିନା କାହିଁ ପାରତିର ଗତି ଏ ସଂସାରେ ?
ସଂଚାରିଣୀ ପଲ୍ଲବିନୀ ମାଧବୀ ଲତାରେ
ପାଦେ ଠେଲି ରସାଳର ପଉରୁଷ କିବା ?
ବାସବୀର ଅଧିକାର ସ୍ୱପନେ ଲୋଡ଼ିବା
ସେ ତ କେବେ ଯାଚିକାର ନୋହେ ଅଭିଳାଷ
ପ୍ରୀତି କାଙ୍ଗାଳିନୀ ଖାଲି ପ୍ରୀତିରେ ତା ଆଶ ।'

ଏ ଦୟିନୀ, ଏ କାକୁତି, ଏ ମିନତି ହା' ରେ ।
ବାଜିଲା କେବଳ ସିନା ପାଷାଣ ହିଆରେ ।
ପ୍ରତିବାଣୀ ପରି ଯାହା ଶୁଣିଲି ମୁଁ କାନେ
କି କହିବି, ସେ ଉକତି ଶେଳସମ ହାଣେ,
ସ୍ମରିଲେ ତା, ଆଜିଯାଏ । ହୋଇ ମୁନିବଧୂ
ଉପଯାଚିକାର ବାଣୀ କେସନେ ମୋ ମଧ୍ୟୁ
ବାହାରିଲା ? ପୁଣି ମୁଁ ବା ସହିଲି କିପରି
ନିର୍ମମ ଏ ପରିହାର ନାରୀ ପ୍ରାଣ ଧରି ?
ଏତିକି କେବଳ ମୁହିଁ ବୁଝି ନେଲି ସାର୍
ଶଚୀ ସାଥେ ମାନବୀର ସପତ୍ନୀ ବେଭାର
ନୋହିବ ଶୋଭନ, ଏଣୁ ବିହିଲେ କପଟୀ
ମରତ ପ୍ରୟାଣ କୁଳତ୍ୟାଗିନୀର ପ୍ରତି ।

ଅଳକାର ଉପକଣ୍ଠେ ସ୍ୱର୍ଣ୍ଣଦୀ ସୈକତ-
ବିଦାରି ରଚିବି ବୋଲି ମୋ ବାହୁଡ଼ା ପଥ
ସ୍ୱପନେ ମୁଁ ଭାବି ନାହିଁ ଦିନେ; ଏ ବାଲି ଯେ
ତଳପ ପ୍ରସାରି କେତେ ଉଜାଗରେ ନିଜେ
ପ୍ରଣୟିନୀ ପ୍ରଣୟୀରେ ଆଣିଛି ଆହ୍ୱାନି
ନିଶୀଥେ ଶୁଦ୍ଧାନ୍ତୁ, ପୁଣି ସୁରଧୁନି ପାଣି
ସିଞ୍ଚି ବିଞ୍ଚିଛି ଚାମର ଶ୍ରମ-ଉପଚାରେ ।
ସ୍ମୃତି ସୁଖ ସୁବହୁଳ ସେ ବାଲୁ ବିସ୍ତାରେ
ନୋହିଲା ମୋ ପଥବଣା ? ଧାରାଳ ଶ୍ରାବଣ୍ଣ
ଢାଳି ଅବିରଳ ଅଶ୍ରୁ ମୋ ବେନି ନୟନୁ

ଅନ୍ଧ କରି ଗଲା ମୋତେ ତିନ୍ତାଇ ମୋ ବକ୍ଷ,
ତିନ୍ତାଇ ମୋ ପିନ୍ଧାବାସ ! ଯେହ୍ନେ ଧରି ପକ୍ଷ
ଫେରିଲା ବାହୁଡ଼ା ତରୀ ଅଭିସାରିଣୀର
ଭେଦି ସେଇ ମେଘଘେରା ରଜନୀ ତିମିର ।
ଏତିକି ମୁଁ ଜାଣେ, ମୋର ହଜିଲା ଚେତନା,
କେଉଁ ପଥେ କେତେ ଦୂର ଆସିଲି, ତା ଜଣା
ନୋହିଲା ମୋ; ତଥାପି ତା ଥିଲା ଏଥୁଁ ଭଲ;
ଚେତନେ ସିନା ସନ୍ତାପୀ ହୁଏ କଳ ବଳ ।

ଯେତେ ଯାହା ଦେଖିଥିଲି ଅଭିସାର ପଥେ
ଅନୁଗତ ଜନ ପରି ମୋ ନେତ୍ର ପୁରତେ
ପ୍ରଣୟର ଉପଚାର ପ୍ରଣୟୀ ଯୁଗଳେ
ଦେଉଥିଲେ ବାଢ଼ି ଅର୍ଘ୍ୟରୂପେ ଅବିରଳେ
ସରବେ ସେ ଦିନ; ଆଜି ରିକ୍ତ ହସ୍ତେ ଫେରି
ନିଃସ୍ୱ ପ୍ରଣୟିନୀ କହ କେଉଁ ନେତ୍ରେ ହେରି
ପାରନ୍ତା ସେ ଉଦାସୀନ ପ୍ରାଣର ବିରାଗ ?
ଅଚେତ ମୁଁ ଏଣୁ ସୁଖୀ ଥିଲି ମହାଭାଗ !

କିନ୍ତୁ ସୁଖ ସଉଭାଗ୍ୟ ମର୍ତ୍ତ୍ୟ ପ୍ରବାସୀର
ଇନ୍ଦ୍ରଧନୁ ଶୋଭା ସମ ଚଞ୍ଚଳ ଅଚିର ।
କେବଳ ଯେହ୍ନେ ତା ଦୁଃଖ, ଶୋକ, ଦୈନ୍ୟରାଜି
ଜନମ ଅବଧି ସଙ୍ଗ ସାଥୀ ଛନ୍ତି ସାଜି ।
ନରଭାଗ୍ୟେ ଯହିଁ ଏତେ ବିଡ଼ମ୍ବନା ସେଥି
ନାରୀ କିବା ଲେଖା ? ମୋହ ଅନ୍ତେ ଯଦି ଚେତି
ଲଭିଲି ପ୍ରଭାତ ସ୍ପର୍ଶ ଶୀତଳ ମଧୁର
ଏଇ ବନ ଶିଖେ ଶିଖେ, ନିର୍ମମ ନିଷ୍ଠୁର
ହସିଲା ଉଷସୀ କ୍ରୂର ସତ୍ୟ ସଂକେତନେ
ତ୍ୟକ୍ତା ମୁହିଁ ? ଭାବିବାରେ ଭୟ ହେଲା ମନେ,

ଅସରନ୍ତି ପୀରତିର ଉତ୍ସ ବୋଲି କାଲି
ଆଶ୍ରିଥିଲି ଯାରେ, ସତେ ମନେ ମାନେ ଖାଲି
ହୋଇ ମୁଁ ଫେରିବି ସେଇ କଳ୍ପବଟର
ଛାୟା ତଳୁ ? କମ୍ପିଲା ମୋ ସର୍ବ କଳେବର ।

କାହିଁ ସେ ପ୍ରମୋଦ ପୁରୀ, ଶ୍ୟାମ ଲତାବାସ,
ଫୁଲଦଳାଞ୍ଚିତ ଦୋଳେ ଝୁଲଣ ବିଳାସ,
କାହିଁ ଏ ବିଜନ ବନେ ଘନ ଝିଇଁ ସ୍ୱନ ?
କାହିଁ ସେ ପ୍ରଣୟ ? ସାଥେ ଲଭିଲା ମରଣ
ବଞ୍ଚିବାର ମଧୁ ଆଶା ! ସେଦିନୁ ଅହଲ୍ୟା
ମରିଛି ଅକାଳେ ଶୁଣ କଉଶଲ୍ୟା - ବତ୍ସା ।

ସେଦିନୁଁ ଯାଇଛି କେତେ କାଳ ଏଥି ବିତି
କେ କରିଛି ଲେଖା ? କେତେ ଅରୁଣ ଦୀଧିତି,
କେତେ ଚାନ୍ଦିନୀ ରଜନୀ, ଶୀତ ବର୍ଷା ଖରା
ଭେଦିଛି ଏ ଅଙ୍ଗେ ? ଏଇ ବନପ୍ରାଣ ଭରା
ପଲ୍ଲବ ସମ୍ପଦେ ପୁଷ୍ପଶୋଭୀ ବସନ୍ତର
ବସିଛି ମୋ ପ୍ରାଣଫଟା ଉତ୍ସବ ବାସର
କେତେ କେତେ, ଦେଖିଛି ମୁଁ ଆଖି ମାତ୍ର ମେଲି,
କିନ୍ତୁ ଏ ପାଷାଣ ସ୍ତୂପ ଛାତି ପରୁ ଠେଲି
ଭୋଗିବାର ଏ ସମ୍ପଦ ନ ଥିଲା ତ ମୋର,
ଶୁଷ୍କ ଜୀବନଟି ରଖି ମୋ ପ୍ରଣୟ - ଚୋର
ହରି ଘେନି ଯାଇଥିଲା ସର୍ବ ଅନୁଭୂତି ।
ତେବେ ବି ସେତିକେ ବନ୍ଧୁ ଲଭିଲି ନିଷ୍କୃତି ?
କୁଳତ୍ୟାଗିନୀ ମୁଁ ଯଦି ପାଷାଣ ପାଲଟି
କରିବାକୁ ପ୍ରତୀକାର ବଳାଇଲି ମତି
ଫଳିଲା ବିଷମ ଫଳ । ଯାହା ବୋଧ ଜ୍ଞାନ
ଥିଲା ବାକି ମୋର, ସେଥେ କଲି ଅନୁମାନ
ବିଷଧର ଶିଶୁରୂପ ଧରି ଅନୁତାପ
ଦଂଶଇ, ଏ ପାଷାଣର ଛାତିରେ ସେ ଧାପ

କରତିଲା ପରି ଲାଗୁଥିଲା ଅହରହ
କି କହିବି ତରୁଣ ହେ ସେ ଜ୍ୱାଳା ଅସହ
ନ ଭୋଗୁ ପରମ ଶତ୍ରୁ । ଆଜି ଭାଇ ବେନି
ଦେବଦୂତ ସମ ମୁକ୍ତି ଆଶୀର୍ବାଣୀ ଘେନି
ପାଷାଣୀର ଅଙ୍ଗେ ଅଙ୍ଗେ ଦେଲ ଯା ବରଷି,
ଶତ ବରଷର ଠୁଳ ପାପଭାର ଖସି
ଯାଇଛି ମୋ; ମେଘମୁକ୍ତ ଆକାଶଟି ପରି
ପ୍ରାଣ ମୋ ଉଷ୍ଟାସ ଲାଗେ, କହ ଗୋ କିପରି
ନିବେଦିବି ହୃଦୟର ଭାଷା ? ସେ ଦିନର
ଶିଶୁ ବିଷଧରଟିର ଜ୍ୱାଳାମୟ ଗର
ନାହିଁ ଯା ରାଜୀବରଙ୍ଗାଚରଣ ପରଶେ;
କୈଶୋର ଭାସ୍ୱର ତାଙ୍କ ମୁଖ ଆଦରଶେ
ଦେଖେଁ ମୁହିଁ ପ୍ରତିଫଳେ ସ୍ୱର୍ଣ୍ଣ ବର୍ଣ୍ଣମାଳେ
'ଅହଲ୍ୟା ଉଦ୍ଧାର' । ଭାଗ୍ୟ ଆଜି ଏତେ କାଳେ
ପ୍ରସନ୍ନ ମୋ; ଆଜି ପରି ମହାଶୁଭ ଦିନ
କେ ଲଭିଛି କାହିଁ, କିଏ ମର ଜନମିଣ !
ହେ ଦେବତା ! ମଳୟର କେବଣ ନିକେତୁ
ବସନ୍ତର ଏ ବିଭବ ଆଣିଲ, ଯା ହେତୁ
ଜୀର୍ଣ୍ଣ ଲତା ଅଙ୍ଗେ ନବ ଅଙ୍କୁର ସ୍ଫୁରଣ
ପରାୟେ ଏ ଜଡ଼ ପିଣ୍ଡେ ପ୍ରାଣ ପ୍ରସ୍ରବଣ
ପାଇଲି ମୁଁ, ଆଜି ମୋର ନବ ଜନ୍ମ ଯୋଗ
ଅପସରି ଯାଏ ଆଉଁ ଅପଗ୍ରହ ଭୋଗ ।
ଶୈବାଳ ପିଧାନୁଁ ମୁକ୍ତ ଆଜି ମୋ ନଳିନୀ
ରବିବଂଶ ଅବତଂସ କରେ, ଆଜି ଜିଣି
ପାରିଛି ମୁଁ ଖଳପ୍ରୀତି ମରୀଚିକା ନିଶା,
ଅକୂଳ ସାଗରେ ତୁମେ ଦେଲ ଯେଣୁ ଦିଶା ।

ତରୁଣ ଦେବତା ! ତେଣୁ ଯାଚନା ଆବରେ
ନିବେଦନେ ତବ ପାଶେ ସାହସ ମୁଁ ଧରେ,-

କେତେ କାଳ ହେଲା ମମ ପତି ପୁତ୍ର ମୁଖ
ଦେଖି ନାହିଁ ହେ ସୁନ୍ଦର ! ଏଇ ମନୋଦୁଃଖ
ଜୀବନ ଆନନ୍ଦ ସଙ୍ଗେ ପୁଣି ମମ ଜାଗେ ।
ଜାଗ୍ରତା ଜନନୀ ଆଜି ଏହି ଭିକ୍ଷା ମାଗେ
ଏତିକି କରୁଣା କର ପାଏଁ ମୁହିଁ ଫେରି
ଅବୋଧ ସନ୍ତାନେ ମମ । ପୁତ୍ର  ମୁଖ ଘେରି
ଜନନୀର ଅନାବିଳ ସୁରଧୁନି ଧାରା
ରହିଥିବ ଆଜି ଦିନୁଁ ଏ ଜୀବନ ସାରା ।

ପତି ସଙ୍ଗ ଲୋଡ଼ିବାର ଯେଣୁ ଅଧିକାର
ହରାଇଛି ଅଭାଗିନୀ ନିଜ ଦୋଷେ ତାର
ସେ ନୀଡ଼େ କେବଣ ପ୍ରାଣେ ଫେରିବ ସେ ଆଉ ?
ପତିଛଡ଼ା ଏସନେ ମୋ ଦିନମାନ ଯାଉ,-
ନ ନିନ୍ଦିବି ଭାଗ୍ୟ, କାହିଁ ଅଛି ମୋ ତନୟ
ନିରୁଦ୍ଦିଷ୍ଟା ଜନନୀର ଲାଗି ତା ହୃଦୟ
ଦିନକର ଲାଗି ନିକି ନୁହଇ କାତର ?
କେସନେ ପାଇବି ତାରେ କହ ରଘୁବର ।
ଭ୍ରାନ୍ତମତି ମାଆ ମୁହିଁ ତବ ନବାଞ୍ଜନେ
ଯଦି ଗୋ ସୃଷ୍ଟିର ଏଇ ଆଲୋକ ରତନେ
ଲଭିଅଛି ନୂଆ କରି, ସେ ଦୃଷ୍ଟି ସଫଳ
କର, ମାଗେ, ମୋ ତନୟ ବଦନ କମଳ ।''



# ଭ୍ରାନ୍ତ ଭାଷ

କାମିନୀ ପରାଣେ କେତେ ଗୋପନ ବାରତା
ପ୍ରଣୟର ଅବସାନେ କେତେ ମନୋବ୍ୟଥା-
ଶୁଣିଲେ, ବୁଝିଲେ ରଘୁନନ୍ଦନ, ବିସ୍ମୟ-
ସଙ୍ଗେ ତାଙ୍କ କାରୁଣିକ ତରୁଣ ହୃଦୟ
ସମଦୁଃଖେ ଗଲା ଭରି, ଚାତକିନୀ ଦୁଃଖେ
ରୋମାଞ୍ଚ ଜନମେ ଯଥା ନୀପକଳି ବୁକେ ।

ପଥଭୁଲା ପାନ୍ଥେ ପୁଣି ପଥର ସନ୍ଧାନ
ଦେଲାପରି, କିଶୋର ସେ, ଜ୍ଞାନେ ବର୍ଷୀୟାନ-
ପରାୟେକ ଭାବିନୀର ଖେଦେ ଦେଇ ବୋଧ
କହିଲେ, "ଗୋ ମୁନିବଧୂ ! କାମନା ନିରୋଧ
ସେ ମହା କଠୋର ବ୍ରତ ନୁହଇ ସୁକର,
ଇତରେ ତ କଥା ନାହିଁ, ଯୋଗୀ ଜନଙ୍କର;
ଅବଳା ତ ତୁମେ; ତବ ଅତୃପ୍ତ କାମନା
ଯୌବନ ଉତ୍ସବ ମଧ୍ୟେ ଯଦି ପଥବଣା
ହୋଇଥାଏ, ସେ ଅତୀତେ ଆଉ ଥରେ ମନ୍ଥି
ଗରଳ ସରଜ କିପାଁ ? ଅବଳାର ପ୍ରତି
ନରର ଏ ବିଧି ସତ୍ୟ, କି ହେବ ଆକ୍ଷେପି,
ନର ତାର ଦୋଷମାନ ନାରୀ ଭାଲେ ଲେପି
ଚାଲିଯାଏ ଶିର ଟେକି ଲାଗେ ନା କଳଙ୍କ,
ଖାଲି ଯେହ୍ନେ ଅବଳାର ପ୍ରାଣ ପ୍ରୀତିରଙ୍କ ।

ଲୋକାଚାର ତାହା, କିନ୍ତୁ ତା ପାଦ ତଳେ ତ
ଯୁଗେ ଯୁଗେ ନତଶିର ବିବେକ ସମେତ
ନରର ବିଚାର ଜ୍ଞାନ । ସେ କଥା, ସରଳେ !
ବିଚାରି କି ହେବ ? ଏ ଯେ ପ୍ରାୟଶ୍ଚିତ୍ତ ଛଳେ
ଆଚର ପାଷାଣ-ବ୍ରତ ବିଧି ନବତନ
ଫେରାଇ ପାରିଛ ନିଜ ପଳାତକ ମନ
ପର ଧର୍ମ୍ମୁ, ପର ପଥୁଁ ସ୍ୱଧର୍ମେ, ସ୍ୱପଥେ,
ଏହି ଘେନି ତବ ନାମ ସୃଷ୍ଟି ଲୟ ଅନ୍ତେ
ରହିବ ଜାଜ୍ୱଲ୍ୟମାନ, ତେଜ ମନୁଁ ଚିନ୍ତା;
ତବ ଚିତ୍ତବୃତ୍ତି ତବ କାଳକୁ ଶୋଧିତା
ଅନଳେ କାଞ୍ଚନ ସମ ! ଚିର ଆପଣାର
କରି ପତି ପୁତ୍ରେ ଆଜ୍ଜୁ ନବୀନ ସଂସାର
ପାତିବାରେ ସମରଥା ହୋଇବ ମାନିନୀ;
ଆଜୁଁ ତୁମେ ଦିବସର ଶୁଭ-ବିଧାୟିନୀ
ହେବ ତାରେ ଯେହୁ ତବ ନାମ ପରଭାତେ
ସୁମରିବ ଭକ୍ତି କରି ।''

ଏକାଳେ ବନାନ୍ତେ ।
ବସନ୍ତ ଗୁଞ୍ଜନ ଭେଦି ଶୁଭିଲା ଆହ୍ୱାନ
''ଅହଲ୍ୟା'', ''ଅହଲ୍ୟା'', ଯେହ୍ନେ ଯୁଗାନ୍ତ ପାଷାଣ-
ବକ୍ଷ ଚିରି ନିଃସ୍ରବିଲା ରୁଦ୍ଧ ମନ୍ଦାକିନୀ,
ନିମୀଳିତ ନେତ୍ର ମେଲି ଗୌତମ ଗୃହିଣୀ,
ଦେଖିଲେ ଚକିତେ ନିଜ ସ୍ୱିନ୍ନ ଭାଳ ଦେଶ
ଆବୋରିଛି ଗଉତମ ଜଟାୟିତ କେଶ ।

■■

॥ ୧ ॥

ବାଣୀ, ବାଣୀ, ବାଣୀ
ଅତୀତର କୋଳେ କେବେ
ଆପଣେ ମା ବିକଶିଲୁ
ଆଜି ବିଶ୍ୱ ରସନା ରାଣୀ
ବାଣୀ, ବାଣୀ, ବାଣୀ ।
ଅମୁହାଁ ଦେଉଳ କୋଣେ ସାଗରିକା ବାଳା
ଗୋପନେ ଲୁଚାଇ ରଖେ ମୋତି ମଣି ମାଳା;
ଅଗଣିତ ଢ଼େଉ ଦଳି
ତୁ ଦେଉ ମା ପଥ କଳି
ତୋର ଉପାସକ ମନ ଜାଣି,
ବାଣୀ, ବାଣୀ, ବାଣୀ ।
ଦେଶେ ଦେଶେ ନରେ ନରେ ଯେତେ ବ୍ୟବଧାନ
ଜନନୀ ତୁ ଦେଇ ତହିଁ ପୀରତି ସନ୍ଧାନ
ପ୍ରଥମ ମଳୟ ସନେ
ଆଜି ତେଣୁ ଏ ଭୁବନେ
କଣ୍ଠେ କଣ୍ଠେ ଅରଚନା ବାଣୀ
ବାଣୀ, ବାଣୀ, ବାଣୀ

॥ ୨ ॥

ଜାଣେ ନା ସେ ଜଣା ଅଜଣା
ଦୂରକୁ ନିକଟ କରେ
ପରକୁ କରେ ଆପଣା ।
ଅବୁଝା, ନାଉରୀ ସେ ରେ ଅଘାଟରେ ତରୀବାନ୍ଧେ

ପାଷାଣର ହିଆ ଚିରି ଦୂରେ ଥାଇ ମାୟା ଫାନ୍ଦେ
ଭଲ ମଣେ ଲୋକ ଗଞ୍ଜଣା ।
ତା ଲାଗି ମଧୁର ଯେତେ ବେଦନା ଦାଉ
ଜୀବନ୍ତ ମରଣେ ତାର ଜୀବନ ଭାଉ
ମଧୁ ଯାମିନୀ ତୋଷେ ଏ
ମଧୁ ପାରଣା ॥

॥ ୩ ॥

କେ ଦିଏ ଆଗୋ ଆଘାତ ମୋ
ଖୋଲା ଦୁଆରେ
ମୁଁ ଥାଏ ଯେ ଏକା କି ଯୋଗେ ଏ ଦେଖା
ଦେଇଯାଏ ଖୋଜି କାହାରେ ।
ପାଶେ ପାଶେ ବାଜେ ତା ପାଦ୍ ନୂପୁର
ପାଶେ ଥାଇ ପୁଣି ଯାଏ ଦୂରୁଁ ଦୂର
ଯାଏ ଯଦି ଶେଷେ କିପାଇଁ ଆସେ ସେ
ବସାଇ ମୋତେ ତା ଦୁଆରେ ।
କବରୀ ବନ୍ଧୁଁ ତା ଲୋଟି ଲୋଟି ନାହିଁ
ଅଯତନେ ଖୋଷା ନିଆଳୀ
ଫୁଲ ପରିମଳେ ଅଙ୍ଗ ପରିମଳ
ଗନ୍ଧବହ ସୁଖ ସଞ୍ଚାଳି
ଅଳପ ସରମେ ରଙ୍ଗିମା ମରମେ
ଦିଶି ଯା ନ ଦିଶେ ଆହାରେ ।

॥ ୪ ॥

ବିଜୁଳି ମାରିଲା ଘନ ଘୋର ବନେ
ବିଜୁଳି ମାରିଲା ଘନେ
ଏ କାଳରେ ଧନୀ ବିଦେଶେ ରହିଲା
ପଡ଼େ ନା କି ମୁଁ ତା ମନେ
ବିଜୁଳୀ ମାରିଲା ଘନେ
ଏକା ଏକା ଆଜି ଛନକା ଲାଗେ ଏ ଛାତିରେ

କଣ୍ଠ ହାର ଆଜି ଆଲିଙ୍ଗନ ମାଗେ
ଝୁରି ମରା ନିଶା ରାତିରେ
ସରେନା ଲୋତକ ଅବିରଳ ଝରେ ନୟନେ
ପଥ ଖୋଜି ଅନୁ ସରଣେ
ଆଗୋ ପ୍ରିୟ ମୋର ଏ ନିଜନ ନିଶି
ପାହୁଥିବ ତୁମ କେସନେ ॥

॥ ୫ ॥

ଯେତେ ମୁଁ ଢ଼ାଳିଲି ଅଶ୍ରୁଜଳ
ଫୁଟିଲାନି ଚିତ୍ତ ଶତଦଳ
ଦେଉଳ ଦୁଆରୁଁ ନିରାଶେ ଫେରିଛି
ଏଇ ହେଲା ଶେଷେ ପୂଜାଫଳ
ଫୁଟିଲାନି ଚିତ୍ତ ଶତଦଳ ।
ହାତେ ଥିଲା ଶଙ୍ଖ ବାଜିଲାନି ମୁଖେ
କେତେ ନିଦ୍ରା ଯାଅ କହ କେଉଁ ସୁଖେ
ହେଉ ନ ହେଉ ଏ ଦୁଃଖଭାରା ଲଘୁ
ମୋ ଶରଣ ସେହି ପାଦତଳ ।

॥ ୬ ॥

ନିଜନ ଏ ଘନ ଘୋର
ଗଭୀର ରାତି
ବକୁଳ ବାସନା ମୁକୁଳା ଦୁଆର ଝୁରେ
ବନ୍ଧୁ କାହାନ୍ତି
ଏ ଗଭୀର ରାତି ।
ପାଶୋରା ସ୍ୱରର ହଜାଉଛି ସିନା ଖିଅ
ମଧୁର ଲାଗେ ତା କାରୁଣ୍ୟ
ପ୍ରିୟ ହୁଁ ସେ ଅତି ପ୍ରିୟ
ଚକୋର ଭୁଲିଲେ ଜୋଛନା ପୀରତି
ନାହିଁ କି ସେ ନିଶି ପାହାନ୍ତି
ଖାଲି ନିଶି ଗରଜନ
ବନ୍ଧୁ କାହାନ୍ତି ॥

॥ ୭ ॥

ଆଉ ନାହିଁରେ ସଜନୀ

ବୃନ୍ଦାବନେ ବଂଶୀ ବାଜଣା

ସଞ୍ଜ ଦେଖି ପାଣି ଅଣା ଗୋ

ଛାଇ ଦେଖା ଛଳନା ।

ହେଲେ ହେଉ ପଛେ ମୋତେ

ଯମୁନା ମନା

ଅପବାଦ କଲିଣି ମୁଁ

' ଅଙ୍ଗ ମାଜଣା

କୁଞ୍ଜ ମାନ ସବୁ ଡେଙ୍ଗିଲାକୁ ସିନା

ଲାଗେ ଆଜି କୁଳ ଚେତନା

ଆଉ ନାହିଁ ବଂଶୀ ବାଜଣା

॥ ୮ ॥

ଯେତେ ଥାଏ କହିବାର କହି ପାରେନା

ମଉନ ସହିବି ପାଞ୍ଚେ ମନ ମାନେନା ।

ଶାଶୁ ନଣନ୍ଦରେ କିଏ କରିନି ବା ସଂସାର

କାହିଁ କିଏ କେତେ ନାଗରା ପିଟିଛି

ଗୋପପୁର ହାଟ ବଜାର

ସୁନ୍ଦରୀ ପଣକୁ ଦୂରୁଁ ମୋ ଜୁହାର

କୁଞ୍ଜ ଗଲେ ଆଉ ଆସେନା ।

ଫଟା କପାଳକୁ ମୋର ପାଷାଣ ଛାତି

ଗୁରୁ ଗଉରବକୁ ବା କାହିଁ ଛି ରାତି

ଭାଳି ହେଉଥିଲେ ମୋର

ଦିନ ଯାଏନା ।

॥ ୯ ॥

କି ବୋଲି ଗାଏଁ ମୁଁ ମୋର
ବେଳା ହେଲାଣି
ସଞ୍ଜ ଅନ୍ଧାର ନ ଆସୁଁ
ଦିଅ ପ୍ରିୟ ବିଦା ମେଲାଣି ।
ନୟନ ଭରନା ଏତେ ଲୋତକେ ଆଉ
ପିଛିଲା କରନା ପଥ ଥାଉ ଗୋ ଥାଉ
ଦୂରାନ୍ତର ପଥୁଁ କିଏ
ଡାକ ଦେଲାଣି ॥
ଦିନ ଶେଷେ ଭାଙ୍ଗିଲାଣି ଉଛବ ମେଳା,
ଘାଟ ନାଉରୀ ବୁଝେନା ବେଳା ଅବେଳା
ଅଞ୍ଜଳି ଭରୁ ନ ଭରୁ
ଦିଅ ମେଲାଣି ॥

॥ ୧୦ ॥

ସହୀ, ମୋ ଦୁଃଖ ଜାଣୁନି କେହି
ପରାଣ ପ୍ରିୟ ମୋ ଆନ ଘରେ ଯାଏ
ମୋହରି ଅଗନ ଦେଇ ।
ସୁପାତି ଶେଯେ ମୋ ଯତନେ ରଚିଲି
ନିଶି ପୋହାଏ ସେ କାହିଁ
ବାସକ ସଜ୍ଜା ମୁଁ ବିଫଳେ ବଞ୍ଚିଲି
ଫେରି ସେ ଦେଖିଲା ନାହିଁ
ସୁଖ ମୋ ହେଲାଣି ସପନ
ଘୁମ ଢୁଳୁ ଢୁଳୁ ନୟନ
ସରମ ରଙ୍ଗା ତା ମୁଖ ଫେରାଉ ସେ
ମୁଁ ବଞ୍ଚେ ମୋ ଲାଜ ନେଇ
ଥରେ, କହୁକି ତା କଥା ଫେଇ ।

॥ ୧୧ ॥

କଳସୀ ମୋ ଭାସି ଯାଏ ରେ ନାଉରୀ
ଭରେ ନା ପାଣି
ଅଦିନ ଯମୁନା କିରେ ବହେ ଉଜାଣି
ଦୂରେ କଳା ମେଘ ଉଠେ
ମୟୂର ମୋ ନାଚିଯାଏ
ପୁଚ୍ଛ ତୋଳି ଆଉ ତୁଠେ
କେଉଁ ନଟ କୂଟେ ଘାରି ହୁଏଁ ମୁଁ ରେ
ଜାଣି ନ ଜାଣି ॥
ଘରେ ମୋ ଶାଶୂ ନଣନ୍ଦ
ପାତିଥିବେ କେତେ ଛନ୍ଦ
ଫେରାଇ ନେ ରେ ତୋ ନାବ
ଥାଉ ତୋର ନୂଆ ଶିଖା
ନାଆ ବାହାଣି ॥

॥ ୧୨ ॥

ଏଇ ପଥେ ପଥେ ଯାଆରେ ବିଦେଶୀ
ଏଇ ପଥେ ପଥେ ଯାଆ
ଅଚଲା ଏ ପଥ ଏ ପଥେ ଆସ ନା
ଏକାକିନୀ ମୁଁ ମୋ ସାହା,
ତରୁଣ ବିଦେଶୀ ତୋର
ପଥ ଦେଖି ଚାଲି ଯାଆ ।
ଦାରୁଣ ଏ ପଥ ଚଲାରେ ପଥିକ
ଆଗେ ଏଇ ଘୋର ବନେ
ସଞ୍ଜ ଅନ୍ଧକାରେ ହଜି ବସିଲେ ତୁ
ମାୟା ଲାଗେନା କା ମନେ ।
ଏ ପୁରେ ନାହାନ୍ତି କେହି ମୋ ଦୋସର
କେ କହେ ମୋ ପାଶେ ଥାଆ ॥

॥ ୧୩ ॥

ଆଲୋ ଲୋ ସହୀ,
କେଣିକି ଯାଉ ପଦେ କଥା ନ କହି ।
ପରବତ ଶିଖରେ ଫୁଟିଲା ମଲ୍ଲୀ
ପାକଲା ପାନ ଖିଲେ ଶରଧା କଲିରେ
ପାହାନ୍ତି ନିଶା ଛାଣି ହେଲା ସପନ
ହସି ମୁଁ ଦେଲି ଯାହା ନ ବିଡ଼ି ମନରେ
ବୋଇତ ବାହି ନେଲି ଦରିଆ ସରି
ତେରଛ ଆଖି ଦେଖା ଅଳପ କରି
ବଣିଜ କାରବାର କଉଡ଼ି ଗଣା,
ଯେତେ ଗଣିଲି ହେଲା ଗୋଟିଏ ଊଣା
ନାହିଁ ଭରଣାରେ ॥

॥ ୧୪ ॥

ଏ କି ଅପକର୍ମ କଲି ରେ ସଙ୍ଗାତ
କି ଅପକର୍ମ ନ କଲି
ନବ ବୟସୀର ଦରଦର ହାସ
ଦେଖି ଯାହା ଭୁଲିଗଲି ।
ଏଡ଼େ ଫାନ୍ଦେ ପଡ଼ିଗଲି ॥
ଅଲତା ରାଗକୁ ଲୋଭାଇ ବସିଲି
କୃଟ ତା କେ ପାରେ କଳି
ପାଦ ଧରି କୋଳେ କି ନାଆଁ ଲେଖିଲା
ଲାଜ ଭୟେ ସିନା ମଲି ରେ ସଙ୍ଗାତ,
ଯଉବନ ମଦ ଛୁଇଁଛି କି ନାହିଁ
ଆଜ ହୁଁ ଏଡ଼େ ଛୟଳୀ
ଆଡ଼ ଆଖି କୋଣେ ଚାହିଁ ଦେଇଗଲା
ପାଷାଣ ଗଲା ତରଳି ରେ ସଙ୍ଗାତ
କି ଅପକର୍ମ ନ କଲି ॥

॥ ୧୫ ॥

ରଜନୀ ନ ପାହୁଁ ଆଜି ଏ କି ବରଷା
ନିଠୁର ରେ
ଶୀତ ପରଶା ।
ଯାହା ଥିଲା କାଲି ଏତେ
ଚିତ୍ତ ସରସା
ହାୟରେ ସେ ହେଲାଣି
ଭଗାରି ହସା
ବାଜେ ନା ପୟରେ ଆଉ
ନୂପୁର ରେ ।
ଉଦୟାଚଳେ ଉଠେ ନା
ରଙ୍ଗିମ ଜ୍ୱେଉ
ଅଧରେ ଲିଭିଛି ହସ
ନ ଦେଖୁ କେହୁ,
କି ବୋଲି ଗାଏଁ ତୋ ଗୀତ
ବେସୁରରେ
ନିଠୁରରେ ॥

॥ ୧୬ ॥

ଯାଆରେ ପରଦେଶିଆ ମନ ଉଣା କାହିଁକି
କଳସ ନୂଆଁଣ ଠାଣି ଗଲାଣି ତ ପାଣିକି ।
ଗୋପନ ମନର କଥା ପକାନାରେ ପଦାରେ
କାନି ପଣନ୍ତ ଫିଟି ମୋ ଲାଗିଲାଣି କଣ୍ଟାରେ
କୁଳ କୁଳବତୀ ବୋଲି ଆଉ କିଏ ନାହିଁ କି ?
ପ୍ରିୟ ବୋଲି ଡାକି ଦେବି
ଭାଳି ହୁଏ ମଉନେ
ଦେଖାରେ ଅଦେଖା ପ୍ରୀତି
କେବେ ବାକି ନିଉନେ,

ନ ଫୁଟି ଫୁଟିଲା ହସ
ଭଲ ଲାଗେ ଜାଣିକି ।

॥ ୧୭ ॥

ଆସିଥିଲି, ଏବେ ପୁଣି ଅଇଲି
କୁସୁମ ଚନ୍ଦନ ଚର୍ଚ୍ଚା ଆଉ ପରା କହିଲି ।
ଭାବ ପୀରତି କି ମୋହ
ସେ ଦିନୁ ଏ ଅଙ୍ଗନେ
ନ କହିଲା କଥା କୁହା
ଲାଜ ନୁଆଁ ନୟନେ,
ପୁରୁଣା ହେଲେ ବି ନୂଆ
ନ ହେଲେ ବି ସହିଲି ।
ଜୋଛନା ଉଠିଛି ମାତି
ନୋହୁ ଏ ରାତି ପାହାନ୍ତି
ପହିଲି ରାତି ଏ ହେଉ
ପୁଣି ପୁଣି ପହିଲି ।

॥ ୧୮ ॥

କହନା କହନା ଆଉ ରେ
ଉଚ୍ଛୁଳା ପୀରତି ମଉଳା ଦିନେ
କୋକିଳର କୁହୁ ନୀରବିଲେ ଅରେ
ଆଉ କି ଆସିବ ବସନ୍ତ ଦିନେ ।
ଯାଇ ନଥିବ ଗଳ୍ପୁ କଙ୍କଣ ଚିହ୍ନ
କେ କରିବ କାହା ପଥ କଣ୍ଟକାକୀର୍ଣ୍ଣ
ଅପାଶୋର ମତି ଯା ଥିଲା ସେ ଦିନ
ଆଜି ତାର ରୀତି ଦିଶଇ ଭିନ୍ନେ ।
ଅନାୟଭେ ଚିର ମୋର ଝୁରୁକି ତ ନିସତେ
ଗୋପନ ତା ପାଦ ଦେଖେଁ ପଥେ ଆଉ ବିପଥେ,
କିଏ କହେ ଦୁଃଖିନୀ ମୁଁ
ପ୍ରିୟ ବିହୀନେ ।

॥ ୧୯ ॥

ଗଙ୍ଗା, ଗଙ୍ଗା,

ଶାନ୍ତ ମଧୁର, ସୌମ୍ୟା ରମ୍ୟା

କେଚିତ୍ କୁଟିଳା ଭ୍ରୂଭଙ୍ଗା

ଧାତ୍ରୀ ସ୍ୱରୂପିଣୀ ଗଙ୍ଗା ।

କେବେ କେଉଁ ବେଶେ ଅବତରି ତୁ ଲୋ

ଗଢ଼ିଲୁ ଭାରତ ବର୍ଷ

ସ୍ୱର୍ଣ୍ଣ ଶସ୍ୟେ ପୂର୍ଣ୍ଣ ଏ ଦେଶେ

ଉପୁଜିଲା ମହା ହର୍ଷ,

ନାହିଁ ସଂକଟ ଲଂଘିଛୁ ବାଧା

ହିମଗିରି କୋଳୁଁ ମହୋଦଧି ଯାଏଁ

ସବୁରି ଆରାଧ୍ୟା

ପୁଣ୍ୟା ସୁଧାଙ୍ଗିନୀ ଗଙ୍ଗା ॥

ରୁଦ୍ରାଣୀ ତୁ ଲୋ ହୁଅନା ଦାରୁଣା କୋପନା

ପ୍ରଳୟ ପୟୋଧି ଜଳେ କେ କଲାଣି ସନ୍ତରଣା

ଅକରୁଣା କଲେ  କଲ୍ୟାଣି ତୋତେ

କେ କହେ ଜନନୀ ଗଙ୍ଗା ॥

॥ ୨୦ ॥

ଆସ  ଶରତ ସନ୍ଧ୍ୟା

ଧାନ କ୍ଷେତେ ଶିରୀ ସମ୍ଭାରେ

ଉଚ୍ଛୁଳ ରେ ମଧୁଛନ୍ଦା ।

ଗଗନାଙ୍ଗନେ ଉର୍ମି ମେଲିଛି

କାନ୍ତିର ଭରା ଜୁଆର

ପୁରୁଣା ଧରଣୀ ଉଛବେ ଖେଳେ

କେତେ କେତେ ନୂଆ ନୂଆର,

କୁସୁମ ଅର୍ଘ୍ୟ ଯାଚି ବୁଲେ ଆଜି

ସଞ୍ଜ ରଜନୀଗନ୍ଧା
ଆଗୋ ବିଶ୍ୱବନ୍ଦ୍ୟା ।।

।। ୨୧ ।।

ହାୟରେ ବିରାଟ ଆଶାରେ
ଏକ ନ ପୂରୁଣୁଁ ଆନ ଦେଖାଦିଏ
ଏ ଦୁଃଖ କହିବି କାହାରେ ।
ଧୂଳିର ନାଗୁଣୀ ଟେକି ଥିଲେ ଫଣା ଆକାଶେ
ମାଟିର ଛାଇ ତା ମାଟି ବାହୁନି କି
ଛାଡ଼େ କି ରେ ମାଟି ମାୟା ସେ
ସୁଖ ଖୋଜି ମୁଁ ରେ ତୃପତି ହରାଏଁ
ନାହିଁ ମୋର ସାଥି ସାହାରେ ।।
ନାହିଁ ଥାଉ ବାସ ପଲାଶେ
ଫୁଟେ କେବେ ସେ ନିରାଶେ
ପଥର ପଡ଼ିଲେ ସହି ବୋଲୁଥିଲେ
କି ଲାଭ ସେ ଦିହ ମୁହାରେ ।।

।। ୨୨ ।।

କାହିଁ ପୋହାଇଲ ରାତି
ଢୁଳୁ ଢୁଳୁ ଆଖି ଫେରି ଚାହାଁ ଦେଖେ
ମଉଳା ଶ୍ରୀମୁଖ କାନ୍ତି ।
କାହା ଭାଲପଟ ସିନ୍ଦୂରେ ମଣ୍ଡିଛ
ଅଳସ ଶ୍ରୀଅଙ୍ଗ ଗୋଟି
ଅଧର ତାମ୍ବୁଳ ରାଗ ଫିକା ଦିଶେ
କା ଅଧର କଲା ଲୋଟି,
କେତେ ସୁଖେ ଥିଲ ମାତି ।।
ସକାଳ କୋକିଳ ଡାକ ନ ଶୁଣକି
କେବେଠୁ ହେଲା ପାହାନ୍ତି
ରହ ବନ୍ଧୁ ରହ ଆଖି ଭରି ଦେଖେଁ
ସହୁ ବା ନ ସହୁ ଛାତି ।

॥ ୨୩ ॥

ଏତ ବଡ଼ ଆଚମ୍ଭିତ ରେ
ଏତ ବଡ଼ ଆଚମ୍ଭିତ
ନଈରେ ଭାଙ୍ଗିଛି ଅଦିନ ଲହଡ଼ି
ହିତକୁ ବା ବିପରୀତ ରେ-
କାହା କରମ କୁ ଭାସେ ପଥର ଜଳେ
ଜଳ ନାହିଁ ବୁଡ଼ି ମରେ କେ ବା ଅତଳେ
ଶିଳ ଶିଳା ସବୁ ଉଡ଼ିଲେ ଗଗନେ
ଇଏ ବା କେଉଁ ଚରିତ ॥
ଦିବାଭାଗେ ଘୋଟି ଆସେ
ଘନ ଘନ ଘନ କୁହୁଡ଼ି
ହାତୁଁ ବି ତ ଖସି ପଡ଼େ
ହାତେ ଥିଲା ଲଉଡ଼ି,
ଆଉ ଲୁଚକାଳି ଖେଳା
ନୁହେ ସେତ ଉଚିତ ॥

॥ ୨୪ ॥

ତୁମେ ଜାଣନା କି ପ୍ରଭୋ ?
ହେ ମୋର ଅନ୍ତରଯାମୀ ।
ମନୋରଥ ମୋର ଅନାୟତ୍ତେ ଉଡ଼େ
ଆକାଶ ଅବନୀ ଦିବସ ଯାମୀ ।
କାହିଁ ନାହିଁ ଶଙ୍ଖ ମଣ୍ଡଳ
କାହିଁ ସେତୁ ବନ୍ଧ ଗଙ୍ଗା ବାରାଣାସୀ
ଚକ୍ରତୀର୍ଥ ପୁଣ୍ୟ ନିର୍ମଳ
ଅଥୟେ ଘୂରିଛି ଧ୍ରୁବଲୋକ ଖୋଜି
କାହିଁ ତୁମ ନିତ୍ୟଧାମ ହେ ସ୍ୱାମୀ ॥
କୋଟି ଗ୍ରହ ତାରା ଜ୍ୟୋତି ରାଶି ରାଶି
ଯେତେ ଖୋଜେଁ ତୁମେ ରହିଲ ଉଦାସୀ

ତୁମ ମନ ଯଦି କିଣି ନ ପାରିଲି
କି ଦୁଃଖେ କହିବି ନମାମି ॥

॥ ୨୫ ॥

ଆରେ ନାଉରୀ
ଏ ଘାଟରେ ନ ଲଗା ତରୀ
ଭଉଁରୀ ଖେଳେ ମାତିଛି
ନୀଳ ଲହରୀ;
ଅନ୍ଧାର ପାତି ରଖିଛି
ଧରଣୀର ଯେତେ ମାୟା
ଆକାଶ ସରି,
କି ବା ଆଉ କିଏ ଦେବ
ଅଞ୍ଜଳି ଭରି ॥
ନିଶୀଥ ଆନନ୍ଦ କାଲି ନ ଥିବ ଦିନେ,
ମରଣ ମୁଁ ଲୋଡ଼େ ନା ରେ ଏ ସୁଖ ବିନେ
ଅଳସ ତୋ ଭାଙ୍ଗିଥାଉ
ନ ପାହୁଁ ଶର୍ବରୀ ॥

॥ ୨୬ ॥

ଏତେ କଥା ଥିଲା ମନେ
ଦିନେ ତୁ କହିଲୁ ନାହିଁ ରେ
ଏତେ ସୁନା ସପନକୁ
କାହିଁରେ ତୋ ରାତି କାହିଁରେ
ଅପାଙ୍ଗକୁ ଏଡ଼େ ସଲକ୍ଷ ମଣିଲୁ ଧନ୍ୟରେ
ଅ-ଧର କି କେବେ ଧରା ଦେଇଯାଏ
ଲୋଟୁଥିଲେ ଏ ଅବନୀରେ,
ଦିନ ଯିବ ଚାହିଁ ଚାହିଁ ରେ ॥
ଲୋତକ ଜଳେ କି କେବେ
ଫୁଟିଲାଣି ଫୁଲ ରେ,

ମରୀଚିକା ସିନା ମରୁର କୁହୁକ
କିସ ତା' ଜୀବନ ମୂଳ ରେ,
ସାର ହେଲା ପଛେ ଧାଇଁ ରେ ॥

॥ ୨୭ ॥

ଏ କି ରେ ମୃଦଙ୍ଗ ବାଜେ
କେମିତି ଗାଇବି ରାଗ ସଂଗୀତ
ନିତି ମରୁଥାଇ ଲାଜେ ।
ଫୁଟି ଜାଗୁନିରେ ତୀର କଦମ୍ବ
ଗୋପାଙ୍ଗନା ତା ପାଦୁଁ ହରାଇଛି
ଅଳସ ଗମନ ଦମ୍ଭ
ମୟୂର ଭୁଲିଛି ନୃତ୍ୟ ବିଳାସ
ବଂଶୀ ବାଜେ ନା ଆଉ
ଯମୁନାରେ ନାହିଁ କଳ କଲ୍ଲୋଳ
ଯା' ଥିଲା ମୋ ସବୁ ଯାଉ,
ଯୋଗ ସାଧନା ମୋ ଭାଙ୍ଗେ ॥

॥ ୨୮ ॥

ଆଜି ସନ୍ଧ୍ୟା ତୁଳସୀ ମୂଳେ
ଯେ ଦୀପ ଜାଳିଲ ସ୍ୱର୍ଣ୍ଣ ଶିଖା ତା
ଆଲୋ' ଦିଏ ମୁକ୍ତି ତୁଳେ ।
ଘରେ ଘରେ ଏ ଯେ ଶଙ୍ଖ ଆଳତି
ଅଗୁରୁ ଧୂପର ଘଟା
ମାଟି ଧୂଳି ମାୟା ତାରାଲୋକେ ଝଳେ
ଛୁଟେ ରେ ଦୀପ୍ତି ଛଟା ।
ଅନ୍ଧାର ଯାଏ ଉତ୍ସବ ଲାଗେ
ଏ ତଟିନୀ କୂଳେ କୂଳେ ॥
ରଖି ଦେରେ ତୋର ତନ୍ଦ୍ରାଳସ

ଅଧରେ ଫୁଟୁରେ ପାଶୋରିଲା ହସ
ମାଟିର ପ୍ରଦୀପ ସ୍ୱର୍ଣ୍ଣ ଶିଖାରେ
ଜଳ କୁଳବଶ କୁଳେ ।।

।। ୨୯ ।।

ବନ୍ଧୁଆରେ,
ଏ ପୁଣି କିସ ବିପତ୍ତି
ଜଳ ମାଗୁଥିଲେ ଅନଳ ବରଷେ
କାହିଁ ରେ ଚାତକ ଗତି !
କରମେ କି ଅଛି ଲେଖି
ପିଆସିନୀ ମୁହିଁ ଜଳଦ ମଣିଲି
ମହାକାଶ ନୀଳ ଦେଖି,
ଦେଲି ଯାହା ଛନ ମତି ।।
ତୃଷା ଯଦି କଣ୍ଠେ ଏମିତି ମଧୁର
ଥାଉ ନା ସେ ଦିନୁଁ ଦିନେ
ଦହି ଦେଉଥିଲେ ବିଜୁଳି ଚମକେ
ସେଇ ତ ମରଣ ଦିଶେ
ନିରାଶାରେ ତୋଳେଁ ଛତି ।।

।। ୩୦ ।।

ଆତଙ୍କ ନାଶନ ବାନା ଉଡ଼ାଉଛ
ଆତଙ୍କ ତ କାହିଁ ଯାଏ ନା
ସୁଖର ସପନ ଏତେ ବେଶୀ ଭାବେ
ଦୁଃଖେ ନିଶି ମୋର ପାହେ ନା ।
ଯେତେ ଦୂରେ ଥାଅ ପାଶେ ଅଛ ବୋଲି
ଥିଲା ସିନା ମୋ ଅହଙ୍କାର
କରୁଣାରୁ ଊଣା କଲ ଯଦି ପ୍ରଭୋ,
ଅଧ ପଥେ ଘୋଟେ ଅନ୍ଧାର
ଖୋଜିଲେ ବି ଖୁଅ ପାଏ ନା ।।

ଏକା ଭଲ ଲାଗେ ଏ ଗହନ ବନେ
ଯୋଗ ଜୟ ମୋର ବସି ଏକାସନେ
ଆଉ କଛି ପ୍ରଭୁ ଜାଣେ ନା ॥

॥ ୩୧ ॥

ଥାଏ ଯଦି ମୋର ଅହମିକା କିଛି
ତୁମ ଲାଗି ପ୍ରିୟ ସେ ସିନା,
ତୁମ ପଦରଜ ଶିରେ ଲାଗିଥିଲେ
ଆଉ କେଉଁ ସୁଖ ସେ ବିନା ।
ଯା କିଛି ଥାଉ ମୋ ମାନ ଅଭିମାନ
ତୁମ ଦୀପ ତଳେ ଭଜୁଥାଇ ମ୍ଳାନ;
ଏକାନ୍ତେ ଆଉ ମୋ ନୟନ ଲୋତକ
ସଖା ତୁମେ, ଆଉ କେହିନା
ଅପମାନ ଘେରି ଯାଉ, ଦଶ ଦିଶ
ତୁମ କରତଳ ସେଇ ମୋ ଆଶିଷ
କାହା ଘେନି ମୋର ଏ ଗରବ ଟେକ
ଅନ୍ତରଯାମୀ କି ଜାଣ ନାଁ ॥

॥ ୩୨ ॥

ମୁହଁର ଅକୁହା କଥା
ନୟନ କହେ
ଲେଉଟି ଦେଖ ନା ବନ୍ଧୁ
ମରମ ଦହେ ॥
ଅମାରାତି ବୁକୁତଳେ
ନୀରବ ତାରାଳି ଜଳେ
ଚାନ୍ଦ ଦିଏ ନି କିରଣ
ଦେହ କି ସହେ ॥
ଶୁଖିଗଲେ ଅଶ୍ରୁନୀର
ବାଜେ ନା ପାଦ ମଞ୍ଜୀର
ଚକୋରୀର ମଧୁ ଆଶା
ମରେ ବିରହେ ॥

॥ ୩୩ ॥

ଆସିଛିରେ,
ପାଶୋରିଲା ପରଭାତ,
ଉଦୟ ଅଚଳେ ନବୀନ ଅରୁଣ
ନୂଆ ଜୀବନର ଆତଯାତ ।
ଅନ୍ଧକାର କାହିଁ ଲୁଚେ
ଦୂର ଦିଗନ୍ତେ ।
ତୁଟାଇ ଦେଏ ରେ ଅବସାଦ,
ସବୁ ଭାଳ ଦେଖି ଟିକଳ ରଚି ଦେ
ପଥ ହେଉ ଶୁଭ, ଅ-ପ୍ରମାଦ
ବିଘ୍ନ ଏଡ଼ାଇ ଚାଲୁ ସେ ତରଣୀ
ହେଲେ ହେଉ ଢଳ ଅକାତ ॥
ତୋର ଦେହ ମନେ ଅଛି ଯେତେ ବଳ
ଗିରିଚୂଡ଼ା ଚୂରି କରୁ ସମତଳ
ସବୁ କି ରେ ତୋର ଅଜ୍ଞାତ ॥

॥ ୩୪ ॥

ପୀରତି ଲାଗିଲେ ଥରେ ବୁଝି ହୁଏନା
ମନାଇଁ କହିଲେ ମନା ନ କରୁ ଘେନା ।
ତନୁ ମନେ ନିଆଁ ଲାଗେ
ଅବେଳେ ବି ତୃଷ୍ଣା ଜାଗେ
ଥରେ ହରାଇଲେ ଚିର ଆଉ ଫେରେ ନା ॥
ନଈରେ ନ ଥାଉଁ ବାରି ଜୁଆର ଉଠେ,
ଫୁଟିନି କୁସୁମ ବାସ ମହକ ଛୁଟେ,
ନୂଆ ଉଦ୍‌ଭ୍ରାଣ ସରି
ଆକାଶେ ଦିନ ଯାମିନୀ ଛପି ରହେ
କାହିଁ ରେ ବେଦନା
କେହି ଜାଣେ ନା ॥

॥ ୩୫ ॥

ଅନ୍ତର କଥାଟି କହି ନି ବୋଲି କି
ଏତିକିରେ କଲ ଅନ୍ତର
ଲିଭାଇ ଦିଅ ଯେ ତୁମ ଚଲାପଥ
ଝୁରି ମରେ ମୁଁ ନିରନ୍ତର ।
ତୁମେ କି ଜାଣ ନା ପ୍ରିୟ ଏ ପରା ଚାନ୍ଦିନୀ ଯାମିନୀ
ଦମ୍ଭ ଧରି ଆଉ ରଖାଇ ଦିଏ ନା
ଜଗତେ ଯେତେ ବି ଯୋଗିନୀ
ଗୁପତ ବାରତା କା ହାତେ ପେଷିବି
କେ ପୋଛେ କା ଆଖିଝର
ଅସରନ୍ତି ଦିନମାନ ମୋ ଯାଏ ନା
ମୁଁ ହେଲିଣି ସାତପର,
ଭାଳି ହେଲେ ଯେତେ ଆଉ ଭାଙ୍ଗେ ନା ମାନ
ନିଜରେ ନିଜେ ମୁଁ ପାଶୋରି ଦେଲିଣି
କେଉଁ କୁହୁକ ଏ ତୁମର,
କାହୁଁ କର କିସ ମନ୍ତର ॥

॥ ୩୬ ॥

ଗାଇବି ବୋଲି ମୁଁ ଯେତିକି
ଗାଇ ତ ପାରେ ନା ହଜିଯାଏ ସ୍ୱର
କଣ୍ଠ ରୋଧି ଯାଏ ତେତିକି ।
କିଏ ଶିଖାଇବ ଆଜିର ଦିନକେ
ଆଜି ଆଳାପର ମାଧୁରୀ
ତୁମରି ପାଇଁ କି ଯୋଗୀପଣ ମୋର
ଅଦିନେ ଉଠିଛି ଅଙ୍କୁରି
ସଞ୍ଜ ଓ ସକାଳ ସେଇ ମୋ ଆଇତି
ସଙ୍ଖାଳୀ ଆଉ ମୋ ସେତିକି ॥
ଆନ ପାଇଁ କାନ୍ଦି ନ ଜାଣିଲେ ଦିନେ

କାହିଁ କା ଆଦର ଆଖି ପାଣି ବିନେ
ଜାଣୁ ନା କି ପ୍ରୀତି ରୀତିକି ॥

॥ ୩୭ ॥

ମଉଳି ଆସିଲା ସଖୀ ଜୋଛନା କାନ୍ତି
ଛନ ଛନ ମନ ମୋର
କାହିଁ ଗଲେ ଚିତ୍ତଚୋର
ପିଆସୀ ଚକୋରୀ ମୁରୁଛି ପାରେ ନା
ମେଣ୍ଟି ନି ପିପାସା କଣ୍ଠ
ହେଲା ପାହାନ୍ତି ॥
କାହିଁ ତ ସରି ନି ମୋର ଜାଗର ଜଳା
ଚାହିଁ ଚାହିଁ ତା ସରଣୀ
ସବୁ ସତେ ଯାଏ ନିଷ୍ଫଳା
ଏମିତି ମରଣ ସେଇ ମୋର ଭଲ
ସେଇ ମୋର ପରମ ଶାନ୍ତି
ଶୀତଳାଏ ରଜନୀର କେ ସହେ ତାତି ॥

॥ ୩୮ ॥

ଯା କିଛି ଦେଖିଲୁ ଦେଖି ନ ଶିଖିଲୁ
ସବୁ ତ ମଣିଲୁ ମୋର ରେ ।
ବୁଝିଲୁନି କିସ ଏହୁ ବନ୍ଧନ ଡୋର
ଛାୟାଲୋକ ଦେଇ ଜାଲ
ପାତିଛି କେ କିରାତ
ତଣ୍ଡୁଳ କଣାର ଲୋଭ ଯାଉ ନାହିଁ
ସରି ତ ଯାଇ ନି ପ୍ରଭାତ,
ବେଳ ଥାଉଁ ଥାଉଁ ଶିଖାଇ ଦିଏ କେ
କପୋତୀ ବିଳାପ ବାହୁନା
ଯାଉ ପଛେ ଦିନ ଯାଉ ନା
ତୋତେ ନ ବୋଲିବୁ ତୋର ରେ,
ଆସେ ସେ ପ୍ରଳୟ ଘୋର ରେ ॥

॥ ୩୯ ॥

ଆଜି ସଞ୍ଜ ଗଗନେ ଲୋହିତ ମେଲିଛି ଫୁଆରା
ଚୁମ୍ବନ ଶେଷେ ରହିଯାଏ ସଖୀ
ତୋ ଅଧର ରାଗଧାରା ।
ଏ ମଧୁ ଲଗନେ ନିରାଶା ବି ଲାଗେ ମଧୁର
ତୁମେ ଥିଲେ ପାଶେ ପୂରାଇ ଦେବା ଗୋ
ଯା ଥିବ ବିଧିର ଅପୂର;
ଆଉ କିଛି ଥାଉ ନାହିଁ ଏଥି ଅବା
ମୋ ହାତେ ଥାଉ ଗୋ ତୁମ କରତଳ ଛବା
ତାଇ ଘେନି ମୋର ଅମର ଗୋଧୂଳି
ଯୁଗ ଯୁଗାନ୍ତ ସାରା ॥

॥ ୪୦ ॥

ଆଉ ନା ରେ,
କହ ନା, କହ ନା ସଖୀ, ଆଉ କହ ନା,
ଜାଣି ନ ଥିଲି ସେ ଜାଣେ ଏତେ ଛଳନା,
ସରିଛି ଏକାନ୍ତେ ମୋର ଦିନ ଗଣନା ॥
ରାଜାର ଦୁଲାଳ ସେ ରେ କପଟ ତା ବେଉଷା,
ମୁଁ ନୁହେ ରାଜ ଦୁଲାଳୀ, ମୋହେ ନା ମୋ ଏ ଭୂଷା
କପାଳ ଆଦରି ସହେଁ ହେଉ ଯେତେ ଲାଞ୍ଛନା,
କହନା କହନା ସଖୀ ଆଉ କହ ନା ।
କଥା ଦେଏ ରେ ସଜନୀ
ଦୂତୀପଣ ଦେବୁ ପାଶୋରି
ସବୁ ଦିନକୁ ମୋ ଉଛବ ସରିଛି
ଜୀବନ୍ତ ମଲାଣି କିଶୋରୀ
ତୁ ବି ଲୋ ହୋଇଥା ମୋ ପାଶୁଁ ଅନ୍ତର
ଚାଟୁ ଗୀତର ବି ତ ତୋର
ଏତେ ବେଦନା ॥

॥ ୪୧ ॥

ଥାଉ,
ରଖ୍ ଦେଏ ରେ ତୋ କୁଟକାଳି ଖେଳ
ଦେଖୁନି କି ଆସିଲାଣି ଯିବାର ବେଳ
ଅଗନାଗ୍ନି ବନସ୍ତରେ ବସିଛି ହାଟ
ସଉଦା ସାରିଥା ବୋଲି ପଡ଼େ କୁହାଟ
ପିମ୍ପୁଡି ଗଳିବାକୁ ନାହିଁରେ ବାଟ
କେହି ନ ଥିବେ ରେ ସାହା ପଡ଼ିଲେ ମେଳ ॥
ଆସିଥିଲୁ ଏକା ଏକା ଯିବୁ ଏକାକୀ
ତଳେ ପଡ଼ି ଲୋଟୁଥିବ ସୁରା ଓ ସାକୀ,
କେହି ନ କହିବ କି ତୋ ରହିଲା ବାକି
ଭାଇ ବନ୍ଧୁ ସାଙ୍ଗ ସୁଖ ଭାଙ୍ଗିବ ମେଳ
ରଖ ଏ ଖେଳ ।

॥ ୪୨ ॥

ମୋର ସରିଛି ଦିନ,
ଶେଷ ଆଲୋକର ରେଖା ହେଲାଣି କ୍ଷୀଣ
ଜୀବନେ ଯା ଆଶା ଘେରି ତନ୍ଦ୍ରିମା ଆସେ
ଝୁରାଇ ପାରେ ନା ଅଶ୍ରୁ ଆତଙ୍କ ତ୍ରାସେ,
ସଞ୍ଜ ଦେହେ ଯେତେ ଫୁଲ
ହେଉ ଆଉରେ ଆକୁଳ
ପାରେନା ପ୍ରବୋଧି ତାରେ
ସତରେ ମୁଁ ଅର୍ବାଚୀନ ॥
କହିନି ମରମ କଥା ଖୋଲି କାହାରେ
ସୁନ୍ଦର ଧରଣୀ ଛାଡ଼ି ଯାଏଁ ମୁଁ ହା'ରେ ।
ଜାଣିଲିଣି ସଭିଏଁ ମୋତେ ଉଦାସୀନ ॥ ୧ ॥

॥ ୪୩ ॥

ଆଗୋ, ନାରୀ,
ନ ବୁହା ନୟନ ବାରି

ଅତି ସୁକୁମାରୀ ସଞ୍ଜ ମାଳତୀ
ଫିକା ପଡ଼ିଯିବ ଗୋଲାପ ମୋ କତି
ବକୁଳ ବାସନା
ବିଫଳ କର ନା
ମୋ ପରଶେ ହେବ ଘାରି ॥
ଭଲ ମଣିଲେ ତୁ କହିବି ଏତକ
ସାଜେ ନା ମୋ ଭାଲେ ଚନ୍ଦନ ତିଳକ
ମାନ ଅଭିମାନ ନାହିଁ ମୋର ତିଳେ
ମୋ ଦୁଃଖ ତ ଅସୁମାରୀ ।

॥ ୪୪ ॥

ଦୂର ଚଉପାଶେ ଘେରେ ଶଇଳମାଳା
ନୀରବେ ଝିମାଏଁ ଏ ଯେ ଅତିଥି ଶାଳା
କିପାଇଁ ତୁ ବସୁ ଝୁରି ଅବୁଝା ବାଳା ।
ଲତା କୁଞ୍ଜ ଭାଙ୍ଗି ପଡ଼େ ଯୂଥୀ ସୁଆଗେ
କବରୀ ସାଜୁନୁ ଧନୀ ଅନାଦରେ
ଭଲ କି ଲାଗେ,
କରନା ରେ ସଞ୍ଜତାରା ମଳିନ
ମଉଳି ଗଲାଣି ମନଦୁଃଖେ ନଳିନ
ଜଳ ନା, ଜଳା ନା ଏ ଯେ ବିଷମ ଜ୍ୱାଳା
କିପାଇଁ ତୁ ବସୁ ଝୁରି
ଅବୁଝ ବାଳା ।

॥ ୪୫ ॥

ଯେବେ ଏତେ କଥା ଥିଲା ମନରେ
ଦିଅ ନା ଏ ପରିତାପ ଆଉ ବେଶୀ
କିଣା ଜନରେ ।
ଶୀତଳ ବୋଲି ସେବିଲି ଦୂରେ
କାଦମ୍ବିନୀ କି
ବିଜୁଳି ଚମକ ତ୍ରାସ କିଏ ଥିଲା ଜାଣି କି

ସେ ଦିନୁ ନୟନେ ନିଦ୍ରା
ହେଲାଣି ସପନ ରେ ।।
ମରଣଠୁ ବଳି ଯାତନା ରୋଗ ତ ହେଲାଣି
ଅଙ୍ଗେ ଲିଭି ନାହିଁ ଯାହା ପରତେ କେ କଲାଣି
ନାହିଁ ଅଶ୍ରୁ କାହିଁ ମୋ କଷଣ ମଜ୍ଜନରେ । - ।।

।। ୪୬ ।।

ତୁମ ପାଦତଳେ ଅଞ୍ଜଳି ପାତିଛି
ଆଶିଷ କଣାକ ଲାଗି
କିଛି ଲୋଡ଼େ ନା ମୁଁ କେମନ୍ତେ କହିବି
ଆସିଛି ସରବ ତ୍ୟାଗୀ ।
ସଂସାରେ ଥାଇ ରହେ ଉଦାସୀନ
ଏତକେ ତ କେବେ ବୀତେ ନାହିଁ ଦିନ
ଆନ ଦୁଃଖତକ ଚିହ୍ନି ନ ଜାଣିଲେ
କି ହେବ ଆଶିଷ ମାଗି ।। - ।।

।। ୪୭ ।।

କୋମଳ ମଳୟ ସମୀର
ଭଲ ଲାଗେ ନା ଶୀତଳ ପରଶ
ହେଲେ ହେଉ ଗନ୍ଧ ମଦିର
ଯାହା ଥିଲା ମୋର ମଉନ ଭାବନା
ଅରପି ଦେବ ତା ଚରଣେ
ଜାଳିଥିଲି ସିନା ସଞ୍ଜଦୀପ ସାଥେ
ସେ ବି ଗଲା ଅକାରଣେ
ଜୀବନେ ତେବେ ରେ କି ଆଶା ରହିଲା
ଆଉ ଏ ମଉନାବତୀର ।।
ଜୀବନ୍ତ ମରଣ ଆଉ ନା ପ୍ରିୟ ହେ ଆଉ ନା,
ଅଳି ଗୁଞ୍ଜରଣ ଶୁଣାନା ଏ କାଳେ
ସରିଛି ସେ ଦିନ ବାହୁନା
ତୁଟିଛି ମୋ ମାୟା ମହୀର ।। - ।।

॥ ୪୮ ॥

ଜୀବନ ପଲେ ପଲେ ଯାଏ ରେ
ଅକୂଳେ କୂଳ ଖୋଜିଲେ
ରାତି ନାହିଁ ପାହେ ରେ ॥
ପଳାଶ ଫୁଟିଲା ଯଉବନେ ବନେ
ରକତ ଉତ୍ସବ ସରିଗଲା ହାୟ
ଧୂପ ଜଳା ସଞ୍ଜ ଲଗନେ
ହରାଇଲା ସ୍ୱର ଖୋଜି ହେଉଥିଲେ
ସେ କି କେବେ ଆଉ ପାଏ ରେ ।
ସାଙ୍ଗ ସାଥୀ ଯେତେ ଗଲେ ଅପସରି
ଏକା ଭାଳି ବସେ ଆଉ କେ ମୋ ସରି
ଛାଇ ପଛେ କେବା ଧାଏଁ ରେ ॥- ॥

॥ ୪୯ ॥

ଅନାହୂତ ମୁହିଁ ଅତିଥି ଆସିଛି
ଜାଣେ ନା ବେଳ ଅବେଳ ରେ
ଅଦିନ ବାଦଲ ଦୂରୁଁ ଘେରି ଆସେ
ରଖି ଦେ ତୋ ଧୂଳିଖେଳ ରେ ।
ସୁନାର ସଂସାର ରଚେଁ ଭାବିଲି ମୁଁ
ତୋର ପୁରାଙ୍ଗନେ ସହୀ ରେ
କି ଲାଭ ସେ ତୋର ବିନା ଦାବାନଳେ
ଉପାସକ ହେଲେ ଦହିରେ
ଆର ଭଲକୁ ନ କର ଭେଳରେ ॥
ମନଲାଖି ଗଢ଼ି ନେବାଏ ମହୀକି
ଆଲୋ ସଖୀ ଆଉ ନିନ୍ଦ ନା ବିହିକି
ଉଆଁସୀ ରାତିର କୁଆଁରୀ ଜୋଛନା
ଭାଙ୍ଗୁନା ଉଛବ ମେଳରେ ॥- ॥

॥ ୫୦ ॥

ଆଉ କେତେ ବସିବି ମୁଁ ଅନୁସରି
ଜୀବନର ପୂଜାବ୍ରତ ଗଲାଣି ସରି ।
ଏ ଦିନେ ଯେ ହେଲ ପ୍ରିୟ ଦେଶାନ୍ତରୀ
କାହା ଥାଇ ପୂରାଇବି ଆଞ୍ଜୁଳା ଭରି
ମାନ ଅଭିମାନ ତୁମ ଗଲା ପଥୁଁ
ନେଇଛି ସବୁ ସଂହାରି
ତୁମ ପଥ ଅନୁସରି ॥
ମନୋରଥ ଖସି ମୋର ଲୋଟିଲାଣି ଭୂତଳେ
ଅଧିକରେ ଝରେ ଅଶ୍ରୁ ଯେତେ ପୋଛେ ଅଞ୍ଚଳେ
ଅଭାଗୀ ମୋ ଲାଗି ଝୁରି ମରୁଥାଏ
ଏକାକିନୀ କାହିଁ କୁରରୀ ॥

■■

॥ ୧ ॥

# ପକ୍ୱଶାଳିନୀ

ଯେତେ ଯେତେ ପକ୍ୱଶାଳି ନମ୍ରଶିରା
ଅତି ମନୋହର
ଦିନ ଥାଉଁ ଶୀତ ବାୟୁ ହିମମୟ
କମ୍ପେ କଳେବର;
ଗୋପନେ ପରଶି ଯାଏ ଧାନ ଶିଁଷା
ବଢାଇ ପୀତିମା
ରାମ ତଳା ସୋରିଷରେ ସ୍ୱର୍ଣ୍ଣଢେଉ
ହଜେ ପରିସୀମା
ପୂଜା ଅର୍ଘ୍ୟ ଥାଳି କେତେ ଘରେ ଘରେ
ଲକ୍ଷ୍ମୀ ବନ୍ଦାପନା
ସଞ୍ଜ ଦୀପ ଶିଖାସନେ ଜଳେ କୋଟି
ନୀରବ କାମନା ।
ଦୂର ମଞ୍ଚାପୀଠୁଁ ଶୁଭେ ବଂଶୀଧ୍ୱନି
ଜଗୁଆଳିଙ୍କର
ମତୁଆରା କରେ ନିଶି, ସୁଖ ଯେହ୍ନେ
ଏକାଇ ତାଙ୍କର ।
କେତେ ରଙ୍ଗି କ୍ଷିପ୍ରା ଏହି ଧରାଦେହେ,
କେତେ ଶ୍ରୀ ସୁଷମା
ଉଜାଗର ଆହରଣ କିଏ କହେ
ଅସଫଳ କର୍ମା ।
ସ୍ୱର୍ଣ୍ଣ ପ୍ରସୂ ଭୂମି ବୋଲି ଥିଲା ଯାର
ଦେଶେ ଦେଶେ ଖ୍ୟାତି

ଏବେ ବିତ ଫେରିଲାନି ସେ ଦିନର
  ଶୁଭ୍ର ଯଶୋଭାତି
ମାନବର ମହାସିନ୍ଧୁ ତୀରେ ତୀରେ
  କୋଟି ଶଙ୍ଖ ନାଦ
ବି-ଅର୍ଥେ ଶୁଭୁଛି ଦୂରେ କହ ନି, ସେ
  ଦାରୁଣ ପ୍ରମାଦ
ସ୍ୱର୍ଣ୍ଣ ଶସ୍ୟ ଦୂର୍ବାକ୍ଷତ ହାତେ, ଶିରେ
  ପୂର୍ଣ୍ଣ ସୁଧା ପାତ୍ର
ଦୀର୍ଘ ହେଉ ଅଭିଯାନ ଏଇତ ମୋ
  ଶୁଭାରମ୍ଭ ମାତ୍ର ।।



।। ୨ ।।

## ଆଷାଢ଼ସ୍ୟ ପ୍ରଥମ ଦିବସେ

ଧରା ଦେହେ ଅନୁରାଗ
  ଆଷାଢ଼ର ଆଦ୍ୟ ଦିବସେ
ନୀଳ ଶୈଳ ସାନୁ ତଟେ
  ଲୀଳାୟିତ ମେଘ ବିଳସେ ।
ମୟୂର ତୋଳିଛି ପୁଚ୍ଛ
  ବରଷା ବିରହ ବିଧୁର,
ବିଜୁଳି ଚମକ ଭୀରୁ
  ସବୁ ମଣେ କ୍ଷଣଭଙ୍ଗୁର ।
କାଲି ଯାହା ଥିଲା ରୁକ୍ଷ
  ନୟନ ଧର୍ଷଣ ଧୂସର
ନବୀନ ରୋମାଳୀ ପରି
  ଆଜି ଶ୍ୟାମଳିମ ସୁନ୍ଦର ।
ମେଘାଗମ ମନୋରମ
  କାହା ଚିତ୍ତ ମେଘ କାତର

ଆଲିଙ୍ଗନାକୁଳ ଫେରେ
ତଞ୍ଚଳିତ ତାଳି ପୟର ।
କାହି ରାମଗିରି କାହିଁ
କାନ୍ଦେ ଯକ୍ଷ କାନ୍ତା ବିରହୀ
ଲୋତକେ ଲୋତକ ଢ଼ାଳି
ଭସାଇବ କାହିଁ ଏ ମହୀ ।
ସାଧବ ବୋହୂର ଘନ
ଅଭିସାର, ଏକାକିନୀ ସେ
ତରଇ ସେ ସିପ୍ରା ପ୍ରାନ୍ତ
ହଜେ ରାଜପଥ ନିମିଷେ ।
ଲାଜିମାର ରଙ୍ଗରଙ୍ଗ
ଅଙ୍ଗସାରା ଯାଏ ସଞ୍ଚରି
ତ୍ରାସିତ କର ନା ବନ୍ଧୁ
ଏ ନୁହେ ଅବନ୍ତୀ ନଗରୀ ।
କୁଟଜ କୁସୁମ ଫୁଟେ ବନେ ବନେ
ଫୁଟି ପଡ଼େ ବନ ମାଳତୀ
କାହିଁ ନିର୍ଝର ଜଳ, ମୁଁ ଅର୍ଘ୍ୟ କରେ
ନବ ମେଘଦୂତ ରଚନ୍ତି ।



॥ ୩ ॥

## ଅନୁଭାବନା (ସଙ୍ଗୀତ)

କରମ ମୋର କାମ ହେଲା କି
ପାଦେ ବା କଲି କି ଅପରାଧ
ଆଶିଷ ବାରି ନ ପଡୁଁ ଶିରେ
ଉଭାଇ ଯାଏ କି ପରମାଦ । ୦ ।
ନ ମାଗୁଣୁଁ ମୁଁ ଦେଇଥିଲ ଯା
ମଣିଲି ମୋର, କି ଘୋର ଲଜ୍ଜା

ଗଉରବତକ ହେଲା ଅପମାନ
ବଡ଼ପଣ ହେଲା ଅପବାଦ । ୧ ।
ଦିନକ ଶିରୀ ଯା ଅସହନ ହେଲା
ଭଗାରି ହସିଲେ କାଳକୁ
ପର ଜନମକୁ ତପ ସାଧୁଥିଲେ
କାଳ ହୁଏ ସେ ବି ଆନକୁ
ଦେବତା ଚରଣ ସେବିଲି ଯେତିକି
ଲାଭ ହେଲା ଯାହା ଅବସାଦ । ୨ ।



## ॥ ୪ ॥

## ଆଦିରସ

ରସ, ଜୀବ ସର୍ଜନାର ଆଦ୍ୟ ଦିନୁଁ
ବିଧିର କଳ୍ପନା ରୂପାୟିତ ହେଲା ଯହିଁ,
କିଏ ସେଇ ରସଜ୍ଞାତା, ସବୁ ମନୋଭାବ ତାର
ଢାଳି ଏକଇ ବିନ୍ଦୁରେ
ରସ ନାମେ କରିଛି ଆଖ୍ୟାତ ।
ପୁଣି ସେଇ ରସଭୋକ୍ତା ରସର ଗୋପନତମ
ମର୍ମ ଭେଦି ଲଭିଲା ଯେ ତତ୍ତ୍ୱ ଜ୍ଞାନ
ଯୋଗୀନ୍ଦ୍ରଙ୍କ ମହାସିଦ୍ଧି ସମ,
ଦେଖିଲା ବିବୁଧ ଏହାହିଁ ସେ
ସକଳ ରସର ଆଦି ଉତ୍ସ ।
ତେଣୁ ଅବା ବୋଲାଇଲା ଆଦିରସ ଏହା ।
ଯିଏ ହୁଅ ଆଦ୍ୟତମ ସ୍ରଷ୍ଟା ଏ ରସର
ଘେନ ମୋର-ଏ ମୁଗ୍ଧାର ଅୟୁତ ପ୍ରଣତି ।
ନିବେଦେଁ ମୁଁ ଅନ୍ତରର ଯେତେ କୃତଜ୍ଞତା
ନିଃଶେଷେ ମୁଁ ଦେବି ବୋଲେଁ
ହୁଏ ନା ତା' ଇତି ।

ଆଗୋ ପ୍ରିୟ, ଆଗୋ ମୋ ନମସ୍ୟ
ତୁମେ ମୋର ଦୀକ୍ଷାଗୁରୁ, ଆଦି ରସ ମହାଦୀକ୍ଷା
ଲଭିଛି ଯା କେତେ ଶତ ଜନ୍ମାନ୍ତରେ
ତୁମ ପଦ ପ୍ରାନ୍ତେ, ସେଇ ତ ମୋ ଅନ୍ତସ୍ତଳେ
ସ୍ୱର୍ଣ୍ଣାକ୍ଷରେ ଲେଖା, ଯୁଗ ଯୁଗକୁ ଅଲିଭା
ସେମିତି ଅମ୍ଳାନ, ଅତୀନ୍ଦ୍ରିୟ-
ଯେହ୍ନେ ପୁଣ୍ୟୋଜ୍ୱଳ ଦ୍ୟୁତି ।
ମନେ ପଡ଼େ ସେଦିନ ମୋ
ତୁମ କରସ୍ପର୍ଶେ ଯେବେ ମୋର ଅଙ୍ଗସାରା
ଖେଳିଗଲା ମୃଦୁ ଶିହରଣ-
ଶାନ୍ତ ଜଳ ଆସ୍ତରଣେ ଅସ୍ଫୁଟ ଲହରୀ ପରି-,
ସେଦିନ ବି ଦେଖିଥିଲି ନିମୀଳିତ ନେତ୍ରେ
ଅନାଗତ କେଉଁ ମହାସୁଖ ମୋ ପୁରତେ ଜଳିଉଠେ ଝଳି,
ମୋତେ କରି ବିଶ୍ରମ୍ଭ-ବିମୁଗ୍ଧ ।
ଆଜି ବି ମାଗେଁ ମୁଁ ବନ୍ଧୁ, ସେଇ ଅନଙ୍ଗୁଳି ଲୁନ
ପ୍ରଥମ ଚୁମ୍ବନ । ମଧୁସ୍ରାବୀ ଓଷ୍ଠାଧର ପ୍ରାନ୍ତେ ପ୍ରାନ୍ତେ
ବେନି ପ୍ରଣୟୀ ପ୍ରଣୟିନୀର ସେଇ ଅନୁରାଗ,
ଯାହା ନିମିଷେ ଅନ୍ତର ହେଲେ ମଣୁଥିଲି ମୁହିଁ
ଆପଣାକୁ ଅଳକା ପୁରୀର କେଉଁ ଯୁଗାନ୍ତ କାଙ୍କର
ଶିଥିଳାଙ୍ଗୀ ଯକ୍ଷ ବିରହିଣୀ ବଧୂ-
ନଥାଉ ପଛକେ ମୋର ଦିନକ ବିରହ-ବୋଧ
କିସ ଅବା ତାହା ।
ନାହିଁଥିଲା ଜଣା ମୋତେ ଅପାଙ୍ଗ ଭଙ୍ଗିମା,
ତୁମେ କୁହ ଏଠି ଥାଏ. ମୋର ଅଲକ୍ଷିତେ ଲୁଚି
କନ୍ଦର୍ପର ପୁଷ୍ପଧନୁ ଆମଞ୍ଚନ ବିଦ୍ୟା,
କାମୀଜନଙ୍କର ହୃଦରକ୍ତ ଶୋଷଣ ପ୍ରବଣା ।
ମୋର ଉଷ୍ଣ ଶ୍ୱାସେ ପରା
ହୋଇ ପାରିଥାନ୍ତା ଦଗ୍ଧୀଭୂତ ମଦନର
ଦେହ ପରିଗ୍ରହ ଇଚ୍ଛା ଥିଲା ମାତ୍ରେ ।

ବୁଝେନା ମୁଁ କିସ ଏହା
ଯାହା ଲାଗି ତୁମେ ଅନୁଗତ ଜନ ପରି
ଯା' ଥାଏ ମୋ ନିଜ ବୋଲି ସବୁ ନେଇ
ଆପଣାର କରିନିଅ ଖାଲି ପ୍ରଶସ୍ତିବାଚନେ
ମୋତେ କରି ଏତେ ଅନାୟତ୍ତ
ଏଡ଼ିକି ଉଲ୍ଲୋଳ ।
ପୁଣି କହ ତୁମେ,-
ମୋ କୁନ୍ତଳ ଗନ୍ଧେ ହାର ମାନେ ପରା
ମଳୟର ସ୍ନିଗ୍ଧ ପରିମଳ ।
ଶୁଣେ ସିନା ଆତ୍ମସୁଖେ, କି ଦେଇ ଯେ ମୁହିଁ
ଦେବି ତାର ପ୍ରତିଦାନ ପାଇଁ ନାହିଁ ଖୋଜି,
କେଉଁ ବିଡ଼ମ୍ବନା ଏଇ ପୁଣି, ଆହା !
ନିର୍ଜନ ନିଶୀଥେ,-
ବିପୁଳା ଅବନୀ ନିଦ୍ରାମଗ୍ନା,
କିଏ ଜାଣେ କାହିଁ ଅଦିନ ଅଭିସାରିଣୀ
ଲୋଡି ବୁଲୁଥିବ ପ୍ରିୟ ଅନୁଷଙ୍ଗ ତାର
ଆଉ କାହିଁ ଚକ୍ରବାକୀ, ଶାପ ବିରହ ବିଧୁରା
ବିମନା ବିମର୍ଷେ,
ବିଳମ୍ବିତ ଦୀର୍ଘ ବିଭାବରୀ
ଅପସରି ଯାଅ ବୋଲି ତୂର୍ଣ୍ଣ
ବସି କାହୁଥିବ ଅନୁସରି ପ୍ରିୟ ଗଲା ପଥ ।
ମୋ ସୁଖେ ମୁଁ ଭୋଳ ।
ଅଳିଅଳ ସୁଖିନୀ ଯେ
ନିଶି ଯାର ପାହିଯାଏ ଉଜାଗରେ ଏକଇ ଆଘ୍ରାଣେ,
ସଂସାରର ଯେତେ ସୁଖ ଦୁଃଖ, ଦୈନ୍ୟ ବା ସମୃଦ୍ଧି,
ସନ୍ନିଧାନେ ତାର ସବୁ ନିରର୍ଥକ;
ଆପଣାର ଏକ କେନ୍ଦ୍ର ପରିଧି ମଣ୍ଡଳୁଁ
ପରପାରେ ଯାର ଆଉ ନାହିଁ
ଯେଉଁ ଚିନାଏକ ବିସ୍ମୃତି କାହାର ।

ଛାଣି ମୁଁ ନଥିଲି ଦିନେ
ଏ ବକ୍ଷେ ମୋ, ନବଯୁବତୀର ଏଇ ସ୍ତନାଙ୍କୁରେ
ଛୁପିଥାଏ ଏତେ ଇନ୍ଦ୍ରଭୂତି ।
ରସ ବିଶାରଦ ଆହେ ମୋର ପ୍ରିୟ ବନ୍ଧୁ,
ସୁଚତୁର କର ସଂଚାଳନେ
ରଚିଗଲ ଯେଉଁ କୁଙ୍କୁମ ଚନ୍ଦନ ଚର୍ଚ୍ଚା
ସେତକ ମୋ
ରସମୟୀ କାବ୍ୟକଳା, କବି ସମ୍ରାଟ ଉପେନ୍ଦ୍ର ପ୍ରସାଦ ଭଞ୍ଜ
ଆଜି ଲାଗେ ମୋତେ ଯେହ୍ନେ ସବୁ ତୁଚ୍ଛ-
ଯେହ୍ନେ ସବୁ ହୀନ ।
ଲାଜେ ମରେ ମୁହିଁ ତୁମେ କହ-
ନିନ୍ଦେ ନି ତୁମକୁ- ସେ ଦିନର କବି
ଗାଇଥିଲେ ଆରୋପି ମୋ କୋଳେ
ଲୁଚାଇଛି ବୋଲି ଭସ୍ମ-ବିଭୂଷିତ
ସ୍ୱୟମ୍ଭୂ ଶମ୍ଭୁଙ୍କୁ ।
ଆଉ ଏ ମୋ ପୀନ ପୟୋଧରେ
ଆଲମ୍ବିତ ରତ୍ନହାର ଶମ୍ଭୁଶିରେ ଯେହ୍ନେ
ଜାହ୍ନବୀର ଶୁଭ୍ର ଫେନ ଲେଖା,-
ସବୁ ପରା ଭକତର କାମ ମୋକ୍ଷଦାୟୀ ।
ଆଲିଙ୍ଗନ ଖୋଜି ମୋ ଭୁଜ ବଲ୍ଲରୀ
ଦୃଢ଼େ ଯେବେ ଭିଡ଼େ ତୁମ କଣ୍ଠଦେଶ-
(କବିଏ କହନ୍ତି କିନା ଲତା ଲୋଡେ ଆଶ୍ରା
ସହକାର ତରୁ)-
ଚାତୁରୀ ଚମକେ ତୁମେ ଭାଷ
ଗୋ କାବ୍ୟ ନାୟିକା ! ପ୍ରଣୟିନୀ କଣ୍ଠାଶ୍ଳିଷ୍ଟ
ପ୍ରଣୟୀ ଜନର ଯଦି ନିଶୀଥ ସଙ୍ଗମେ
ବଢ଼ି ବୁଲେ ହୃଦ-ଆତୁରତା,
କେମନ୍ତେ ବଞ୍ଚିବି କହ
ଦୟିତା ବିରହୀ ଏ ନିଶୀଥେ ଏଇମେଘାଗମେ ?

କି ଦିଏଁ ଉତ୍ତର ପ୍ରିୟ !
ତୁମେ ଯେ ମୋ ଚାଟୁ ପଟୁ ରସବିଜ୍ଞ କବି ।
ଚୋରା ପ୍ରୀତି ଅତି ହିଁ ମଧୁର ବୋଲି
ତୁମେ ଚାହିଁ ବସିଥାଅ ଦିବାଶେଷେ ଯାମିନୀର
ଅବେଳ ବେଳକୁ ଏକାନ୍ତେ ଏ ନିଶୀଥ ବିହାର
ହେଉ ବୋଲି ଆମ ପରିଣୀତା ପ୍ରୀତି,
ଅନବୈଧ ସଦା ଚୋରାପ୍ରୀତି;
ମଧୁରୁଁ ମଧୁରତର
ଚୌର୍ଯ୍ୟବୃତ୍ତି ଅଭ୍ୟାସିଲା ପରି ।
ମୁଁ କି ସତେ ଏଡ଼େ ନିକି ଭୀରୁ ?
ତୁମେ କର ମୋତେ ବିବସନା-
ସବୁ ପ୍ରୀତି ରୀତି ଠାରୁ ପ୍ରିୟତର ତୁମ-
ଆଉ ମୁହିଁ ମରେ ଲାଜ ଭୟାକୁଳେ,
କେହି ଦେଖୁ ବା ନ ଦେଖୁ ।
ଯୂଥୀ ଗଭା କବରୀରୁ ଫେଇ
ନିକ୍ଷେପିଲେ ରତ୍ନଦୀପ ଲିଭାଇବା ଅର୍ଥେ
ସେ ବି ହୁଏ ବ୍ୟର୍ଥ ।
ତୁମେ ଗାଇ ଉଠ ଚୋରାରାସ, ପ୍ରୀତି ବିଗଳିତ,
ଲଳିତା ଓ ଯଯାତିଙ୍କ, ଅବା ଚନ୍ଦ୍ରଭାନୁ-ଲାବଣ୍ୟବତୀର ।
ସତ କହେଁ ପ୍ରିୟ । ଡ଼ରି ମରୁଥାଏଁ ସିନା
ତଥାପି ଗୋ ମୋତେ ଲାଗେ ସେଇ ଅବା
ଆମ ଚୋରା ପ୍ରୀତି, ଆମେ ଯାପୁଁ ସେ ଚୋରା ରଜନୀ ।
ରସଶେଖର ଯେ ତୁମେ
ଜାଣିବାରେ ହୋଇ ନି ବିଳମ୍ବ ମୋର,
ଆଉ ସେଇ ମୋର ପରମ ଗୌରବ ।
ଫିଙ୍ଗି ଦେଲ କାଞ୍ଚୀ ଦାମ ଦୂରେ, ଶ୍ରୋଣୀ ଦେଖୁଁ,
ଲାକ୍ଷାରସ ରଙ୍ଗା ପାଦଧରି ଫେଇଲ ନୂପୁର,
ଚୁମ୍ବ ଦେଇ ଅତି ପ୍ରୀତି ଭରେ
କହିଲ ତୋ ରସାଳସୀ !

ପୃଥୁଳ ନିତମ୍ବ ତବ ନିକ୍ତେ ଯହିଁ ମନ୍ଦାକ୍ରାନ୍ତ
ଆଉ କିସ ଆକର୍ଷଣ ଲୋଡ଼ା ଅବା ତାର
ଉଚ୍ଛୁଳିଲେ ମୋହିନୀ କନ୍ୟାର
ପରିପୂର୍ଣ୍ଣ ସୁଧାଭାଣ୍ଡ, କହ ତ ମାନିନୀ,
କାହିଁ ସେଇ ଆବରଣୀ
ପାରିବ ଗୋ ଟାଙ୍କ ତାର ଉତ୍‌ଫୁଲ୍ଲ ଉଚ୍ଛ୍ୱାସ ।
ନିକ୍ତେ ଯେହୁ ଆବରଣ
କିବା ପ୍ରୟୋଜନ ତାର ଆନ ଆଭରଣେ ।
ପୂର୍ଣ୍ଣ ଏ ଶଶୀ ମଣ୍ଡଳୁଁ
ପ୍ରସ୍ଥୁରେ ଯେ ଶୁଭ୍ର ଜ୍ୟୋତ୍ସ୍ନାଧାରା
ଆକାଶ ଅବନୀ ସେଇ ଯଦି କରେ ସଂପ୍ଲାବିତ
ଏକା ଏକା ଅଯାଚିତେ,
ବିଭବ ସୌଷ୍ଠବ ତବ ଏଇ ନଗ୍ନ ନିତମ୍ବର
ହେ ନିତମ୍ବବତୀ, ମୋ ସମେତ ଦେହ ମୋର
ପୁରପ୍ରାନ୍ତ ନିମଜ୍ଜାଇ, ଏକାକିନୀ ତୁମ ନବରସେ
ନ ବୁଝୁଣୁ କେହି ।
କାହାରେ କହେ ମୁଁ, ମୁଁ ବି ତ ସେଇ ରସ ସିନ୍ଧୁ ମଧ୍ୟେ
ନିକ୍ତେ ମଜ୍ଜମାନ ।
ପୁଣି ସେଇ ରସବନ୍ତ ଭାଷ-
ଆଗୋ ପ୍ରିୟ ! ସତେ ମୋତେ ଦେବ ନି ଜୁହାଇ
ମନେ ଅଛି ସବୁ କାଲି ପରି କହିଥିଲ ଯାହା
କହିଥିଲ—
ଜାଣେ ତୁମ ଅନୁଶୋଚନାର ଅର୍ଥ
ମୁହିଁ ମୋର କରତଳ ପୁଟ ଅର୍ଘ୍ୟଥାଳୀ ଧରି
ତବ ପାଦ ଅମ୍ବୁଜ ଫୁଟାଇ, ନିର୍ବିଚାରେ
କଲି ଯାହା ଅରଚନା
ଚିର ତରୁଣ ସୁନ୍ଦର ଆଦି ଦେବତାର,
ଫେଇ ନୂପୁର ଯୁଗଳ, ତୁମେ କି ଶୁଣି ନା

ରାଧା ପଦ ପଲ୍ଲବର ପାଇଁ ସାଜିଥିଲ କବି
କିଏ ରସଗ୍ରାହୀ କୃଷ୍ଣ, ଏଇ କଳି ଯୁଗେ ?
ଆଉ ସେ ଯୁଗର କଥା ବି ତ ହେଇ ସେଇ
ଶୁଣ ସହୀ ଯଦି ତବ ଯାଇଛି ପାଶୋର—
ଗୋପାଙ୍ଗନା ରାଧା ସୁନ୍ଦରୀଙ୍କ
ମାନ ଭଙ୍ଗାଇବା ଲାଗି
ଅଳକ୍ତକ ରାଗେ ରଞ୍ଜି ଦେଲେ
କୋମଳ ଚରଣ ଯୁଗ ନିଜ ବକ୍ଷ ଦେଶେ ତୋଳି
ଗୋପାଳ ବାଳକ ଆପେ ବନମାଳୀ
ନାପିତାଣୀ ବେଶେ ।
ଶୁଣିଲି ମୁଁ ମୂଢା
ଶୁଣିବାକୁ ହେଲେ ଜାତ ସନ୍ୟାସିନୀ
କରିବ ତା ବ୍ରତ ଭଙ୍ଗ ଚିର କୁମାରୀର ।
ଶୁଣିଲି ମୁଁ ସୁଧା ଆଧାରିତ ଆଦିରସ ଗହନ ବାରତା
ଆଗୋ ବନ୍ଧୁ ପ୍ରିୟତମ ମୋର
ମୋ ମରମ କେଉଁ ସନ୍ଧି ତଳେ
ନିହିତ ରହିଛି ଯଦି ତାର ସେଇ ଆଦି ଉତ୍ସ
କରେଁ ଅନୁନୟ
ଘେନା ହେଉ ମୋର ସେ ଗୋପ୍ୟ ନୈବେଦ୍ୟ
ଅରପୁଛି ମୁହିଁ ଯା ଅକୁଣ୍ଠେ
ଏଇ ମମ ମର୍ତ୍ତ୍ୟ ବଇକୁଣ୍ଠେ ।।



।। ୫ ।।

## ଗତାନୁସାରୀ

କୁରଙ୍ଗ ନୟନୁ ନୀଳିମା ସଂହରି
ତୁମେ ଯେ ରଖିଛ ସ୍ୱଚ୍ଛ ଢ଼ଳ ଢ଼ଳ ତୋଳେ ତବ
ମୁଁ ଦେଖିବି ବୋଲେଁ ତହିଁ ନିଜ ପ୍ରତିବିମ୍ବ
ଆପଣାର ପ୍ରତିବିମ୍ବ ରୂପ କିବା ଶୋଭା ଧରେ ତୁମ ସ୍ପର୍ଶେ ।

ତୁମେ ନତ କର ଚକ୍ଷୁ, ଅସଫଳ ହେଲେ ମୋର
ଆଶାୟୀ ପ୍ରୟାସ, ଭଲ ଲାଗେ ତୁମକୁ ବି
ଆଗୋ ମୋର ଚିତ୍ତ ପ୍ରସାଦିନୀ ?
ଅବା ଅଛି ତହିଁ ମରୁ ମରୀଚିକା ମାୟା
ହାତେ ଆସି ହାତୁ ଯାଏ ଖସି,
ଏ ଯେ ପ୍ରଲୋଭନ ଜାଲେ ଛନ୍ଦି ହୋଇ
ମରେ କଳବଳେ,- ଚାହଁନା ଗୋ ତୁମେ ନିଘେ
ଦେଖିବାକୁ ତୁମ ପ୍ରୀତି ପ୍ରିୟଜନ
ସେ ଦାରୁଣ ଜ୍ୱାଳା ଭୋଗୁ ତୁମ ସନ୍ନିଧାନେ
ଉଷାମୁଖେ ପ୍ରସରେ ଯେ ରକ୍ତରାଗ
ବର୍ଷାଧୌତ ଶରତର ଉଦୟ ଅଚଳେ
ପାହାନ୍ତି ନିଶାର ପଳାୟନପର ମ୍ଳାନିମାଟି
ଲୁଚିଥାଏ ତହିଁ ଯେଣୁ,
ତୂଳିଧାରେ ଚିତ୍ରିଥିଲା ପ୍ରାୟ, ଅହର୍ନିଶ
ଦରହାସ ମିଶା ତବ ରଙ୍ଗାଧରୁଁ
ଥୋପି ପଡ଼ିଲେ ରକ୍ତିମା
ଏଥି ହାରମାନେ
ସେଇ ପ୍ରଭାତ ଉତ୍ସବ ।

ଗୋଲାପ ପାଖୁଡ଼ାନିନ୍ଦୀ ସୁକୁମାର ପଣେ
ଯେ ବିଭବ ଥୁଆ ଏଥି
ମନ ଧାଏଁ ଅପହରି ଆଣେ ଅଧର ସଂଯୋଗେ
ଅତି ଯତ୍ନେ ସଞ୍ଚିତ ସେ ସଂପୁଟର ରତ୍ନ ।
ହୁଏ ସିନା ଥରହର ମାତ୍ର
ମୋତେ କରେ ଦୀନ ଓ କାକୁସ୍ଥ ।
ଆଗୋ ମୌନା ମୟୀ
କଣ୍ଠ ତଟୁ ପାଦାଙ୍ଗୁଳ ଯାଏ
ରସାଣି ଧୋଇଲା ପରି ଲାବଣ୍ୟ ସଲିଳେ,
ଏତେ ଯେ ସୁଷମା ରଖିଅଛ ଏଥି

ପ୍ରତି ଅଙ୍ଗ ସଉଷ୍ଠବେ,
ଉଦ୍‌ଭ୍ରାନ୍ତ ମୋ ଦୃଷ୍ଟିପଥ
କାହାକୁ ଛାଡ଼ି ସେ ଯିବ କାହା ପାଶେ ?
ଆତ୍ମହରା ମୁହିଁ ସେଇ ତ ମୋ ସୁଖାନନ୍ଦ ଶିଶୁ ଜନୋଚିତ ।
ଭୁଜେ ଭୁଜ ଛନ୍ଦି
ସ୍ରସ୍ତବାସ ଭରଜ ବନ୍ଧୁର ବକ୍ଷେ ରଖି
ଚଞ୍ଚଳିତ ବକ୍ଷ ମୋର–
କଳୁଥିବି ତବ ହୃଦୟ ସ୍ପନ୍ଦନ–
ଭାଳୁଥାଏ ଯେ ମୋ, ଆମାନିଆ ମନ,
ତୁମ ଚିତ୍ତେ ସେ ଅନୁଭାବନା
ହୋଇ ନାହିଁ କି ଗୋ ଉଦେ ସଂତେ ?
ନାଭିକୂପୁଁ ନୀବୀବନ୍ଧ ଯାଏ
ସୁକୋମଳ ରୋମାଳୀ ସୁନ୍ଦର ତବ, ଯେସନ ପ୍ରଥମ ସ୍ପର୍ଶ
ନବ ରୋମାଞ୍ଚରେ, କରି ବୁଲେ ଉଚ୍ଛନ୍ନ ମୋ
ଏ ଅଶାନ୍ତ ହିଆ ।
ତୁମ କ୍ଷୀନ ଚେଳାଞ୍ଚଳ
କହତ ସହୀ ଗୋ କେସନେ ରଖିଛ ଧରି
ଉଦ୍‌ଗତ ତୁମର ଯୌବନ ତରଙ୍ଗ ରାଜି
ଶୋଭାମୟ ଏ ସମ୍ପଦୁଁ
ବଞ୍ଚିତ କରିବା ଲାଗି ଗ୍ରୀଷ୍ମ ସନ୍ତାପିତ
ଚାତକ ପ୍ରାୟେକ ପିପାସା କାତର କଣ୍ଠ ତବ ଉପାସକେ ?
କେ କହିବ ଯଶ-କେତନ ମୋ କେବେ
ଉଡ଼ିଥିଲା ଅବା ନାହିଁ ।
କିନ୍ତୁ ଆଜି ସଂସାର ନିନ୍ଦୁକ କରେ ଯଦି ମୋତେ
କାମୁକର ନା'ରେ ଅପଖ୍ୟାତି - ଛଇ କଳଙ୍କିତ
ହେଉ, ନାହିଁ ମୋର ତିଳେକ ଶୋଚନା ।
ଜାଣେ ମୁହିଁ, ସୌନ୍ଦର୍ଯ୍ୟ ସରସୀ ସନ୍ତରଣ ସ୍ପୃହା
ସବୁଦିନେ ମୋର ରହିଛି ଅତୁଟ ।
ଏଥି ଫୁଟେ ଶତ ଶତ କେତେ ଶତଦଳ

ମୋ ମାନସ ରାଜହଂସ କରେ ଯଦି ତହିଁ କେଳି ବିରଚନ,
ଆଉ ସାଥେ ସାଥେ କଳିବାରେ ଲୋଡ଼େ
ହେମ ମୃଣାଳର ଜଳ ଲୀଳା କେଡ଼େ ମନୋହର
କେତେ ଦୂରେ ସଞ୍ଚରଇ ଗଭୀରତା ତାର,
କି ଲାଗି ମୁଁ ହେବି କହ ଭୀତି-ସଙ୍କୁଚିତ ?
ଆଗୋ ମନ୍ଦାକ୍ରାନ୍ତା !
ହୁଅ ପଛେ ତୁମେ ମନ୍ଦାକ୍ଷ ପାଟଳ ରାଗେ ଜର ଜର
ଦେଖୁଥାଏଁ ମୁହିଁ ନୟନ ପୂରାଇ ।
ସେଇ ମୋର ସ୍ୱର୍ଗ ଶୁଭାଶିଷ ।
ସମ୍ମୁଖେ ଏଇତ ମୋର କେତେ କାମନାର ଧନ
ମଧ୍ୟେ ବହେ ଅବା ପ୍ରୀତିପୂର୍ଣ୍ଣ ଯମୁନା ସରିତ,
ଆର ତଟେ ଯାର ଦାମ୍ଭିକ ପ୍ରକାରେ
ଖର୍ବ କରିବାରେ ତୁଙ୍ଗ ବକ୍ଷୋଜର ଗର୍ବ
ଶିର ଟେକି ଗିରିଚୂଡ଼ା ସମ
ଆକର୍ଷଇ ଏଇ ଯେ ସେ, ସେଇ ଉଦ୍ଧାମ ନିତମ୍ବ,
ଯାହା ଘେନି ତୁମେ ଐଶ୍ୱର୍ଯ୍ୟ ଶାଳିନୀ
ଗୁରୁ ନିତମ୍ବିନୀ ବୋଲି ଭୁବନ ବିଦିତା ।
ଆଗୋ କାନ୍ତିମତୀ, କାଳିନ୍ଦୀର ବେନି ତଟ ତୀର୍ଥେ
ଭିଆଇଛ ଏ ଯେ ଏତେ
ମନଲୋଭୀ ଶୋଭା ବେହରଣ
ଭଲ ଲାଗେ ହୁଏ ମୁହିଁ ତହିଁ ତୀର୍ଥକାଳ

ନୟନ-ଅତିଥି ଆଜି ସର୍ବେ ଏକ ସାଥେ;
ତୁମରି ଶ୍ରୀଅଙ୍ଗ ଘେରି
ରଚିଛନ୍ତି ଜଣେ ଜଣେ କ୍ଳାନ୍ତି ହରା କାରା ।
କରି କି ପାରିବ ନାହିଁ ମୋତେ
ସହସ୍ର ଲୋଚନ, ଆଗୋ ଶୋଭାଙ୍ଗିନୀ !
କୋଟିକରୁ ଗୋଟିଏକ ହେଲେ
କରୁ ନାହିଁ ମୋତେ ମୁହୂର୍ତ୍ତକ ଲାଗି
ବଞ୍ଚନା-ବ୍ୟଥିତ ।



॥ ୬ ॥

# ଆକାଶ ହୁଁ ବଡ଼

ଆକାଶ ହୁଁ ବଡ଼ ପିତା ଶୁଣିଥିଲି ଶାସ୍ତ୍ରର କଥନ
କେତେ ଥିଲେ ବଡ଼ ମୋର କାଳ କାଳ ନୋହିଲା କଳନ
ଯାର ବେନି ବାହୁ ତଳେ ଥିଲା ମୋର ଅଭୟ ଆଶ୍ରୟ
ଦୁଃଖ, କ୍ଲେଶ, ଖେଦ ଭ୍ରାନ୍ତି ଜାଣିନି ମୁଁ, ନିତ୍ୟ ନିରାମୟ ।

ଆଜି ମୁହିଁ ନିଃସହାୟ, ଚାରିପାଖେ ଘେରିଛି ଲାଞ୍ଛନା
ଅକିଞ୍ଚନ ଲୋଡିବୁଲେଁ ଆଶୀର୍ବାରି, ହଜିଲା ସାନ୍ତ୍ୱନା
ନ ମାଗୁଣୁଁ ଏ ଶିରେ ଯା ଦେଇଥିଲ ଅକାତରେ ଢ଼ାଳି
କୋଟି ହୀରା ନୀଳା ମୋତି ମାଣିକ୍ୟ ସେ ଅମୂଲ୍ୟ ସଞ୍ଚାଳି ।

ସରବେ ତେଜନ୍ତି ମୋତେ ସଂସାରେ, ମୁଁ ଏକାକୀ ଯଦି ବା
ଚାକିଲି ଚରଣ, ସେ ବି ଅମାନିଆ ହେଲା ନିଶି ଦିବା !
କେହି ନ କହିଲା ଆହା, ସତେ ମୁହିଁ ଏତେ ନିରିମାଖୀ
ନୟନୁଁ ଶୁଖୁଛି ଅଶ୍ରୁ, ଆଉ ଲୋଡ଼ାନାହିଁ ସାକ୍ଷୀ

ବିରାଟ ଏ ଆକାଶର ଅନ୍ତହୀନ ନୀଳିମା ବି ହାରେ ।
ପାରେନା ସନ୍ଧାନ ଦେଇ ବିଶାଳତା ତୁମ କେଉଁଠାରେ ।



॥ ୭ ॥

# ବୀତରାଗ

ଛଅ ରାଗ ଆଉ ଛତିଶ ରାଗିଣୀ
ଛନ୍ଦୋ ବଦ୍ଧ ଭାଷା
ହୁଏ ଯଦି ଆଜି ଅଳଭ୍ୟ ଦୁରାଶା
ଦୋଷ କା'ର-ଏ ପ୍ରଶ୍ନର

ଦିନ ଯାଏ, ପାହେ ନିଶି
ମିଳେ ନି ଉତ୍ତର ।
ସାହାରାର ବକ୍ଷେ ଠାବେ ଠାବେ ମରୁଦ୍ୱୀପ
ବାଲୁପଥ ଚିରି ଲୋଡି ବୁଲୁଥିଲେ
ଯାଏଁ ତା ସମୀପ,
ବାଲିଧୂଳି ଝଡ଼ଝଞ୍ଜା ଘନ ଘନ ଉଠି
ତମୋମୟ କରି ରଖେ ନୂତନ ଏ ସୃଷ୍ଟି ।
ସାଗରର ତେଣେ ବେଳା ଭୂମେ
ଫେନ ଊର୍ମି ମାଳା ଶିରେ ଶିରେ ଲୋଚି
ଏ ଯେ ଭୂରି ତୃମେ
ସାଗରିକା ସୀମନ୍ତିନୀ ଧରଣୀର ଏଇ ପଦପ୍ରାନ୍ତ
ହୁଏ ବୋଲି ତହିଁ ପରା ପୀୟୂଷ ସଂଜାତ,
ପାରେନା ତଥାପି ଧୋଇବାରେ
ଯଦି ତଟ ଲବଣିମା
ମୁଁ ପାଇବି କାହିଁ ତହୁଁ
ସ୍ୱାଦିକ ମହିମା ।
ଆଜି ବି କୁସୁମ ଫୁଟେ,
ଦୁଃଖ ତାର ବୁଝିଲାନି କେହି
ମାଳୁଣୀର ସମାଦର ସତେ ନାକି ଯାଇଛି ଉଭେଇ
ସୁନ୍ଦରୀଙ୍କ କବରୀ ରଚନା ଲାଗି
ଫୁଲର ଦରଦ
ସରିଛି ବୋଲି ଯେସନ
ପୁରାତନ ଗୀତି ଗାଥାଛନ୍ଦ ।
ମାଧବୀ ନିଶିର ସିତ ଜ୍ୟୋତ୍ସ୍ନା ଆଉ,
କାତର କରେନା ଚିତ୍ତ, ବିରହର ଦାଉ
ସମ୍ଭାଳି ହୁଏନା ବୋଲି, ଆଜି ତା'ରେ
ପ୍ରତିବିମ୍ବିତ ରୂପଶ୍ରୀ ତଳେ ମାତ୍ର
ଜଡ଼ପିଣ୍ଡ ବୋଲିବାରେ
ନାହିଁ କରେ କେହି ଦ୍ୱିଧାବୋଧ

ହରାଇଛି ଆଜି ସେଇ ଶଶୀ
ଆହ୍ଲାଦନ ଦେବାର ପ୍ରମୋଦ
ସ୍ୱର୍ଣ୍ଣଶୀର୍ଷ ଶସ୍ୟ ଆଜି କବି ପ୍ରାଣ
ଲୋଭାଇ ପାରୁ ନି
କେମନ୍ତେ କହିବି ବୃଥା ଦିନ ଯାଏ
ଅତୀତ ବାହୁନି ।



॥ ୮ ॥

## ନିର୍ବାଣ

ମୃତ ନା ମୁଁ ଜୀବନ୍ମୃତ
କେହି ମୋତେ ଦେଲେ ନି ସନ୍ଧାନ,
ଶରୀର ମୋ କେତେ ବେଳୁଁ ପାଲଟିଛି
ତୁଷାର ଶୀତଳ, ସର୍ବଶକ୍ତି ହୀନ,
ସଞ୍ଚରଣ କ୍ଷମତା ରହିତ,
ଯେହ୍ନେ ଦଗ୍ଧ ହେଲା ଏକ ପାଷାଣର ପିଣ୍ଡ ।
ଆଖି ଆଗେ ଦେଖୁଥିଲା ପରି ଲାଗେ
ଚଳନ୍ତି ପ୍ରତିମା ସବୁ ହସି ଖେଳି ବିଚରନ୍ତି
ଜୀବନ ସମ୍ଭୋଗେ,
ଏଇ ମୃତ୍ତିକାର ଘନ ଅନୁରାଗେ ।
ଏ ନୟନେ ଚକା ଡୋଳା ମୋର
ଖଞ୍ଜନ ଚଞ୍ଚଳ
ପଦ୍ମପତ୍ର ଜଳ ଜିଣି ଥିଲା ଯାହା ଢଳ ଢଳ,
ପାରଦ ହୁଁ ବଳି ଅଧର ଅସ୍ଥିର
ହେଲାଣି କି ନାହିଁ ସେହୁ ସ୍ତିମିତ ନିଥର
ପୁଛିଲେ ନିଜକୁ
ବ୍ୟର୍ଥ ହୁଏ ସବୁ ମୋର
ଜିଜ୍ଞାସା ପ୍ରବୃତ୍ତି ।

ଧର୍ମ ଆଚରଣ ଜାଣେ ସେ ମହତ
ହାୟ ! ବଳେ ନା ପ୍ରବୃତ୍ତି ।
ଅଧର୍ମ ବୋଲାଏ ଯାହା,
ଜଣା ଥାଇ ନିବର୍ତ୍ତାଇ ପାରେ ନା ନିଜକୁ;
ଆଉ, ଧର୍ମର ଯେ ଆଦିମୂଳ
ସେ ପ୍ରଭୁ ପୟରେ ପରମ୍ ସଂଯୋଗ-
ଶାସ୍ତ୍ରୀଏ କହନ୍ତି ଧର୍ମାନୁଶାସନ ।
ତାରି ଅନୁଶୀଳନରେ ବିତାଇବି ବୋଲେଁ
ଯଦି ମୁହିଁ
ମୋର ସେ ଚିନ୍ତନ, ସେ ମନନ
କାହିଁ ହେଉଥାଏ ଅଳପେ ବିଳୟ ।
ପାଥେୟ ମୋ ଯାହା
ପଥର ସମ୍ବଳ ବୋଲି କରୁଥାଏଁ ଆଶା,
ଗହନ ଘୋର ଏ ପଥେ,
ତପ୍ତ ବୈତରଣୀ ସ୍ରୋତେ
ଭଉଁରୀ ଆବର୍ତ୍ତ-କୂଳ ଅଭ୍ୟନ୍ତରେ
ମୋ ସମେତ ସିଏ ହୁଏ କବଳିତ ।
କେମନ୍ତେ ଜାଣିବି ମୁହିଁ ଜୀବିତ ନା ମୃତ ।
ଦର୍ପ ଅଭିମାନ ଯେବେ କିଛି
ଥିଲା ଏ ଜୀବନେ,
ସବୁ ନିବେଦିଛି
ଦର୍ପହାରୀ କରୁଣା ସିନ୍ଧୁର ସେଇ ମହାତୀର୍ଥେ ।
ସବୁ ଅନୁଭୂତି ମୋର
ଆଜି ଯଦି ପଙ୍କୁ
ସେଇ ମୋର ହେଉ ଅନନ୍ତ ନିର୍ବାଣ ।



॥ ୯ ॥

# ଅବାଞ୍ଛିତ

ପଥ ମୋର ହୁଏ ନାହିଁ ଶେଷ,
ଚାଲି ଚାଲି ହେଲିଣି ନିଃଶକ୍ତ;
ପାଦେ ଘେରେ ଆଜନ୍ମର
ପୂଞ୍ଜୀଭୂତ କ୍ଳାନ୍ତି;
ତନ୍ଦ୍ରାସକ୍ତ ଶିଶୁ ଅନାୟରେ
ପଡୁଥିଲେ ଭୂମିତଳେ ଲୋଟି
ମୋହଠାରୁ ବଳି ସେ ବି କେବେ
ହୋଇ ନାହିଁ ଏଡ଼େ ନିଃସହାୟ ।
ସାଗରର ବକ୍ଷ ବିକ୍ଷୋଭିତ କରି
ଉଠେ ଯେ ତରଙ୍ଗ, ଯିଏ ଏଡ଼େ ଭର୍ତ୍ସ୍ୱଳ
ତାର ବି ବିଳୟ ଅଛି ତଟ ବେଳାଭୂମେ ।
ଯୋଜନାନ୍ତେ ତେଣୁ
ମୋ ଚଞ୍ଚାଳ, ଉତ୍ପାତର ଅବସାନ,-
ଆଉ;
ମୁଁ ଲଭିବି ବିଶ୍ରାନ୍ତି ଆସ୍ୱାଦ,-
ବୋଲି ଯଦି ମନାଏଁ ମୋ ଅବସନ୍ନ ଚିତ୍ତେ
ସବୁ ହୁଏ ଆଶା ତଟେ ଲାଞ୍ଛନା ବ୍ୟାହତ ।
ନାହିଁ ମୋର ଖ୍ୟାତି,
ନାହିଁ ଶୌର୍ଯ୍ୟର ଗାରିମା,
ଅବା ଐଶ୍ୱର୍ଯ୍ୟର ଦର୍ପ ଅହଂକାର
ପ୍ରୀତି ପ୍ରମୋଦନେ
ନାହିଁ ମିଳେ ଅବସର ମାତ୍ରେ ।
ଅନ୍ତରେ ଯା ନାହିଁ ଶାନ୍ତି
ଚଉପାଶେ ଯାର କୁହୁଳାଏ ତୁଷାନଳ ଧୂମ,
ସେଇ ଯେ ମୋ ଜାତ-ପରିପନ୍ଥୀ,

କେମନ୍ତେ ମୁଁ କହ ହସି ହସି
ମୁଦିବି ଏ ଡୋଳା ଅନ୍ତିମ ଶୟନେ !
କିଏ ସେ ଅଛି ବନ୍ଧୁ ଆତ୍ମ ପରିଜନ,
ମୋ ଲାଗି ଢ଼ାଳିବ ବିନ୍ଦୁଟିଏ
ମାତ୍ର ଉଷ୍ମ ଅଶ୍ରୁ !
କରିବ ମୋ ଶୀତଳିଲା ଦେହେ
ଉତ୍ତପ୍ତି ସଞ୍ଚାର ।
ସୁନ୍ଦର ସଂସାରେ ଯଦି ମୁହିଁ
ଏଡ଼େ ଅବାଞ୍ଛିତ,
ଲୋଡ଼ା ନାହିଁ କାହା ନେତ୍ରୁଁ
ଲୋତକ କାଣିଚେ ।
ନାହିଁ ବା ରଚିଲ ମୋ ଲାଗି ସମାଧି
ସ୍ମୃତି ତରପଣେ
ତୁମ ନେତ୍ରେ ଯାହା ସ୍ମୃତିର ସନନ୍ଦ
ହେଉନି ସେ ମୁକ୍ତି କାମନାର
ଅନ୍ତରାୟ ମୋର ।



॥ ୧୦ ॥

## ଅର୍ଦ୍ଧାଙ୍ଗିନୀ

ସୃଷ୍ଟିର ବିଳୟ ବେଳେ କେବେ
ଅର୍ଦ୍ଧ ନାରୀଶ୍ୱର ରୂପେ କରିଥିଲେ
ସ୍ତମ୍ଭିତ ଯେ ପ୍ରଭୁ ଏଇ ବିଶାଳ ବ୍ରହ୍ମାଣ୍ଡେ
ଥିଲା ନି ସେ ଲୀଳା କେଉଁ ନାରୀ ପ୍ରୀତି ଅର୍ଥେ ।
ତୁମେ ଗୋ ପରମ ପୂଜ୍ୟା ତୁମ ନିଜ ଗୁଣେ,
ଆଦି ପ୍ରତ୍ୟୂଷର ପ୍ରଥମ ଆଲୋକ
ସ୍ଫୁରିଲା ଯେ ଦିନୁଁ ।
କଳ୍ପାନ୍ତର ଆଜି ପରି ଏକ

ପୁଣ୍ୟ ପୁରାତନ ଲଗ୍ନେ
ଅର୍ଦ୍ଧାଙ୍ଗିନୀ ସଂକଳ୍ପନା
ସେ ବି ଜଳିଉଠେ ମହାକାଶେ
ନିତ୍ୟ ନୂତନ ବିଭାସେ
ନବ ଆବିଷ୍କୃତ ଜ୍ୟୋତିଷ୍କ ପରାୟେ ।
ଆଜି ଏଇ ଧରାତଳେ
ଜ୍ଞାନ ଗାରିମାର ଏ ଯେ ଉଠୁଛି ବଢ଼ାଇ
ଗ୍ରହାନ୍ତରେ ଅବା ମଙ୍ଗଳ ମଣ୍ଡଳେ
ରଚିବାରେ ନବ ଅଧିବାସ,
ସିଏ ବି ପାରି ନି ଏଇ ସୃଜନ ବିଳାସେ
ବିଧି ଦେବତାର ଗୋପନ ରହସ୍ୟ ଭେଦି
ପ୍ରକାଶିତ କିସ ଏଇ ନାରୀର ଗୌରବ
ଆଜି ବି ଅପୂର୍ଣ୍ଣ ତୁମ ବିନା
ଏଇ ଅନୁଚିନ୍ତା
ରହିଯାଏ ସେମିତି ଅପୂର୍ଣ୍ଣ ।
ବାମାଙ୍ଗିନୀ ନାମେ
ବିବୁଧ ମଣ୍ଡଳେ ତୁମେ ଯେ ବିଶ୍ରୁତ,
ସେ ବି ତୁମ ପ୍ରଶସ୍ତିର ମାତ୍ର ଆଦ୍ୟ ସୂତ୍ର ।
ଭାମିନୀ ଗୋ ! ବଳାଅ ନା ମତି
କୋପ ଚିତ୍ତେ
ଅନ୍ୟ ଏକ ନୂଆ କରି ସୃଷ୍ଟି ବିରଚନେ ।
ବାମେତର ପୌରୁଷ ଯଦ୍ୟପି
କଠୋର କର୍ତ୍ତବ୍ୟ ମାନି
ବିପଦ ନିବାରେ ବିନିଯୁକ୍ତ,
ତୁମେ ବାମ ଭୁଜତଳେ
ସମ୍ଭାଳି ରଖିଛି ଗୃହ, ଗୃହସ୍ଥାଳୀ ।
ହୁଅ ପଛେ ତୁମେ ସୁକୁମାରୀ ଶିରୀଷ କୋମଳା
ସଞ୍ଚାରିଣୀ ବାମାଙ୍ଗୀ ବଲ୍ଲରୀ ।
ତୁମେ ସେଇ ଅର୍ଦ୍ଧ ସ୍ୱରୂପିଣୀ,

ଯାହା ବିନୁଁ ଏ ସଂସାରେ ଜୀବନ ସ୍ପନ୍ଦନ
ହୋଇ ରହିଥାନ୍ତା ଏକ ନିଷ୍ଠୁର ସନ୍ତ୍ରାସ ।

ଆଗୋ ନାରୀ !
ବଡ଼ଇ କଠୋର ତବ ପଣ,
ବଜ୍ରସମ ହାଣ ତାର ଅବ୍ୟର୍ଥ, ଅମୋଘ-
ତେବେ କରୁଣାର ବାରିଧାରେ
ସଦା ସିକ୍ତ ଜାଣନ୍ତି ସଭିଏଁ,
ସେଇ ମମତାର ମାୟା ଅଛି ବୋଲି
ଆଜି ବି ଏ ଧରାଧାମେ ବାସ
ସୁଧା ହୁଁ ମଧୁର

ଆଗୋ କାରୁଣିକେ !
ଏଥି ଯଦି ତୁମ ଘେନି
ପୂର୍ଣ୍ଣ ମନସ୍କାମ ଏହି ଧରଣୀ ସନ୍ତାନ,
ଲୋଡା ନାହିଁ ତାର ଧ୍ରୁବ ଲୋକେ ବାସ,
ଯା ସନ୍ଧାନ ଆଜି ଯାଏ ରହିଯାଏ
ନିଛକ ବିଳାସ ଖାଲି ତମିସ୍ରା ଗହ୍ୱରେ ।



॥ ୧୧ ॥

## ନ ଥିବି ଯେବେ

ସେ ଦିନ ନ ଥିବି ଯେବେ ଏଇ ମର୍ତ୍ତ୍ୟପୁର
ରଙ୍ଗାଙ୍ଗନ ତଳେ
କ୍ଷୀଣତମ ଶିଖା ରେଖାଟିଏ ନିବେ ବୋଲି
ଆପଣା ଅଞ୍ଚଳେ,
ପୋଛିବ ନି କେହି ନେତ୍ର ପ୍ରାନ୍ତୁ କ୍ଷଣେ
ଟୋପାଏ ଲୋତକ

କେହି ଫେରି ଚାହିଁ ବା ନ ଦେଖୁ ନାହିଁ ମୋର
ଜୀବନ ସନ୍ତକ ।
ନିର୍ମଳ ଗଗନ ତଳେ ବିଶ୍ୱ ପରମାଣେ
କରୁନି ବା ମ୍ଳାନ,
ନାହିଁ କ୍ଷୋଭ ମୋର ତିଳେ; ଆନ ଜନେ
ପ୍ରୀତି ତୋଷ ଦାନ-
ଦିନେ ହେଲେ ଯଦି କେବେ ମାତ୍ର ପାରିଥିଲେ
ସମାଦି ଏ ବ୍ରତ
ସେଇ ଘେନି ତଉଳିବି ଭାବେଁ ମଉଳିଲା
ମୋ ଜୀବନ ଅର୍ଥ ।
ଯୋଗୀଏ କହନ୍ତି ଜୀବଗତେ ପିଣ୍ଡ ଗୋଟି
ହୁଏ ନାରଖାର
ଲୋଭାଇ ହୁଅନା ମାୟାଜାଲ ପାତି ବସେ
ଦାରୁଣ ସଂସାର ।
ପରଶ୍ରୀକାତର ଦେବେ ଜାଣେ, ଲୋଡୁ ନି ମୁଁ
ତାଙ୍କ ଦିବ୍ୟାସନ
ସୁଖୀଜୀବୀ ବଞ୍ଚିବାର ମଧୁ ଆଶା ସେବି
ଆନେ ଅସହନ ।
ଏକାସନେ ଯୋଗଲୟ ଇଚ୍ଛୁ ଥାଏଁ
ପୁଣି ସେଇ ହୁଏଁ ଚଳଚିତ୍ତ
କାମନା ନିରୋଧି ହୁଏ ନା ଅନ୍ତିମ
ମୁହୂର୍ତ୍ତେ ବି ମାତ୍ରକ କିଞ୍ଚିତ ।



॥ ୧୨ ॥

## ଅଯଚା ଚିଠି

କାହୁଁ ଆସିଥିଲା କା ହାତର ଲିପି
ଯେତେ ଯତ୍ନ କଲି ମିଳିଲା ନି ଠାବ ।

ଖାଲି ବିଚଳିତ ମତି ହେଲା ସିନା ସାର ।
ଲେଖାଥିଲା ଶ୍ରୀ ଶ୍ରୀ ବାଣୀ ପରି
ଆଦ୍ୟରୁ-
"ଲଳିତାଙ୍ଗୀଷୁ"
ଏମିତି ମୋ ତନୁତଟେ କିସ ଥାଏ
ଲାଖି ରହେ କାହା ଲୁଚ ଦୃଷ୍ଟି
ମଣେ ମୁଁ ବିଚିତ୍ର;
ଅବା ମୋର ମର୍ମ ଅନ୍ତରାଳେ
କିସ ଥାଏ ଲୁବ୍ଧ, ଖୋଜି ବୁଲେ ।
ଯାହା ନ ଦେଖୁଣୁ ମୋତେ
କରେ ଏତେ ସମ୍ମାନିତ ।
ମୁଁ ବା କେମନ୍ତେ କହିବି
ହୋଇଥିଲି ନାହିଁ
ପ୍ରଥମ ପଠନ ମାତ୍ର ହୁଁ ଆକୃଷ୍ଟ ।
ସତେ ମୁହିଁ ମୃଣାଳ ମୃଦୁଳା ସୁକୁମାରୀ
ଫୁଲରେଣୁ ସମ;
ଅବା ମୁହିଁ
ପରଦୁଃଖକାତରା ଅନ୍ତରୁ, କଳକା [illegible] ।
କିଏ ସେହି ଅଦେଖା ପ୍ରଣୟୀ
ଦିଏ ନାହିଁ ଧରା,
ବାଣ୍ଟି ବୁଲେ ଖାଲି ଅନାଘ୍ରାତ [illegible]
ଭାବେଁ
ଆଉ ପ୍ରୟୋଜନ ନାହିଁ ଜାଣିବାରେ ।
ତଥାପି ପାରେ ନା ଔତ୍ସୁକ୍ୟ ନିବାରି ।
ମୃଦୁ ଶିହରଣ ତୋଳି
ଆଗ୍ରହ ମୋ ବଢ଼ି ବୁଲେ
ପୁଣି ପଢ଼ିବା ଲାଳସା ।
ପଢ଼ିଲି ମୁଁ-
'ଅବିଦିତ ଅନାହୂତ ମୁହିଁ

ଖୋଜି ତୁମେ ପାରିବ ନି ଥିତି କରି
ତେଣୁ କ୍ଷାନ୍ତ ହୁଅ ବୃଥା ଏଇ
ଅଭିଳାଷ ପଥୁଁ,
ମୁଁ କହେଁ ମୋ କଥା
ତୁମେ ଶୁଣି ଯାଅ ଖାଲି ।
ଶୁଣିଥିଲି ସୁନ୍ଦର ପଣର
ପୂର୍ଣ୍ଣ ଷୋଳକଳା ନାରୀର ବିକଶେ
ଲାଗିଲେ ପରଶ ଷୋଡଶ ବୟରେ
କାନ୍ତିମାନ ଯୌବନର ମଧୁ ଉନ୍ମାଦନା ।
ଆଜି ହାୟ ସିଏ ଅଫୁଟନ୍ତ କିଶୋରୀ କଳିକା
ଶିଖି ନି ଆହରି ରସଲୋଭୀ ଭୃଙ୍ଗ ମୁଖୁଁ
ଚୁମ୍ବନ ଆସ୍ୱାଦ ।
ମୁଁ କହିବି ତୁମେ ସେଇ ଶୁଭଲଗ୍ନ ପ୍ରତୀକ୍ଷା ଲାଳସୀ
ରହିଥିଲ ମୁଗ୍ଧା ଅନାଇ ନିଶ୍ଚୟ
ମୋର ଏଇ ପତ୍ର ଅଭ୍ୟନ୍ତରୁ
ସଂହରିବ ଷୋଡଶୀର ଅତିକ୍ରାନ୍ତ
ପରିମଳ ମୟ ପ୍ରଣୟ-ପୀୟୂଷ ।
ମୁହିଁ କେତେ ଦୂରେ କାହିଁ,
ଅବା ତୁମେ କେତେ ନିକଟରେ,
ତୁମେ ଜାଣି ନାହିଁ;
ଜାଣ ବା ଜାଣ ନା,
ନିତ୍ୟ ନିୟତ ମୁଁ ଅଛି
ତବ ଅତି ସନ୍ନିଧାନେ,
ଯହିଁ ଯାଅ ତୁମେ ଅନୁଚାରୀ
ଅଙ୍ଗଛାୟା ସରି ।
ତୁମ ତରୁଣ ଲାବଣ୍ୟେ ମୁହିଁ ଅଶାନ୍ତ ତରଙ୍ଗ ।
ଯେବେ ଯହିଁ ଗୋପ୍ୟ କରି ରଖିଥାଅ
ସବୁ ତୁମ ସୌନ୍ଦର୍ଯ୍ୟର ପରମ ନିର୍ଯ୍ୟାସ
ଜାଣେ ମୁଁ ତା ନିଗୂଢ଼ ବାରତା,

ସେଇ ତ ମୋ କଳ୍ପନା ସଞ୍ଚାରେ
କୋଣାର୍କର ମୂର୍ତ୍ତିମନ୍ତ ସ୍ୱପ୍ନ ।''
ଫୁଟି ପଡ଼େ ପୁଣି ପ୍ରତି ଛତ୍ରେ
ସେଇ ଲେଖାର ଦରଦ-
''କଷ୍ଟ କଷ୍ଟ କେତେ କଷ୍ଟ
କଳ୍ପିନି ବିରଞ୍ଚି,
ଅପରୂପ ତୁମ ରମଣୀଠି ଠୁଳ କରି ଶାଶ୍ୱତ ସର୍ଜନା;
ସେ ନିଷିଦ୍ଧ ଭୂମେ
ଯଦି ତୁମ ଚିରନ୍ତନ ଉପାସ କର ବି
ନାହିଁ ପ୍ରବେଶାଧିକାର ବୋଲି ଧିକ୍କାରିଲେ
ହେଉ ପଛେ ବିଧାତାରେ ତର୍କ ବିଚାରଣା
ନିତାନ୍ତ ଇ ଏକଦର୍ଶୀ ସିଏ ।
ଉପଭୋଗ ବାହାରେ ଯା' ସୃଷ୍ଟି
ସଂସାରେ ତା ବିଫଳ ବିଧାନ ।
କି ଲାଭ ତହିଁକି
ଯଦି ପୁଷ୍ପଟିକ ଝରିପଡ଼େ ଆନ ଅଗୋଚରେ ।
ସୃଷ୍ଟି ମଧ୍ୟେ ରମଣୀୟ ଯାହା
ଅଲକ୍ଷିତେ ପୂଜା ନୀରାଜନା ।
ଚାଲି ଥାଉ,
ସେଇ ମୋର ଅର୍ଥପୂର୍ଣ୍ଣ ବାଞ୍ଛା କଳ୍ପବଟ
ଅୟୁତ ଜନ୍ମର ।
ଅପରିଚିତା ଗୋ !
ମୁହିଁ ସେଇପରି ଦୂରାନ୍ତରୀ
ରହିଲି ତୁମଠି ।
ଥାଉ, ଚିହ୍ନିବାର ଆକାଙ୍କ୍ଷା ଯାଇ ନି ବୋଲି ତୁମ
କିସ ଲାଗି ଏ ପରିଦେବନା !

କଳ ଭାଷିଣୀ ଗୋ !
କେବେ କାହିଁ କାହା କରପୁଟେ

ବିପଞ୍ଚୀର ପାହାନ୍ତିଆ ତନ୍ଦ୍ରିମା ଭଙ୍ଗାଇ
ସ୍ୱର ସାଧନାରେ ଥିଲାବେଳେ ରତ,
ମୁହିଁ ଥାଇ ତୁମର ଅଲକ୍ଷ୍ୟେ
ତସ୍କର ପ୍ରାୟେକ
ଚୋରାଇ ଥାପିବି ଆଣି ସେ ମୂର୍ଚ୍ଛନା
ମୋର କାବ୍ୟ-କୁଞ୍ଜେ,
ହାୟ, ସବୁ ମୋର ଯତ୍ନ
ହୁଏ ଛନ୍ଦବଣା, ତୁମେ କି ଜାଣ ନା ?
ଭୁଜେ ଭୁଜ ଭିଡ଼ି,
ପ୍ରତି ପଦପାତେ ପୟର ମିଳାଇ
ତୁମ ଲାସ୍ୟ-ଲୀଳା ସାଥେ ଏକ ହୋଇ
ମୁହିଁ ଯଦି ହେବି ବୋଲି ଚାହେଁ
ସେଇ ନର୍ତ୍ତନର ଛନ୍ଦ,
ଦେଖେଁ ମୁହିଁ ଆଶ୍ରିଥାଏଁ
ନିରାଟ ଶୂନ୍ୟକୁ ।
ହେଉ ସେ ଅଲୀକ ସ୍ୱପ୍ନ,
ସେଇ ମୋର ସତ୍ୟ ।

* * * * * * * * * * * * * *

ଅନେକ ତ ଥାଏ କହିବାର,
ସମସ୍ତ ଫିଟାଇ କହି ନୁହେ ବୋଲି
ଏଇ ମୋର କମିତ ଚିଟାଉ
ଏତିକିରେ ଲେଖା ମୋର କଲି ଯଦି ଇତି,
ସତ କହେଁ, ନିବାରି ହୁଏ ନା ମୋର
ଲେଖିବାର ସ୍ପୃହା ।
ମାନ ବା ନ ମାନ
ତୁମେ ତ ଗୋ ମୋର
ମୂର୍ତ୍ତ ପ୍ରଣୟର ଆରାଧିକା
ବସାଇ ରଖିଛି ସଂଗୋପନ ହୃଦୟ ପଟର
ସ୍ୱର୍ଣ୍ଣ ସିଂହାସନେ ।

ଘେନୁଛି ବିଦାୟ
ଅନାଗତ କାଲିକା ପାଇଁ କି
ଅପୂର୍ଣ୍ଣ ପ୍ରୀତିର ପୂର୍ଣ୍ଣତର ନିବେଦନ ଲାଗି
ମୁହିଁ ତବ ଚିର ଅନୁରାଗୀ''
✽✽✽✽✽

କିଏ ମୋତେ
ଅନୁଭୂତ ତା ପ୍ରାଣର
ଦେଇଯାଏ ଅନୁରାଗ–
ରହିଯାଏ ସବୁ ରହସ୍ୟ- ସର୍ବସ୍ୱ ।



## ॥ ୧୩ ॥

## ମଧୁଲଗ୍ନା

ଆଶ୍ୱିନର କାଚଧାର ସ୍ୱଚ୍ଛ ପ୍ରଶାନ୍ତ ଆକାଶେ
ଲେପି କେ ଯାଇଛି ଉଜ୍ଜ୍ୱଳ ନୀଳିମା,
ସବୁଦିନ ଠାରୁ ଆଜି
ହୋଇଉଠେ ଅଧିକରେ ନୀଳ ।
କାଶତଣ୍ଡି ଫୁଲେ ଫୁଲେ
ଶୁଭ୍ରମୟ ବିରୋଧ ବୈଷମ୍ୟେ
ଆଜି ତାର ଏଇ ହଳାହଳମୟ ନୀଳ
ଏତେ ମନୋରମ ।

ଧରଣୀ ବି ଆଜି କାନ୍ତି ବିଭବିନୀ
ନିର୍ମଳ ପୂର୍ଣ୍ଣାଙ୍ଗ ତାର ଲାବଣ୍ୟ ମହିମା,
ଚତୁର୍ଦ୍ଦଶ ଭୁବନ ମଣ୍ଡଳେ
ପ୍ରକଟାଇ-ବାର ଲାଗି
ଉଡ଼ାଏ ତା ଉନ୍ମୁକ୍ତ କୁନ୍ତଳ ଗର୍ବ

ଏଇ ନୀହାରର ଯାଏ ।
ଅଙ୍ଗୁ ସ୍ମରି
ସଦ୍ୟଫୁଟା କମଳ ସୌରଭ
ସରସୀର ନୀର ଆସ୍ତରଣ
କରୁଥାଏ ଆବେଗ ବିଭୋର।
ସ୍ମିତ ମନୋରମ
ଅଧର ସମ୍ପୁଟେ କେତେ ରଖିଥାଏ
ଗୁଚ୍ଛ ଗୁଚ୍ଛ କୁନ୍ଦ କୁସୁମର
ସିଗ୍ଧ ସମାହାର ।
ଉଦୟ ଅଚଳେ
ଶରତର ଉଷା ଉଏଁ,
ଭାଲ ପଟେ ଲୋହିତ ସିନ୍ଦୂର ବିନ୍ଦୁ ସେବା
କେଉଁ ଅନୁରାଗୀ ହୃଦୟର
ଏକ ଠାବେ ଠୁଳକରା ଜୀବନ ଶୋଣିତ ।
ପ୍ରଦୋଷେ ଫୁଟିଲା ଜହ୍ନିଫୁଲ
ହେଲେ ହେଉ ବ୍ରତାଚାରୀ ଦଣ୍ଡକର ଲାଗି,
ଶିଶୁଙ୍କର ମନ ସମ ହଳଦୀ ବରଣା,
ଶୁଭମୟ ଯେହ୍ନେ
ଇୟେ କେଉଁ ବିବାହ ବେଦୀର
ମଙ୍ଗଳାରୋପଣ ।
ଜାଣୁ ବା ନ ଜାଣୁ ବିବାହର ମର୍ମ,
ଏଇ ମଧୁ ଗୋଧୂଳି ଲଗ୍ନକୁ
ଚାହିଁଥାନ୍ତି କିଏ ହେବ ବର
ସେଇ ହରିଦ୍ରା ଲେପିତ ଶିଶୁ କନ୍ୟାଟିର
ଧବଳିତ ଉପବନ,
କୁମୁଦିନୀ ଧଉଳା ତଡାଗ,
ଶାରଦ ଚନ୍ଦ୍ରିକା ଧବଳିମା ବିହ୍ୱଳା ରଜନୀ,
ଦେଇ ଯାଏ ଇଙ୍ଗିତ ବା
ଅନାଗତ ରାସ ମହୋତ୍ସବ

ପୂର୍ଣ୍ଣନୀରା ଯମୁନାର ତୀର ବୃନ୍ଦାବନେ ।



ଆଜି ନାରୀ ଅବା ନର
ବିମୁଗ୍ଧା ପରାଣେ
ଭଲପାଏ ଏଇ ଶୁଷ୍କ ଅଭିସାର ।
ମିଳେ ଏଥି ସନ୍ଧାନ ବା
ଏମନ୍ତ ଏ ମଧୁଲଗ୍ନ କ୍ଷଣେ
ଜୀବନ ଓ ମରଣର
ପୀରତି ଉଛୁଳା ସନ୍ଧି ସମାଚାର ।

■■

॥ ୧୪ ॥

## ସନ୍ଧ୍ୟାଲତୀ

ଧୀରେ ଧୀରେ ସନ୍ଧ୍ୟା ଅବତରେ
ଗୋଧୂଳି ଗଗନେ ଦିବସର ଶେଷ ରଶ୍ମି
ଅତି ଅନିଚ୍ଛାରେ ବିଦାୟ ଚୁମ୍ବନ
ଆଙ୍କି ଦେଲ ମୁଖେ
ବିଷାଦିତା କାଦମ୍ବିନୀ ଆସନ୍ନ ଅନ୍ଧାରେ
ଲୁଚାଏ ତା ଶ୍ରୀଅଙ୍ଗ ସ୍ୱର୍ଣ୍ଣାଭ ।
ଫୁଲ ରଙ୍ଗେ ବିବର୍ଣ ଚିତ୍ରଳ
ସୁକୁମାର ପ୍ରଜାପତି କ୍ଳାନ୍ତିବଶେ
ପଡ଼ିଛି ଘୁମାଇଁ
ରକ୍ତ କରବୀର ମ୍ଳାନ ଅଙ୍କ ଦେଶେ ।
ପାରେ ନି ତା ସ୍ୱପ୍ନ ଭାଙ୍ଗି
ଜାଗିବ ସେ କାଲି ପ୍ରାତେ
କେଉଁ ପ୍ରସ୍ଫୁଟିତ ଉପବନେ ।
ହାରେ ମୋର ଆଶାପୂର୍ଣ୍ଣା ନିତ୍ୟ ବୈତରଣୀ !
ତୋର ଏ ପାରର ପ୍ରସାରିତ ବାଲୁ ଶଯ୍ୟା ତଳେ

କେତେ ଥାଏ ସ୍ୱର୍ଣ୍ଣରେଣୁ
ଅପ୍ରମିତ, ଛପି
ମୁହିଁ ଆଉ ପାରେ ନା ଆହରି ।
ବିକ୍ଷୁବ୍ଧ ତୋ ସ୍ରୋତରେଖା
ଆନ ତୀର କରେ ମୋର ଦୃଷ୍ଟି ପ୍ରତିହତ ।
କଳି ବି ହୁଏ ନା ତହିଁ
କେଉଁ ଶସ୍ୟ ହରିତାୟମାନ ।
ଅବା ତାହା ଆଲୋକ-ବିହୀନ
ଘନ ଘୋର ଅନ୍ଧକାର;
ହରାଇ ବସିଛି ମୁଁ ବା
ସଂସାରର ପାପ ତାପ ଜରା କ୍ଲିଷ୍ଟ
ନୟନେ ମୋ ନିରୀକ୍ଷଣ ଶକ୍ତି ।
ଏଣେ ମୋର ପୂର୍ଣ୍ଣ ଚନ୍ଦ୍ରକଳା
ଆପେ ଆପେ ହୋଇ ଉଠେ
ଦିନୁଁ ଦିନ କ୍ଷୀଣ କ୍ଷୀଣତର ।
ନ ଇଚ୍ଛିଲେ ମଧ ଘୋଟି ଆସେ
ଭବିତବ୍ୟ ସରି
ନିବିଡ଼ ଅମାସ୍ୟା ଅସ୍ତାଚଳ ପ୍ରାନ୍ତୁଁ;
ସେଇ ନିକି ପ୍ରଳୟ ପ୍ଲାବନ ଅନ୍ତେ
ବିରାଟ ସ୍ତବ୍ଧତା ।
ଏଇ ଜନ୍ମର ଅତୃପ୍ତ କାମନା,
ଯାର କେବେ ନାହିଁ ପରିଶେଷ
ଶତ ଜନ୍ମ କେତେ ଶତ ଜନ୍ମାନ୍ତର ଯାଏ ।
କାହାରେ ମୁଁ ପଚାରିବି
ଏ ବ୍ରତାଚାରର କେବେ
ଅଛି କିବା ନାହିଁ ଅନ୍ତିମ ପାରଣା
ଅବା ପରମ ବିଳୟ ।
ଏହି ଅବା ମୋର ଶେଷ ସନ୍ଧ୍ୟାର ଆଳତୀ ।



॥ ୧୫ ॥

# ଏକାକୀ

ଭଲ ଆଉ ଲାଗୁନି ତ ଚଗତି ମଳୟ
ଶରତର ଜ୍ୟୋସ୍ନାଜାଲ ଧବଳିମାମୟ ।
ପଦ୍ମବାସ ପ୍ରସରିଲେ ପ୍ରିୟା ଅଙ୍ଗ ଗନ୍ଧ
ପ୍ରାଣ ଭରି ମତୁଆରା ହୁଏ ନା ମୁଁ ଅନ୍ଧ ।
ପ୍ରତ୍ୟୁଷ ପବନେ ଆଉ ଶିଶିର ପରଶା
ଜାଣେ ନା ଚୁମ୍ବନ ସ୍ପୃହା; ହାୟରେ ସହସା ।
ଶିଥିଳାଇ କଳେବର ଘେରେ ଅବସାଦ,
ପ୍ରଦୋଷ ନ ଆସୁ ତନ୍ଦ୍ରା ଲଗାଉଛି ବାଦ ।
ମେଘ ଦେହେ ଝଲୁଥାଉ ରୂପସୀ ବିଜୁଳୀ,
ଉଚ୍ଚାଟତ ସବୁ ମୋର ପଡ଼ିଛି ଝାଉଁଳି ।
କେଉଁ ବିରହିଣୀ ପ୍ରାଣୁ ଫେଇ କାତରତା
ସଂବେଦନେ ଭସାଏ ମୁଁ ବସୁଧା ସର୍ବଥା ।
ଏତେ ଅଶ୍ରୁ ଝରଣା ମୋ ଜାଣେ ନା କା ଲାଗି
ଭଲ ଲାଗେ ହୁଏ ବା ମୁଁ ଏକା ଦୁଃଖଭାଗୀ ।



॥ ୧୬ ॥

# ଶାନ୍ତି ଅନୁସାରୀ

ଗୃହ ସଂସାରର ଦୁରନ୍ତ ଜଞ୍ଜାଳୁଁ
ନିସ୍ତରିବି ବୋଲି,
ବିସ୍ତାରିତ ଆର୍ଯ୍ୟ ଭୂମି ଅତିକ୍ରମି
ଶୈବାଳିକ ଗିରିମାଳା ଶିଖେ
　　　　ଘନ ନୀଳ ବନରାଜି ପଛନ୍ତେ ପକାଇ
ପ୍ରବେଶିଲି ସିନା

ହିମଗିରି ଉପକଣ୍ଠେ ନିମ୍ନ ସାନୁ ଦେଶେ,
ମନାସି ଏ ଜୀବନର ଅବସାନ କାଳେ
ସେଇ ଶେଷାଶ୍ରୟ ପୁଣ୍ୟ ଯତିବ୍ରତ ।
କିନ୍ତୁ କାହିଁ ଖୋଜି ଖୋଜି
ପାଇଲି ନି ଅନ୍ତିମ ନିସ୍ତାର ।
ଅଗ୍ନିକୋଣୀ ତାପ ଏଥି
ନାହିଁ ମୋର ସତ,
ଏଥି ମଧ୍ୟ ନାହିଁଛି ଇଷାଣୀ କୋଣର ଦେବତା
ଜଙ୍ଘାଳର ସେଇ ଚିରପଟ ଦଗ୍ଧକରା ଦାଉ ।
ଏଠି ଅଛି ସହସ୍ରାଧାରାର ଅଗଣ କ୍ଷରଣ
ଗିରି ଅଙ୍ଗ ଚିରି ଅବାର ନିର୍ଝର ।
ଦେରାଦୂନ୍‌ର ଅଦୂରବର୍ତ୍ତୀ ପ୍ରସ୍ରବଣ ସହସ୍ରଧାର ।
ତଥାପି ମୋ ଅଙ୍ଗଜ୍ୱାଳା ନୋହିଲା ନିବାରି
ଯେତେ ଥାଉ ଏଥି ଗନ୍ଧକ ସେବିତ
ପ୍ରସ୍ରବଣେ ମହୌଷଧି ଉପଶମ ଗୁଣ
ମୋ ଗାଆଁର ପାଣି ଓ ପବନ
ଆଉ ଏଇ ହିମମୟ ଶୀତ
ଅଙ୍ଗ ପରଶ କାତର
କେତେ ନଦୀ ଗିରି ବନ
ଥାଉ ପଛେ ଅନ୍ତରାଳେ ।
ଦେଖେଁ ରୂପ ଧରି ଛିଡ଼ା ହୁଏ
ପାର ତୁମ ମୋ ପାତି ଥିଲା ପରି
କୂଟ କାପଟ୍ୟର ଅମାନୁଷୀ ଛନ୍ଦ
ପାଶୋରିବି ବୋଲି ଭାବୁ ଥିଲେ
ହୁଏ ମୋର ସପ୍ତ ଦଶନ୍ଧିର
ରକ୍ତର ପ୍ରବାହ ଶିଥିଳ ସ୍ଥଗିତ ।
ଅଥଚ ଯେ ଦ୍ୱନ୍ଦ ଏଡାଇବି ବୋଲି
ରଚେଁ ଏ ଅଜ୍ଞାତ ବାସ,
ପରଶ୍ରୀକାତର ଦୃଷ୍ଟିର ଅଲକ୍ଷ୍ୟେ

ସେଇ ଦେଇ ଯାଏ
ଏତେ ଦୂରାନ୍ତରେ ବି ଦହନ
ଭିଟା ମାଟି ମୋର ଯାହା ଥିଲା ପିତ୍ରାର୍ଜିତ
ସେତିକି ବି ବାଣ୍ଟି ନେବା ଲାଗି
ଲଗାଇ ରହନ୍ତି ନିତି ପ୍ରତିଦିନ
କଳି ଅବା ଗୋଳ
ମୋର ଯିଏ ବୋଲାନ୍ତି ସ୍ୱଜନ
କିଏ ବା ପଚାରେ ଆନ ଖଣ୍ଡଜନ କଥା ।
**********

ଏଥି ଦେବଦାରୁ ବନ ବନାନ୍ତରେ
ହିମ ଶୈଳ ହିମମୟ କୋଳେ ସନ୍ନିଧାନେ
କେତେ ନ ଦେଖିଲି ଆଶ୍ରମ ରଚନ
ସାଧୁ ସନ୍ଥଙ୍କର;
ତହିଁ ବି ନୋହିଲା ମୋର ଅଭିଳାଷ ରୁଚି
ଖୋଜି ବୁଲେଁ ମନସ୍ତୁଷ୍ଟି ।
ଅଶାନ୍ତ ମୋ ହିଆ
ନିରାଶେ ଝିମାଇଁ ପଡ଼େ ମାତ୍ର ଅଳପକେ
ସବୁ ଦିନେ ରଣକ୍ଷେତ୍ର ଭଳି
ଯଦି ଲାଗିଥାଏ ଘାତ ପ୍ରତିଘାତ ଏହିମତି
କେତେ ଦିନ ଆଉ କହ
ମୋର ଅସାମର୍ଥ୍ୟ କରୁଥିବି
ଲୋକେ ଅପ୍ରକାଶ୍ୟ ।
କ୍ଷୟ କରି ଜୀବନର ଆୟୁଷ ଟିକକ ।
ଅନ୍ତିମ ଜୀବନେ ଅଶାନ୍ତିର କୋଳାହଳ
ଆଉ ହୁଏ ନା ସମ୍ଭାଳି ।
ଶାନ୍ତି ଧାମ ନିରାମୟ ବୋଲି
ବୋଲନ୍ତି ଯାହାକୁ ସୁଧୀ ସୁଜ୍ଞ ଜନେ
କାହିଁ ସିଏ ଆଉ କେତେ ଦୂରେ ?



॥ ୧୭ ॥

## ଗୋପଲୀଳା

ଆଜି ବି ଯମୁନା ସେଇ ମନ୍ଥର-ଗାମିନୀ
କେତେ ସସ୍ର ବର୍ଷ ଏହି ନୀଳ ଜଳବେଣୀ
ତୀର ଘାଟେ କାହା କାନ୍ତି ଲୋଡ଼ି
ଦିନ ଦିନ ଆକୁଳ କରିଛି ତାର ନିଜ ଗାନେ
ଆପଣାର ପ୍ରାଣ ।
ଆଜି କିକି ସେଇ ଅତୀତର
ଗୋପକୁଳ-ବଧୂ ବସି କିସ ଭାଳେ ଭାବାତୁର ।
ନିତି ନବ ନବ ଭାବେ ?
ଶ୍ରୀ ଅଙ୍ଗେ ତା ଯୌବନ ଭଙ୍ଗିମା
ଝୁରୁ ଥିବା ପ୍ରତି ଲାସ୍ୟଟିରୁ ତହୁଁ
ଶିଖାଇବ ଆଜି ବି ତଟିନୀ
ଛୋଟ ଛୋଟ ଲହରୀ-ମାଳକୁ
ତା ନେତ୍ରର ଫିଟାଇ ନ କୁହା ଅପାଙ୍ଗ ମାଧୁରୀ ।
ପାଦେ ଫୁଟେ ଭାମିନୀର କନକ କମଳ
ଅଳପେ ମଞ୍ଜିଲା ପାଦ ତଳୁଁ
ଘନ ଘନ ଉପୁଜେ ରକ୍ତିମା
ଯମୁନାର ନୀଳ ଦେହ ସନେ
ପାଦ ଘଷା ତୁଠ ପଥର ବି
ହୋଇ ଉଠେ ଲଜ୍ଜା ପାଟଳିମ ।
ଜାଣିବି ଜାଣେ ନା ବାଳା
ତାର ତରଳ ତରୁଣ ମାଂସପେଶୀ ତଳେ
କେତେ ଯେ ରହେ ସଞ୍ଚିତ
ରକ୍ତ ଶୋଣିତର କୋଷ ।
ପୁଣି ଉଡିଯାଏ ତାର ଚିତ୍ତ ଚେତା ।
ଆଣିବ ଆହରି ସେଇ ଚିତ୍ର-
ସେଇ ଯେ କଦମ୍ବ ଶାଖେ ଶାଖେ

ଘନ ପତ୍ର ଗହଳିରେ ଛପି ବୁଲେ
କିଏ ସେ ଚତୁର ଧିଟ।
ବଳେ ନା ତ ପୁଛିବାକୁ
ପର ଘର କୁଳବୁଢ଼ା ଏକି ତାର
କେଉଁ ଅଭିରୁଚି ବୋଲି।
ସେ ଦିନ ଯାଉଛି ଯାଉ
ତଥାପି ଝଟକେ
କାଳର କପୋଳ ତଳେ
ଏକ ଶୁଭ୍ର ଜଳବିନ୍ଦୁ ପରି
ଲେଖା ଥିବା ଏଇ ସ୍ମୃତିଟିକ।
ଆଜିକାର ଲଜ୍ଜାନମ୍ରା
ନବ ଗୋପବଧୂ ଭାଲପଟ ତଟେ
ସିନ୍ଦୂରର ଯେହ୍ନେ ଉଜ୍ଜ୍ୱଳ ଲାଞ୍ଛନ
ହେଲେ ଜିଣି ସଦ୍ୟ ଉଇଁ ଆସୁଥିବା।
ପ୍ରଭାତର ରବି।
ଗଣ୍ଡଦେଶେ ହାତରଖି ଏକାକିନୀ ଭାବେ
କାହିଁ ସେ ମାନିନୀ ରାଧା,
ସତେ ସୁନ୍ଦର ପଣକୁ
ଏକା ସେଇ ଥିଲା।
ଗୋପ ପୁରେ ଖ୍ୟାତ।
ଥରେ ଗଲେ ପାଣିକି ତା ବୁଡ଼ିଯାଉଥିଲା ପରା
ଗୋଟା ପଣେ ବେଳ।
ଛାଇରେ ବି ଦେଖେ ତାର ଫଳିଛି ନା ରୂପ।
ସଲିଳ ଦର୍ପଣେ ନିଜ ବିମ୍ବିତ ସୌନ୍ଦର୍ଯ୍ୟେଁ
ପାରେ ନାହିଁ କଳି, କେଉଁଗୁଣେ ଥିଲା
ଚତୁରୀ ରାଧିକା ତାହାଠାରୁ ସୁନ୍ଦରୀ ଏମନ୍ତ,
ଯାହା ଘେନି ଗୁରୁ ଗଉରବ
ହୋଇ ଉଠୁଥିଲା ରସାତଳେ ଧୂଳିଠୁଁ ବି ଅଧିକ ଲାଞ୍ଛିତ।
ଗୋଟିକ ଭାବନା ଯାଏ,

ପୁଣି ଆଉ ଏକ ଆସି ତହିଁ କରେ ଅଧିକାର,
ଏଇ ଚଳ ଯମୁନାର ଊର୍ମିମାଳା ପରି ।
ଏଠି ତୀର ବୃନ୍ଦାବନେ
କିଏ ସେ ରସଶେଖର
କରୁଥିଲା କୁଳ ଝିଆସୁଣୀଙ୍କର-
ଏକ ନୁହେଁ-
ଷୋଳ ସହସ୍ର ସରଳା ତନ୍ୱୀର
ଗୋପନୀୟତମ ନିଜସ୍ୱ ଲୁଣ୍ଠନ ।
ଆଉ ରାଧାନାମେ ଉଡୁଥିଲା
ଯେତେ କଳଙ୍କିନୀ ବାଦ,
ସେଇ ପରା ଥିଲା ତାର ଖ୍ୟାତିର କେତନ ।

ଜାଣି ନ ଜାଣିଲା ପରି,
ଚୋରା ପ୍ରୀତି ଭଲ ଲାଗେ ବୋଲି
ସେ ଦିନର ଧରତୀ ଉରସେ
ପୁଣି ଏଇ ଛଟକିନୀ ଯମୁନା ପୁଳିନେ,
ଏଇ କାମ୍ୟ ବନେ,
ପୂଜା ପାଏ ସେ ଯୁଗୁଁ ଏ ଯୁଗ ଯାଏ,
ବୈଷ୍ଣବୀ ରୀତିରେ ସେଇ ଲୀଳାର ଚମକ ।
କାମନା ବିକାର ବୋଲି ଥାଏ ନାହିଁ
ବାଛ ବା ବିଚାର ।
ଆଜି ମଣେ ସେ ଦିନ କି କେବେ କାହିଁ
ଥିଲେ ନାହିଁ କେହି କୁଳବଧୂ ବିଚାରଣାଶୀଳା
କରି ପାରୁଥାନ୍ତେ, ଭ୍ରୁକୁଟୀ ଯାହାର ମଦନ ଦହନ
ପଣତ ବିଟପୀ ପଣତ ?
ନେତ୍ର ପ୍ରାନ୍ତେ କଟାକ୍ଷେ ଚାହିଁବା ଶିଖିବାର ଆଗୁଁ
କୈଳାସ କନ୍ଦରେ ଯାଇ ରଚନ୍ତା ସନ୍ୟାସ !
ରୂପମଦ ବୋଲି ଆଜି ଦିଏ ଯାହା ତ୍ରାସ,
ସେ ହୁଅନ୍ତା ଅଶ୍ରୁପରି ସ୍ୱଚ୍ଛ ଓ ନିର୍ମଳ ।

କହ ଗୁଣବନ୍ତ ତବ
କେଉଁ ଗୁଣରାଶି ତଳେ
ଲୁଚି ଯିବ ଏଇ ଏକ ଦୋଷ;
ଯେମିତି ନିମଜ୍ଜେ
ଇନ୍ଦୁର କିରଣ ଜାଲେ ତା ଅଙ୍କ କଳଙ୍କ ।



॥ ୧୮ ॥

## ବିରହ ପ୍ରସିଦ୍ଧି

କାହିଁ ରାମଗିରି, ଅଳକା ନଗରୀ ଅବା କାହିଁ
ଯହିଁ ବିରହିଣୀ ପ୍ରିୟା,
ବାମ କରେ କବରୀ ନିବେଶି
ଚାହିଁ ରହେ ଘନନୀଳ ଜଳଦ ରାଶିର
ବରଷଣ ମୁଖୀ ଘୋର ଆଡ଼ମ୍ବର ଘଟା ।
ସତେ ଅବା ତହିଁ ବିରହ ତାପିତ
ଆଗୋ ପ୍ରିୟ କାନ୍ତ,
ଶୀର୍ଣ୍ଣ କଳେବର ପଡ଼ି ରହି ଶାପଗ୍ରସ୍ତ
ପଠାଇଛ ଯେତେ ତବ ବିଧୁର ବାରତା
ଏଇ ବର୍ଷାଧାର ପରି ଅଗଣିତ
ସେମିତି ବି ନିରନ୍ତରୀ ।
ଆଜି ନାହିଁ ଶୁଣେ, ତୁମ ହାତୁ
ମୃଦୁ, କରତାଳି,
ତେଣୁ ନିକି ଏଇ ମେଘ ଆଡ଼ମ୍ବରେ
ନାଚେନା ମୟୂର ଇନ୍ଦ୍ର ନୀଳକଣ୍ଠ ଗ୍ରୀବା ଭାଙ୍ଗି
ଚନ୍ଦ୍ରକିତ ପୁଚ୍ଛ ବିତାନ ମେଲାଇ ।
ପାରେ ସେ ବା ଅନୁଭବି
ନାରୀ ଅଙ୍ଗଳିଭା କାତର କାରୁଣ୍ୟ ।
ଅବୁହା ହେଲେ ହେଁ

ଛାୟାଚ୍ଛନ୍ନ ଆଜିକା ଦିନର
ମୋହରି ଏ ପାଣ୍ଡୁରିତ ବଦନ ମଣ୍ଡଳେ
ବଳେ ବଳେ ପ୍ରତିଫଳିତ ଯା ।
ଆଗୋ ମୋର ଯୁଗାନ୍ତ-ପ୍ରଣୟୀ !
ଲୋଡେ ମୁହିଁ ଆଜି
ସେଇ ଶୀକର ଶୀତଳ ବାତାୟନ ମାର୍ଗେ
ତୁମରି ସେ ଉଷ୍ଣ କଣ୍ଠାଶ୍ଳେଷ;
ଯାହା ତୁଷାରର ହିମମୟ ଗର୍ଭୁଁ
ମୃତ କଳ୍ପ ଜଡ଼ ପିଣ୍ଡେ
ସଞ୍ଚାରିତ କରି ପାରେ ଜୀବନ ବ୍ୟଞ୍ଜନା ।
ଜାଣେ ମୁହିଁ, ଜାଗ୍ରତ ଜଗତ ଜାଣେ
ନଗାଧିରାଜ ଏ ହିମାଳୟ ପୁଣ୍ୟଭୂମି ପୀଠେ
ରତିବଧୂ ବାହୁନା ବିଳାପ
ଭସ୍ମ ଅବଶେଷ ମାତ୍ର ରୂପଗର୍ବୀ
ମଦନକୁ ମଧ ପୁନରୁଜ୍ଜୀବିତ କରି,
ସାରା ବିଶ୍ୱ ଦାଣ୍ଡେ
ବଜାଇଲା ପ୍ରଣୟର ଦାରୁଣ ଚେତନ
ସବୁ ବିରହିଣୀଙ୍କର ମରମ ଫଟାଇ
କହ କେମନ୍ତେ ମୁଁ ସହେଁ ?

ଅଙ୍ଗନେ ମୋ ଫୁଟେ ଯୂଥୀ,
ଅତି ମନୋହାରୀ, ଅତି ଅଲିଅଳ, ଅତି ହିଁ ବିରଳ
ଆପଣାର ବାସେ ଆପେ ଆତ୍ମହରା ।
ତାଇ ଘେନି ଅର୍ଘ୍ୟ ନିବେଦିବି
ଆବର୍ତ୍ତକ ମେଘେ ।

[ ଆଗୋ କାମଚାରୀ ଦୂତ !
କରି କି ପାରିବ ନାହିଁ ମୋ ଦୟିତେ
କାମଚାରୀ ଠିକ୍ ତୁମ ପରି ?

ଆଆନ୍ତୁ ନା ଦେଶାନ୍ତରୀ ଶାପଭାରେ,
ତୁମେ ହୁଅ ବେନି ଜନଙ୍କର
ଦୀର୍ଘ ରଜନୀର ଶେଷେ ଉଷାରୁଣ ଆଭା ।]

ପ୍ରିୟତମ ମୋର,
ତୁମ ଲାଗି ଯେତେ ମୋର ଭାଇ ବା ଭଗିନୀ,
ପିତା ମାତା, ଜ୍ଞାତି, ବନ୍ଧୁ, ପରିଜନ,
କେବେ କିଏ ଥିଲେ କେତେ ବା ନିକଟ
ସବୁ ମୁହିଁ ଯାଇଛି ପାଶୋର,-
ତୁମେ ଏତେ ହେଁ ନିକଟତମ ମୋର ।
ମନେ ପଡ଼େ କହିଥିଲ ତୁମେ
ବିଦ୍ୟୁଲ୍ଲତା ଦ୍ୟୁତି ପଡ଼ିଯାଏ ମ୍ଳାନ
ମୋର ଅଙ୍ଗକାନ୍ତି ପାଶେ ।
କେତେ-ମନ୍ତେ ଜାଣ ତୁମେ ଚାଟୁ ବିରଚନ
ଲଜ୍ଜା ସମ୍ଭ୍ରମରେ
ବୁଡାଇ ମାରିବ ବୋଲି ସରଳା ବାଳାରେ ।
କିନ୍ତୁ କେମିତି ସେ ଦେଖ ବନ୍ଧୁ
ଆଜି ଆସି
ତ୍ରମ ବର୍ଦ୍ଧମାନ ମ୍ଳାନିମାକୁ ମୋର ଉପହାସ କରି
ଉଡ଼ିବୁଲେ ଦୂର ହୁଁ ଦୂରାନ୍ତେ ।
ଆଗୋ ପ୍ରଣୟ ପୟୋଧି ।
ତୁମେ ନ ଥାନ୍ତେ ମୋ ପାଶେ
ଏଇ ହଟହଟା ମୋର ହୋଇ ରହୁ ଭାଗ୍ୟ ।
ପାହେ ନି ଗୋ ମୋର ଦିନମାନ ।
କାହିଁ କେମନ୍ତେ ଗୋ ଯାପ ତୁମେ
ଟବ ବର୍ଷା ବିଭାବରୀ
ଅଶ୍ରୁ ନୀରେ ସିକ୍ତ କରି ବାହୁ ଉପାଧାନ ?
ଜନକ ତନୟା ସ୍ନାନେ ପବିତ୍ରିତ ନୀରା
ମନ୍ଦାକିନୀ * ଆଜି ଯାହା

ମନ୍ଦାକିନୀ କବି ଗଙ୍ଗାଧରଙ୍କ ମତରେ ରାମଗିରି ପାପବାହିନୀ ଏକ ଗିରିନଦି

ତପସ୍ୱିନୀ ପରି ଗୈରିକ ବସନା,
ପାରିଛି ତ ଶମିବାରେ ତୁମ
ବିରହ- ସନ୍ତପ୍ତ ଅନ୍ତର ଜ୍ୱାଳା,
କୁହ ସତ କରି ।
ଥାଅ ପାଖେ ଅବା ଦୂରେ,
ମୁଁ– ଚାହେଁ ନା ସେଇ
ଚନ୍ଦନ-ଚର୍ଚ୍ଚିତ ଶୀତ ଉପଚାର ।
ବିରହ ଅନଳ ହେଉ ପଛେ ଦାରୁଣ, ଅସହ,
ତହିଁ ଦହି ହେଉଥାଏଁ
ସେଇ ତ ମୋ ଏକାନ୍ତରେ
ଚିତ୍ତ ପ୍ରସାଦନ ।



॥ ୧୯ ॥

## ଆଦି ନା ଅନ୍ତିମ

ଶୈଶବ ବୋଲି କି ମୋର
କେବେ କେଉଁ କାଳେ
ଥିଲା ନାହିଁ ଏ ଜୀବନେ ଦିନେ ?
ଜରାଜୀର୍ଣ୍ଣ ଅଙ୍ଗ ଧରି
ଦୀପ୍ତିହୀନ ନୟନ ଯୁଗଳେ
ପ୍ରତିଲୋମେ ଦେଖିବି ବୋଲି ମୁଁ ଇଚ୍ଛେଁ
ସେ ଦିନର ମୁହୂର୍ତ୍ତ ଗୁଡ଼ିକ–
ଫୁଲୁ ଫୁଲେ ଉଡି ବୁଲା
ପ୍ରଜାପତି ସମ ନିରଳସ
ଦେଖୁଥିଲି ଯାହା
ମଣୁଥିଲି ସବୁ ମୋର
ତଥାପି ଯେହ୍ନେ ମୁଁ ଥିଲି

ନିତ୍ୟ ନିର୍ଲିପ୍ତ ସବୁଠି ।
ଧୂଳି ଘରେ, ଧୂଳିର ସମ୍ପଦେ
ଆପଣାର ବୋଲି ବଢ଼ି ଉଠୁଥାଏ ଯେ ମୋ
ରାଜ କୁମାରର ଐଶ୍ୱର୍ଯ୍ୟ ହୁଁ ବଳି ବଳି
ଅହଂକାର,
ଯଦି ଏକଇ ମୁହୂର୍ତ୍ତେ
ଭାଙ୍ଗି ସେଇ ଧୂଳି ଖେଳ
ଆନେକ ପଲକେ
ଚାଲିଯାଏଁ ନିର୍ବିକାରେ;
ପଛେ ଫେରି କେହି ସାଙ୍ଗସାଥୀ ମୋର
କାହାରି ଜଣକ ହେଲେ ଲାଗେ ନାହିଁ ମାୟା ।
ଶିଶୁରେ ଶିଶୁରେ
କେତେ ଘଟେ ବିଭାଘଟା,
ମୁହିଁ ସାଜି ପ୍ରବୀଣ ଋତ୍ୱିକ୍
ମହା ସମାରୋହେ ସମାପଇଁ ବିଭାବିଧି ତକ,
ସତ କରି ମିଥ୍ୟା ଅଭିନୟେ
କେଉଁ ବନ୍ଦାପନା ମନ୍ତ୍ରେ ।
କେଉଁ କୁଶ, ସମିଧ, ଅକ୍ଷତେ
ମନେ ନାହିଁ କିଛି
ସେ ଦିନର ସେଇ ଶିଶୁ ପ୍ରଣୟୀ ଯୁଗଳେ
ମଙ୍ଗଳ ଆଶିଷ ଢ଼ାଳିଥିଲି କି ବା ନାହିଁ
ତା ବି ନାହିଁ ମନେ ।
ଯେତେ ଖୋଜି ବୁଲିଲେ ବି ଆଜି
ଆସେ ନା ସ୍ମରଣେ ।
ସତେ କି ସେ ଦିନ ଆଉ ଫେରିବ ନି ଥରେ ?
ପ୍ରତିଷ୍ଠା ଅର୍ଜନ ଲାଗି ଆଉ ମୋର
ଜନମେ ନି ସ୍ପୃହା ଏ ଦିନାନ୍ତେ ।
ଆଜି ଅଙ୍ଗନେ ମୋ ସନ୍ଧ୍ୟା ଦୀପ ଜାଳି

ଅଶ୍ରୁପୁଞ୍ଜ ଢ଼ାଳି ପାଶୋରା ଅତୀତେ
ଝୁରି ମରେଁ ଭାଳୁ ଥାଏଁ
ମାତ୍ର ତାଇ ବି ପାରେ ନା ।
ରାଶି ରାଶି କେତେ ଅନ୍ତରାୟ ଆସି
ଚିନ୍ତନ ମୋ କରେ ପ୍ରତିହତ ।
କିଏ ଜାଣେ ଏଇ ଦୀପଜଳା
ଏଇ ଅବା ଜୀବନର ପଥପ୍ରାନ୍ତେ
ମତି ବିଭ୍ରଂଶର
ଆଦି ଅବା ଅନ୍ତିମ ପ୍ରତୀକ।।



॥ ୨୦ ॥

## ମୀରା ବାଈ

କାହା ରାଜ ଜେମା, କାହା ରାଜବଧୂ-
ତୁମେ ଥିଲ କି ବା ନାହିଁ
ରାଜ ଅବରୋଧ କେବେ
କରି ପାରିଥିଲା ଅବା ନାହିଁ ତବ ପଥରୁଦ୍ଧ,
ସେ ସବୁ ହୋଇଛି ଆଜି
ବିଗତ ଦିନର ସପ୍ନ ପରି
ଅ-ଧର ବା ପରଶ ବିହୀନ ।
କଳାପ୍ରିୟା ତୁମେ,
ତୁମ କଳ କଣ୍ଠୁଁ ଯେଉଁ ଛନ୍ଦର ମୂର୍ଚ୍ଛନା
ସ୍ଫୁରୁଥିଲା ପଲକେ ପଲକେ,
ଅୟି କମ୍ବୁକଣ୍ଠୀ, ମୁହିଁ ହୁଏ ଭାଳି
ସେଇଟି ସୁନ୍ଦର, ନା ବା ତବ ପଦ୍ମାକରେ
ଫୁଟି ଆସୁଥିବା 'ପଦ୍ମକଳି ପରି
ତୁମ ମୁଖ ସୁନ୍ଦରିମା-
ମେଣ୍ଟେ ନା ଏ ଦ୍ୱନ୍ଦ ।

ତୁମେ କେବେ ନିବେଦିଲ
ତୁମ ପ୍ରିୟୁଁ ପ୍ରିୟତମ
ଅରୂପ ଦେବତା ପାଶେ
ଆଗୋ ରୂପମୟୀ, ରୂପାତୀତ ପ୍ରୀତି,
ଆଉଏ ଅଦେହାନୁଷଙ୍ଗୀ ତବ ସଦେହୀ ସଙ୍ଗୀତ ।
କେଉଁଥିରେ ବଶ କଲ ତାଙ୍କୁ,
ସିଏ ଚିର ଅବାଙ୍ମାନସ-ଗୋଚର ।
ଦେବତାର ପ୍ରାଣେ
ତୁମ ପ୍ରାଣ ଅକାତରେ ଅର୍ପି
ସୂକ୍ଷ୍ମୁଁ ସୂକ୍ଷ୍ମାତୀତେ କରିଥିଲ ସଂଯୋଗ ସ୍ଥାପନା ।
ସମ୍ଭବେ କି ତା ଏ ଜଡ଼ବାଦ ଅନ୍ତରାଳେ ?
ତୁମ ସାଧନାର କ୍ଷେତ୍ର ଚଉପାଶେ
ଗଗନ ପବନ ଆଜି ବି ଭୁଲି ନି
ଅହର୍ନିଶ ଗୀତ ଗୁଞ୍ଜମୟ ।
ସେ ବେଳର ସଲିଳ ତରଙ୍ଗ ସମ
ସେ ଉଚ୍ଛ୍ୱାସ ରାଶି ।
ଆଜି ବି ଏ ନିଶୀଥର ନିଥର ନିର୍ଜନେ
ତବ ବୀଣାଜିଣା କଣ୍ଠସ୍ୱର ଶୁଭେ
ତବ ମନ୍ଦିରର ପ୍ରତି କୋଣେ କୋଣେ;
ଆଜି ବି ଯା ଗୁଞ୍ଜରି ଉଠୁଛି
ପ୍ରତି କ୍ଷଣେ, ପ୍ରତି ପ୍ରତ୍ୟକ୍ଷେ, ଅଲକ୍ଷ୍ୟେ
ଶୁଭୁଥିଲା ପରି ଗୋପ ବୃନ୍ଦାବନେ ।
ତରୁଣ ବୟସେ
ତୁମର ଯେ ଅନୁଭୂତି, ତୁମ ଅଭିଜ୍ଞତା,
ସେଇ ଦିବ୍ୟ ଅନ୍ତର୍ଦୃଷ୍ଟି ।
ପ୍ରବୀଣ ସମାଜେ ଯାହା ନିତାନ୍ତ ବିରଳ,
ସେ କି ଜନ୍ମ ଜନ୍ମାନ୍ତର ତବ ଅରଜିଲା ସିଦ୍ଧି ?
ଗାୟନେ ବାୟନେ ଜାଣେ ନା ମୁଁ
କେବେ ମୋର ଥିଲା କିବା ନାହିଁ ଅଭିରୁଚି,

ଥିଲେ ଅବକ୍ଳୁପ୍ତ ଚେତା ତଳେ କାହିଁ,
ତାହା ନିର୍ଜୀବେ ଝାଉଁଳି
ପଡ଼ିଥିଲା ଅନାଦରେ,
ଦୁର୍ଦ୍ଦିନର ଜଳ ଗହ୍ୱରରେ ଯେହ୍ନେ
ପଦ୍ମିନୀ ଦୁଃଖିନୀ,
ସେ ହେଇଛି ଆଜି ନବ ପଲ୍ଲବିତ,
ତୁମ ଭଜନର ଗାନ ପ୍ରଥମ ଶ୍ରବଣେ ।

ଯହିଁ ଥାଅ ତୁମେ ଆଜି,—
ସପ୍ତ ଯୋଜନାନ୍ତେ, ଅଙ୍କଳନ୍ତି ଦୂରେ ହେଲେ ହେଉ,
ଇଚ୍ଛା ହୁଏ ଧାଇଁଯାନ୍ତି
କରୁଥାନ୍ତି ତୁମ କୀର୍ତ୍ତନ ଅଭ୍ୟାସ,
ଯେହ୍ନେ ଅନୁଗତ ଶିଷ୍ୟ ।
ଆଉ ତବ ମୁଖୁଁ ଶୁଣୁଥାନ୍ତି
ତବ ସିଦ୍ଧି ସାଧନାର ଦୁର୍ଗମ ସରଣୀ ଗାଥାର ସନ୍ଧାନ ।
ମୁହିଁ ଚାରଣ କବିଟି ପରି
କରୁଥାନ୍ତି ନିୟତ ପ୍ରଚାର
ତୁମରି କଣ୍ଠରେ
ସସାଗରା ଧରା ଆଉ ଗଗନ ମଣ୍ଡଳ ।
ଗିରିଧାର ନାଗର
ଆଜି ବି ତ ଖୋଜିବୁଲେ ତୁମ
କିନ୍ନରୀ କଣ୍ଠର ମଧୁର କୂଜନ ।
ଯାଇଛି କର୍ପୂର ଯଦି, ଯାଉ
ଅଛି ତ ତା ଗନ୍ଧ ବାସର ମହକ
ଗଲେ ବି ବା ମୀରା, ଅବା ମୂକ ଥାଉ କଣ୍ଠ
ବିପଞ୍ଚୀ ତା ଚିରନ୍ତନୀ
କାଳ-ଜୟୀ ଯୁଗ ଯୁଗାନ୍ତରୀ ।



॥ ୨୧ ॥

# ନିର୍ଜନ ଯାତ୍ରୀ

ତୁମେ ପରା ଧର୍ମସୁତ, ଆହେ ଧର୍ମ ଭୀରୁ
ଅଦିନର ଅନୁଗତ ସାଥି ପରି
ଚାଲିଥିଲା ବିଚାରୀ ଶ୍ୱାନଟି
ତୁମ ମହାଯାତ୍ରା ପଥେ ।
ତୁମେ ତ ଥିଲନି ଚେଢି ତାର ମାୟାଟିକ ।
ତା ବିନ୍ଦୁ ହେଉ ବା ପଛେ
ସ୍ୱର୍ଗ ପଥ ତୁମ ଅବରୁଦ୍ଧ ।
କିନ୍ତୁ ସେତକ ମମତା ମୋହ
ଜାଗିଲା ତ ନାହିଁ
ତୁମ ମୁଗ୍ଧ ବଧୂ ପାଞ୍ଚାଳୀ ପତନେ ।
ଫେରିଲନି ବାରେ ଚାହିଁ ଦେଖେଁ ବୋଲି
କେମନ୍ତେ ତା ଅନିଚ୍ଛୁକ ପ୍ରାଣ
ମରଦେହେ ଛାଡି ମିଶି ଯାଏ
ତୁଷାର ପିହିତ ଶିଖେ ପଞ୍ଚ ମହାଭୂତେ ।

ସତେ ଅବା ପାରିଥିଲ ବୁଝି
ମହା ଅହମିକା ଦ୍ରୁପଦ କନ୍ୟାର
ପଞ୍ଚ ପତିଙ୍କର ମଧ୍ୟେ ଥିଲା ତାର
ଫାଲ୍‌ଗୁନି ପାଇଁ କି
ସବୁରି ଅଧିକେ
ପାତ୍ରାନ୍ତରୀ- ପ୍ରୀତି ଆକର୍ଷଣ ।
ହୁଏତ ବା ତାଇ
ତୁମେ ପୁଣି- କହିବାରେ ଲାଗେ ଦ୍ୱିଧା
ତବ ଆତ୍ମମ୍ଭରୀ ପଣେ
ସେଇ ସୁନ୍ଦରୀ ଜାୟାରେ ପୁଣି
କରି ପାରିଥିଲ ପଣ

ଭାଗ୍ୟ ସମ କ୍ରୂର
ତୁମ ପଶାଖେଳ, କୁରୁସଭା ତଳେ ।
କାହିଁଥିଲା ଲଜ୍ଜା ମାନ ଅବା ଧର୍ମଭୟ ?
ଜଣେ ଜଣେ ହୋଇ
ଭ୍ରାତା ଚତୁଷ୍ଟୟ ତବ
ଲୋଟି ପଡ଼ି ବରି ନେଲେ ଶମନ ଶାସନ
ଶାଶ୍ୱତ ତୁଷାରାଚ୍ଛନ୍ନ ସେଇ ହିମାଚଳ ଚୂଳେ ।
ଯିଏ ତୁମ ଶିରେ ଟେକାଇଲେ
ଶ୍ୱେତ ରାଜଛତ୍ର,
ତୁମ ରାଜ ସିଂହାସନ ଅସପତ୍ନ କଲେ
ସାରା ଭାରତରେ କ୍ଷାତ୍ର ତେଜ
କୁରୁକ୍ଷେତ୍ର ଶୋଣିତ ସାଗରେ ନିର୍ମମେ ବୁଡ଼ାଇ ।
ତୁମେ ତ ଦେଖିଲ ନାହିଁ ଫେରି,
ବୁଝିଲ ବି ନାହିଁ ଏହା କେତେ ମର୍ମାନ୍ତିକ ।
କାହିଁ ଥିଲା ତବ
ଏକନିଷ୍ଠ ସତ୍ୟସନ୍ଧ ପଣ ?
'ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ହତ'—
ଏହି ଟିକକ ସ୍ଖଳନ
ଆଜନ୍ମ ସଞ୍ଚିତ ତବ ପୁଣ୍ୟ ରାଶି ରାଶି
କରି ପାରିଲା ବି ନାହିଁ ନରକ ଦର୍ଶନୁଁ
ତୁମକୁ ନିବାରି ।
ମିଥ୍ୟା ସେ ତ ଭୟଙ୍କର,
କିନ୍ତୁ ଅର୍ଦ୍ଧସତ୍ୟ ମିଥ୍ୟାଠାରୁ ବଳି
ବିଷମ, ବୀଭତ୍ସ ।
ମର୍ତ୍ତ୍ୟର ନଶ୍ୱର ଲୀଳା ସାଙ୍ଗ କରି
ଚଳିଲ ଯା ତୁମେ ସଶରୀରେ
ଅମର୍ତ୍ତ୍ୟ ଭୁବନେ,
କହ କେଉଁ ଦିବ୍ୟ ଜ୍ୟୋତି ପୁଞ୍ଜେ
ଆଜି ତୁମେ ବିଭାସ୍ୱର,

ଆଦି ଅନ୍ତହୀନ କେଉଁ ତାରକା ମଣ୍ଡଳେ ?
ତୁମ ଲାଗି ହାୟ ପଷାଣ ଦେଉଳ
ତୋଳା କାହିଁ ହୋଇଛି କି ନାହିଁ
କେ କହିବ !
ସହସ୍ର ଜନ୍ମର ବ୍ୟବଧାନ ଭେଦି
ଆଜି ତେବେ ଏଇ ଧରା ଧାମେ
ଆନର ଅଲକ୍ଷ୍ୟେ ହେଲେ
ପଡ଼ିବ ନାହିଁ କି କହ
ତାରାରୂପୀ ତୁମ
କ୍ଷୀଣ ରଶ୍ମିରେଖାଟିଏ
ତୁମ ପାଷାଣ ପ୍ରତିମା ପରେ,
ଦୂର କରି ବିଦ୍ରୂପର ଅଙ୍ଗୁଳି ସଙ୍କେତ ।



॥ ୨୨ ॥

## ରୁଦ୍ରାଣୀ

ଆସିଛ ଅତିଥି
ଦୁର୍ଦ୍ଦିନକୁ ସାଙ୍ଗ କରି
ଦକ୍ଷିଣାପଥ, ନା ଅବା ମହୋଦଧି ତାରୁଁ
ଅବିରଳ ମୁଷଳ ଧାରାରେ
ତିନ୍ତିଯାଏ ତୁମ ନୀଳାମ୍ବରୀ ଦୁକୂଳ ଅଞ୍ଚଳ ।

ଦେଖ ଥରେ
ଏଇ ଜଳ ନିର୍ଝରଣ
ନାହିଁ ଯଦି ସମ୍ବର ଏତିକେ
ଜାଣ ତ କରିବ କେଉଁ ପ୍ରଳୟ ସୃଜନ
ନିମ୍ନେ ଉତ୍କମାଳ ଦେଶେ ।
ତୁମ ଆସିବାର ପଥ

ରୋଧି ତ ପାରିନି କେହି ?
ତୁମେ ଅତିକ୍ରମି ଆସିଥିବ ବିନ୍ଧ୍ୟାଚଳ ଶୃଙ୍ଗ
ଭାରତର କଟୀ ଦେଶେ, ଶୋହେ ଯାହା
ଇନ୍ଦ୍ରନୀଳ ମଣି ମେଖଳା ସଙ୍କାଶ ।
ଆଉ ତ ବଢୁନି ଶୈଳ
ଗଗନ ଚୁମ୍ବିତ ହିମବନ୍ତ ନଗ ଅଧିରାଜ ଶିଖ
ଗର୍ବ ବିଭଞ୍ଜନେ ?
ଏଇ ପ୍ରତିଯୋଗେ ବିଭୀଷିକା ଲକ୍ଷି
ଦେବତାଏ କେବେ ବରିଥିଲେ ସିଦ୍ଧତପା ଅଗସ୍ତି ମୁନିଙ୍କି
ସମସ୍ୟାର ସୁଖ ସମାଧାନେ ।
ସେହି ଦିନୁ ପରା ଯାଇଛନ୍ତି
ତପସ୍ୱୀସତ୍ତମ;
ଦକ୍ଷିଣର କେତେ ଦୂର, ଦୂରାନ୍ତ ଅଞ୍ଚଳେ,
କେଉଁ ଅନାମିକା ଜନପଦେ
ଆଶ୍ରମ ବିରଚି ନିଜ ସମାଧିସାଧନେ ।
ନ ଫେରିଲେ ଆଜି ଯାଏ ।
ଗିରିବରେ ତୋଷି ମନାଇଁଲେ ତାକୁ
ନାହିଁ ଫେରିବାର ଯାଏ ରହିଥାଅ ଅବନତ ଶିର
ବାହୁଡ଼ା ଫେରନ୍ତା ତାଙ୍କ କରି ସହଜ ସୁଗମ ।
ଉତ୍ତରାଖଣ୍ଡର ତୁମ ଗତିପଥ
ରଖିବାକୁ ଚିରନ୍ତନ ଆର୍ଦ୍ର
ଥିଲାନାକି ତୁମ ଯୋଗ ଏ ଚକ୍ରାନ୍ତେ ?
କେଉଁ ଅନାଦି ଯୁଗର
ସେଇ ପ୍ରତିଶ୍ରୁତି ପାଳି
ରହେ ଚାହିଁ ଅକୁଣ୍ଠିତ ଚିତ୍ତେ
ସେଇ ବିନ୍ଧ୍ୟାଚଳ ।
ଉନ୍ନତ ଶିର ତା ନିମ୍ନେ ନତ କରି ଅନାଇ ବସିଛି
ମୁନି ଫେରିବାର ପଥ
ବର୍ଷଣ ଉନ୍ମୁଖ ବଳାହକ-ମାଳେ ସୁଦ୍ଧା

ଦେଇ ତାର ଅବାଧ ସଞ୍ଚାର
ଦକ୍ଷିଣୁ ଉତ୍ତରେ; ଆଉ
ଉତ୍ତର ଦକ୍ଷିଣ ନିର୍ବିଚାରେ
ସର୍ବ ଚରାଚରେ ।
ସତ୍ୟସନ୍ଧ ଗିରି ସିଏ
ଚିରଣ କାମୁଡ଼ି ପଡ଼ି ରହେ
ସେଇ ବାଗ୍‌ଦତ୍ତ ବିପାକେ
ଅଟଳ ପ୍ରତୀକ୍ଷା ତାର,
ବୁଝେନି କି ସେହୁ ଏ ଯେ ତୀବ୍ର ପ୍ରତାରଣା
ଦୂର ବିଦେଶିନୀ !
ଘନ ଘନ ନିଃସାରିତ ତୁମ ନାସାଶ୍ୱାସେ ଏ ଯେ
ଘନ ଘୋଷ ସନେ
ଆହୁରି ବି କରେ ଭୀତି ସଞ୍ଚାରଣା ।
ସତେ ଅବା ଅଳକାପୁରୀର
ସବୁ ବିରହିଣୀଙ୍କର
ଏକ ଠାବେ ପୁଞ୍ଜୀଭୂତ ହା-ହୁତାଶ ରାଶି
ନିମଜ୍ଜାଇ ଦେଇଯିବ ଏ ଧରଣୀ ଅନନ୍ତ ତିମିରେ ।
ଏଇ ଆମ୍ର କାନନେ ବି ଆଜି ·
ନିଶିର ଭୈରବୀ ।
ତଥାପି ତ କଦମ୍ବର ଶାଖେ ଶାଖେ
କୋରକ ରୋମାଞ୍ଚ ଦେଖି
ମଣେ ନିଜ ପ୍ରଣୟ ରୋମାଞ୍ଚ
ତୃଷାତୁରା ଚାତକିନୀ,
ଭୟ ଭ୍ରାନ୍ତି ସବୁ ପରିହରି
ନିଶ୍ଚିନ୍ତେ ଝିମାଇଁ ପଡ଼େ ପ୍ରିୟବତୀ ପ୍ରିୟକଣ୍ଠ-ଲଗ୍ନା;
ବକୁଳର ଗନ୍ଧ ଆମୋଦିତ ପରମ ଆବେଶେ ।
ତେଣେ ବଂଶ ବନେ
କେତକୀର କଣ୍ଟକିତ ନିବିଡ଼ କାନ୍ତାରେ
ଯାହା କେବେ ରସ-ସ୍ନେହୀ ନରପାଦ ଲାଗି

ହୋଇ ନି ପବିତ୍ର ଦିନେ ମାତ୍ର ହେଲେ
ଆଜି ତହିଁ ବହୁଭାଷୀ ତାହୁଙ୍କର
ବିହ୍ବଳ ଜଳ୍ପନା ।
ଚମକି ବାଳିକା ବଧୂ
ସ୍ତିମିତେ ଅନାଇ ଦେଲା ପରି ଲାଗେ
କ୍ଷଣେ କ୍ଷଣେ କ୍ଷଣିକା ଚପଳା ।
ପରକ୍ଷଣେ ବିଶ୍ୱସାରା ବୁଡ଼ାଇବା ପାଇଁ
ସଦା ନିରାଲୋକେ
ସର୍ବଗ୍ରାସୀ ଅନ୍ଧକାରେ,
ଚିରଦିନ ଲାଗି
ଗୋ ଅପରିଚିତା, ରୁଦ୍ରା ସ୍ୱରୂପିଣୀ
ହୁଅ ତୁମେ ଶୁଭଙ୍କରୀ ।
ସୃଷ୍ଟିର ସ୍ଥିତିରେ ନୋହୁ ଇଏ
ବିନାଶର ଆଦ୍ୟ ଅବା ଅନ୍ତିମ ସୂଚନା ॥



॥ ୨୩ ॥

## ଅଣ ବାହୁଡ଼ା

ବିଗତ ମୋ ଦିନମାନ
ଫେରିବ ନି ବୋଲି ସିନା ଆଉ
ଆଜି ମୋର ଏଇ ଅନୁଧ୍ୟାନ-
ଏଇ ମୋର ଅଶ୍ରୁଳ ବିଳାପ
ଫେରାଇ ଯଦି ବା ପାରୁଥାନ୍ତି
ଅତୀତକୁ ଆଉ ଥରେ ବଞ୍ଚିବାର ଲାଗି-
ମହାର୍ଘ ଯା ଅନୁଭୂତି-
କରୁଥାନ୍ତି କାୟକଳ୍ପ ମନ୍ତ୍ରର ସାଧନା ପ୍ରତି

ତୀବ୍ର ଉପହାସ ।
ଜରାଗ୍ରହି ପ୍ରତିବଦଳକୁ
କାହିଁ ନାହିଁ ପ୍ରଭୁ ମହାମନା
ଆପଣା ତାରୁଣ୍ୟ ଅକୁଣ୍ଠିତ ଚିତ୍ତେ
ଢ଼ାଳି ଦେବ ନେଇ
ଅପରର ବିଶ୍ୱଗ୍ରାସୀ କାମନା- ଅନଳେ
ନା, ନା, ନୋହେ ଯଦି ଅଦେଖା ଅଶୁଣା
ସମ୍ଭବ କେବକେ
ଜରାର ସେ ଅଭିଳାଷ
ହେଉ ଚିର'ଅଭିଶାପଗ୍ରସ୍ତ ।
ସଂସାରର ଧୂଳିଲୀଳା ସରିଛି ଯାହାର
ବାନପ୍ରସ୍ଥେ, ଯତିବ୍ରତେ କି ଲାଗି ବିରାଗ ?
କାଳ ବଡ଼ ଅବିଶ୍ୱାସୀ, ସଙ୍କେତ ଦିଏନା
ଝଞ୍ଜା ଆଣି ଡୁଟାଇ ଦିଏ ସେ ଉତ୍‌ପାତ ।
ଜାଗେ ଅତି ଆକସ୍ମିକ ।
ଉଦ୍ଦଣ୍ଡ ସାଗରୀ ଲହରୀ ଗହଳେ
ସନ୍ତରିବା ଯଦି ନୋହିଛି ସାମର୍ଥ୍ୟ
ଲୋଡ଼ିବ କି ଅର୍ଥେ କେଉଁ ଅବତାରୀ ହାତେ
ଉଦ୍ଧାରଣା ପଥ ।
ଗ୍ଲାନି ପୂର୍ଣ୍ଣ ଜୀବନେ ମୋ
ତରଣୀ ଗୋଟିକ ବାତ୍ୟାହତ
ଦୀର୍ଣ୍ଣ ନିରାଧାର;
ନିର୍ମାଖୀ ହେଲେ ହେଁ ନିର୍ବିକାର,
ଅଣବାହୁଡ଼ା ସେ ।



॥ ୨୪ ॥

# ବଂଶୀଧ୍ୱନି

ଅଚାନକ କେଉଁ ଜନପଦେ
ପଲ୍ଲବ ଗହଳ ଶାଳବନ ଶବଳିତ ତଟ ତୃଣପ୍ରାନ୍ତେ
ଧାଇଁ ଆସେ ବଂଶୀଧ୍ୱନି ରହି ରହି
ବହୁଦିନୁ ଶୁଣିଥିଲା କାରୁଣ୍ୟ ମଧୁର
ରସାଳାପ ପରି,
ବାହୁଡ଼ା ଅଇଲା ପଥେ
ଧେନୁ ପଲ ଶୁଣନ୍ତି ଉତ୍‌କୀର୍ଣ୍ଣ
ଗୃହ ଫେରା ପଥିକ ସମେତ
ନାହିଁ ଛି ଯମୁନା
ନାହିଁ କଦମ୍ବ ତମାଳ ।
ନାହିଁ ଆଉ 'ଗୋପିନୀଙ୍କ ମେଳ କଉତୁକ;
ବେଳ ଲେଉଟାଣି ଫେରଇ ଷୋଡଶୀ
କଟୀ ତଟେ ଉଚ୍ଛୁଳା ଗାଗରୀ
କରିଛି ତା ଗତି ଅଳସ ମନ୍ଥର
ନାହିଁ ଆଉ କିଛିଟେକ ଶୁଣିବାର ସ୍ପୃହା ।
ପୟର ମଞ୍ଜିରୁ ବଳି ରୁଚି ଅନୁକାମୀ
ସେଇ ବଂଶୀଧ୍ୱନି,
ନ ଶୁଣିଲା ପରି ପ୍ରତିଧ୍ୱନି ଯାର
ଅନ୍ତର ବାହାର ତରଳାଏ ପ୍ରତିଟି ନିମିଷ ।
ଚଳାଇବ ତା ପଦପାତ ଭାଳେ
ପାରେ ନା'ରେ ହାୟ !
ସ୍ୱିନ୍ନ ଭାଳ ପଟ ହୋଇ ଉଠେ
ବିଦ୍ରୁମ ରଙ୍ଗିମ ।
ହେ ଗୋପଳ ବାଳ,
କାହିଁ ଲୁଚିଥାଅ ତୁମେ

ମଦିର ପରଶୀ ଏ ସୁରର
ଜନ୍ମ ଜନ୍ମାନ୍ତ ସାଧକ !
ଭଲ ଲାଗେ ନାକି କୈଶୋର ଚାପଲ୍ୟେ
ଅନାହତ ତରୁଣୀ ହୃଦୟେ
ଜାଳିବାରେ ଯୁଗାନ୍ତକୁ ଅଳିଭା ଜ୍ୱଳନ !
ସତେ ବା ଚେତାଇ ଦିଅ
ଏ ଜଗତେ କରୁଣ ଯା, ହେଉ ଜ୍ୱାଳାକର
ଆବେଶ ତା ସବୁଠୁଁ ମଧୁର ।

■■

॥ ୧ ॥

# ଧର୍ମାଧର୍ମ

ପୁଣ୍ୟ ପରିମାଣ କେତେ ହେଲେ ବା ସଂଚିତ
ତପ୍ତ ବୈତରଣୀ ସ୍ରୋତେ ଗତାସୁ ଲଭିବ
ମୁକ୍ତିପଥର ବୋଇତ ।
ଜାଣେ ମୁହିଁ ଧର୍ମ, ଜାଗେନା ପ୍ରବୃତ୍ତି;
ଅଧର୍ମ ଜାଣି କି ତହୁଁ ନାହିଁ ମୋ ନିବୃତ୍ତି–
ଏଇ ଯଦି ମୋର ଆତ୍ମ ପରିଚିତି
କେ ବା କହିଦେବ ମୋତେ କାହିଁଛି ମୋ
ପୁଣ୍ୟ ସଞ୍ଚୟନ ରୀତି !
ଉତ୍‌ଫୁଲ୍ଲ ମାଧବୀ ନିଶି
ଗନ୍ଧ ଭରେ ମନ୍ଦାକ୍ରାନ୍ତା
ସେ ହେଲାଣି ତୀବ୍ର ଦାବାନଳ;
ଜୀବନ ବ୍ୟଞ୍ଜନା ମାତ୍ରା,
ଆଜି କ୍ଷୀଣୁ କ୍ଷୀଣତର,
ମରି ବି ଜାଣେନା ଶରାହତ ପକ୍ଷୀ
ମୃତ୍ୟୁ ଯନ୍ତ୍ରଣା କାତର ।
ପଛକୁ ଅନାଇ ଆଉ ବ୍ୟର୍ଥ ବାହୁନାରେ
ଡାକୁଥିଲେ ଅଶ୍ରୁ ଖାଲି ହାହାକାରେ,
ଫୁଟିବ କି ଆକାଶର ନିଶୂନ ଅଙ୍ଗନେ ପାରିଜାତ
ଜୀବନେ ଘେରିଲେ ମହାନିଶା
ଅଛି ନାକି କେବେ ତା'ର ସୁପ୍ରଭାତ ?

■■

॥ ୨ ॥

# ଅସମାଧାନ

ତାରାଟିଏ ଦୂର ସଞ୍ଜ ଗଗନେ
ଝଟକି ଉଠିଛି ଏକାକୀ
ଜ୍ୟୋତି ଦରଶନ ସଫଳନେ ସତେ
ଆଉ କିଛି ନାହିଁ ମୋ ବାକି ।
ତନ୍ଦ୍ରା ଆଳସୀ କୋକିଳ ବଧିର
କଣ୍ଠ ହେଲାଣି ଏମିତି ସଅଳୁଁ ନୀରବ,
କେ କହେ ପ୍ରସାରି ବୁଲେ ନାହିଁ ବୋଲି ଆଉ
ସାଧନା ପଥରେ କିଛି ବା ଗୌରବ ।
ଗୋଧୂଳି ତ ଆସେ, ତେବେ କିକି ଏତେ ସେ
କ୍ଷୀଣାୟୁ,
ପାରେନି କଳପି, ମୋର ଦିନମାନ
ତାରି ପରି ନିମିଷେ ମାତ୍ର ଉଧାଉ ।
ଅସ୍ତରାଗ ର ବିଦାୟୀ ବେଦନା
ସ୍ୱର୍ଣ ଲାଗଇ ମଧୁର
ଅସ୍ତ ମ୍ଳାନିମା ସେ ବି ଭଲ ଲାଗେ
ଆଉ ଭଲ ଲାଗେ ଆଲୋକ ଚୂର୍ଣ ଚିକୁର ।
କିଏ ରେ ଅପଦେବତା
ଗ୍ରନ୍ଥିଳ କରି ଦିଏ ଏ ବିରାଟ ସନ୍ଧି,
ସମାଧାନ ତାର ଅଛି କିବା ନାହିଁ
ମୁହିଁ ମରେ ନିତି ଧନ୍ଦି ।
ଅମୁହାଁ ଦେଉଳେ ଯେତେ ମଥା ପିଟ
ସବୁ ସିନା ଅକାରଣ
ଯଦି ଅଥଳ ତିମିର ମୋର ଆନ ପ୍ରାନ୍ତ
ଏଣେ ବି ତ ଘେରି ରହେ ତୀବ୍ର ଜ୍ୱଳନ ।

■■

॥ ୩ ॥

# ବିଡ଼ମ୍ବନା

ଏକାକୀ ମୁଁ–
ବନାନୀର ସ୍ନିଗ୍ଧ ତରୁଛାୟା
ରବି ରଶ୍ମି ଆଲୋ' ଦିଏ,
ମାତ୍ର ହଜାର ଦିଏ ତା ସତ୍ତା
ପତ୍ର ଗହଳିରେ
ଯହିଁ ତରୁଦେହେ ଆଲିଙ୍ଗିଛି
ଆତ୍ମ ସମର୍ପଣେ
କେତେ ଜଣା ଅଜଣା ବଲ୍ଲରୀ ।

କବିତା, ବନିତା ଅଥବା ଲତାର
ନାହିଁ ଗତି
ଆଶ୍ରୟ ବିହୁନେ ।
ଅସର ପ୍ରବାହେ ବହମାନ
ଏଇ ଯେ ନିର୍ଝର,
ତୀରେ ତାର ବହେ ମୃଦୁ ବାୟୁ
ସେବି ଶୀତଳିତ ଶୀକରାଧିକାରେ ।
ପଲ୍ଲବର ଘନ ଶିହରଣ
କାହିଁ ରଖିଥାଏ ଏତେ
ତନ୍ଦ୍ରାଘେରା ଅଳସ ଆବେଗ ।
ଆନ ଲାଗି
କାମନା ଜଗାଏ ସିନା ଏଥି
ଅଜଣାର ସ୍ୱର୍ଗସୁଖ;
ସେଥି ମୋର ନାହିଁ ରୁଚି ଅବା ଲିପ୍ସା,
ମୁଁ ଯେ ଚାହେଁ ପୂର୍ଣ୍ଣ ନିଃସଙ୍ଗତା,
ବିଳୟି ଯିବାକୁ
ଶୂନ୍ୟ ହୋଇ ଅରୂପର ଶୂନ୍ୟାଙ୍ଗନ ଦେଖି ।

ଉତ୍‌କ୍ଷିପ୍ତ ଜନତାଠାରୁ
ଦୂରେ ବହୁ ଦୂରେ,
ଏକାନ୍ତରେ ବସି
କିଏ କହ ପାଇବ ନି ଭଲ
ବୁଡ଼ି ରହିଥିବ ଏହି
ନିର୍ଜ୍ଞାଳ ଶୂନ୍ୟ ପ୍ରୀତି ଅଚଳ ସଲିଳେ ।
ମହାପ୍ରଳୟର ଅବତାରୀ ମୀନ ପ୍ରାୟ
ନିର୍ଲିପ୍ତ, ନିଃସ୍ପୃହ ।
ଆଚମ୍ବିତ ଲାଗେ,—
ଶୁଣା ନୁହେ ଖାଲି,—
ଆଖି ଦେଖିଲାର ଅନୁଭୂତି—
କୋଟିପତି ତୋଳେ
ବିରାଟ ଅଟ୍ଟାଳୀ ଆକାଶ ଚୁମ୍ବିତ,
ବିଜୁଳି-ବାଲାରେ
ନିୟତ ଖଟାଇ ନର୍ମ ପଥଚାରୀ,
ପ୍ରତିଟି ଇଙ୍ଗିତେ ନିଜ ଅଭିରୁଚି ମତେ ।
ସେଇ କୋଠି ବି ତ ହୁଏ
ଶାନ୍ତି କୁଟୀର ନାମେ ଜଗତେ ଘୋଷିତ ।
ଆଉ ସିଏ
ଅମୃତ ପିଆସୀ ଶାନ୍ତିର ପୂଜାରୀ ।
ମେଘନାଦ ପାଚେରୀ ବେଢ଼ାରେ
ଅଶାନ୍ତିର ସଂକ୍ରମଣୁଁ
ଆପଣାରେ ଅବା ଆପଣା ଜନରେ
ଅଳ୍ପ ଆୟାସରେ ନେବ ମୁକୁଳାଇ ।
ସେ କି କେବେ ଦେଖିନାହିଁ
ଶାନ୍ତି ରସେ ଓତଃପ୍ରୋତ
ତୋଷଦାନୀ ଏଇ ନିକାଞ୍ଚନ ପଲ୍ଲୀ,
ଯୋଗ ସାଧନାର ନିର୍ଦ୍ୱନ୍ଦ ସମାଧି ?
ଅବା ଦେଖି ଶୁଣି

ରହିଯାଏ ଅନ୍ଧପୁତୁଳି ସଂବୃତା
ଗାନ୍ଧାରୀ ଜନନୀ
ଶତ କୌରବ ସୁତଙ୍କ ।



॥ ୪ ॥

## ଅନନୁଭୂତି

ସ୍ତବ୍ଧ ଅର୍ଦ୍ଧରାତ୍ରି
ନିଦ୍ରା ତେଜି ଉଠି ଦେଖେଁ
ନିର୍ମଳ ଶିଶିର ସ୍ନାତ ଆକାଶ ଆଙ୍ଗନେ
ଗୁଚ୍ଛ ଗୁଚ୍ଛ ତାରାପୁଞ୍ଜ
ମହାର୍ଘ ମଣି ମାଣିକ୍ୟେ
ମେଲିଛି ପୁଆରା ।
କାହାର—
କେଉଁ ଜ୍ୟୋତି ବିଶାରଦର
ହେବ ସ୍ପର୍ଦ୍ଧା,
ଅପରିସୀମ ଏ ଜ୍ୟୋତିମଣ୍ଡଳର
ଆଦ୍ୟଁ ପ୍ରାନ୍ତଯାଏ
କଳନା ବିସ୍ତାର ତା'ର
କରେ ରେଖାୟିତ ।
ନିମ୍ନେ ମସୀମୟ ଅନ୍ଧକାର—
ନିଦ୍ରିତା ଧରଣୀ—
ବିଗଳିତ କିରଣ ରାଶିର ଆଲିଙ୍ଗନ ମୁଗ୍ଧା
ବୁକେ ତା'ର ଯୁଗାନ୍ତର କେତେ ସୁପ୍ତିସୁଖ
ଅଭିଳାଷ,
ଭୋଳ ପ୍ରାୟେ ଜାଣେ ନା ସେ କିଛି ।
ମୁହିଁ, ଆଜି ନୁହେ,
ପ୍ରତିଟି ନିଶୀଥେ, ପ୍ରତି ନିୟତରେ,

ସେହିପରି
ଏକ ନିସ୍ତରଙ୍ଗ ସୁଷୁପ୍ତି ପିଆସୀ ।
ବିରାଟର ଅନୁଭାବନରେ,
ଏଇ ବିଶାଳତା, ଏଇ ଅତଳ ପରଶ
ଗଭୀରତା ମଧ୍ୟେ;
ହରାଇ ମୁଁ ପାରୁଥିଲେ ନିଜ ଉପଲବ୍ଧି
ସେଇଇ ହୁଅନ୍ତା ମୋର ପରମ ଆରାଧ୍ୟ ।
ଆଉ–
ମୋର ମତି, ମୋର ବୁଦ୍ଧି ବୃତ୍ତି ବା ବିଭ୍ରାନ୍ତି
ଆଜିର ଏ ଅବଚେତନା
ସେ ଦିନର ସ୍ୱପ୍ନମୟ ସ୍ମୃତି,
ସବୁ ନେଇ ସମର୍ପଣ କରିଥାନ୍ତି
ଅନିଶ୍ଚିତ ଭବିଷ୍ୟର
ପ୍ରତି ପଦପାତ ତଳେ ।
ସଂଜ୍ଞାହୀନ ଜଞ୍ଜାଳ ଯେତେକ
ହେଲେ ହେଉ ସତ୍ତାହୀନ
ଆଜିର ଏ ନିଃସଙ୍ଗ ନିଶିରେ
ସ୍ୱର୍ଣ୍ଣ ତା'ର ପ୍ରୀତି ପରିରମ୍ଭ ।



॥ ୫ ॥

## ଦୂରାନ୍ତରୁ

କେତେ ଶୁଣାଇବ ଆଉ
ସେଇ ପୁରାତନୀ ଗୀତି ।
ସେଇ ପୁରାତନୀ ସ୍ୱର-ଭାରତୀର
ମୂର୍ଚ୍ଛନା ବିଳାସ,
ଯାହା ଶୁଣିବାକୁ ଭଲ ଲାଗେ,
ଅଥଚ ତହୁଁ ମୁଁ ଖୋଜଇଁ ନିସ୍ତାର ।

କି ମହାବେଦନେ କଣ୍ଠସ୍ୱର ତବ
ଅବିରାମ ହେଉଥାଇ କମ୍ପ ।
ତୁମେ ସିନା ତୁମ ଅନ୍ତର୍ଗତ କାହାଣୀକି
ଦେଇଯାଅ ଅପରୂପ ରୂପ,
ଘନାୟିତ କେଉଁ ଦୁଃଖ ଭାରେ ତବ
କରିବାରେ ଲଗ୍ନ-
ଜାଣନ୍ତକି ତା'ର ମୃଦୁ ସ୍ୱଧ୍ୱନି
କେତେ କାରୁଣ୍ୟ ଜଗାଏ
ଧରଣୀର ବୁକୁତଳେ
ସୂକ୍ଷ୍ମ ତନ୍ତ୍ରୀପରେ !
ମର୍ତ୍ତ୍ୟର ଏ ରଙ୍ଗଭୂମି
ବହୁ ବିଷାଦାନ୍ତ ଅଭିନୟ
ହୁଏ ଉଦ୍‌ଘାଟିତ,
ହେ ଚାରଣ କବି,
ତୁମ ସ୍ତନିତ କ୍ରନ୍ଦନେ
ଆଉ ତାକୁ କର ନାହିଁ
ଜଟିଳରୁଁ ଜଟିଳତର ।
ନା, ନା-
ମଳୟର ଚୋରାଚୁମ୍ବ
ଦୂରେ ଥିଲେ ଥାଉ
କରନା ହେ ତାରେ
ଆକାଶ କୁସୁମ ।

■■

॥ ୬ ॥

## ବର୍ଷାର୍ଚ୍ଚନା

ଦୂର କାନନୀର ଶୀର୍ଷେ
ଆଉ ଆମ୍ର ନିକୁଞ୍ଜର

ପର୍ଣ୍ଣ ଗହଳିଆ ଶିଖ ଦେଶେ,
ଓହ୍ଲାଇ ଆସିଲେ ଆଷାଢ଼ର ଆଦ୍ୟବୃଷ୍ଟି,
ବାତାୟନ ପାଶେ ବସି ଭୁଲିଯାଏ
ଶିଥିଳ କବରୀ ଭାର ସାଜିବାକୁ-
ନ ହେଲେ ହେଁ ଅନୁଦ୍‌ବିଗ୍ନମନା
ନବ କୁଳବଧୂ ।

ସମୀରଣ ବହି ଆଣେ ଶୀକର କଣିକା
ପୋଛି ଦେଇ ଯାଏ
ବିନ୍ଦୁ ବିନ୍ଦୁ ସ୍ୱେଦୋଦ୍‌ଗମ ତକ
ଲଲାଟ ଓ କପୋଳ ମଣ୍ଡଳୁଁ
ଲଭିବାରେ ସୁନ୍ଦରୀ ଅଧର ପୁଟୁଁ
ଦରସ୍ମିତ ସୋହାଗ ମାଧୁରୀ
କିଏ ବା କହିବ
ବସନାଞ୍ଚଳେ ତା ବାନ୍ଧି ହୋଇ
କାଢ଼ କାଳ ଲାଗି
ଶ୍ରୀ ଅଙ୍ଗ ସୌରଭ ଭୋଗଲିପ୍ସା
ପାରିଛି ସଂହରି ଆପଣା ଅନ୍ତରୁ ।

କୌତୁକ କେଳି ରଚନା
ଏଇ ସିନା ଚଞ୍ଚଳ ମତିର ।
କିନ୍ତୁ ଅସଂବୃତ ବେଶୀ
ଅସହାୟ ବାଳା
ହେଉଥାଏ ବ୍ୟସ୍ତ ଅସମ୍ଭାଳ
କେମନ୍ତେ ସେ କରେ ତା'ର
ସରମ ନିରୋଧ,-
ହୁଏ ତ କା ଅନାୟତ୍ତ ଦୃଷ୍ଟି
ଚୋରି କରି ଘେନି ଯାଇଥିବ
ନିଟୋଳ ତା ଯୌବନ ଲାବଣ୍ୟ ।

ଆଜି ଭିଜା ମୃତ୍ତିକାର ମୃଦୁ ବାସାମୋଦ
ଆକୁଳିତ କରିଯାଏ
        ଏମିତିକି
ବକୁଳ ବନର ବର୍ଷାସ୍ନାତ
ଗନ୍ଧ ନମ୍ର ପୁଷ୍ପ ମହୋତ୍ସବ ।
ନୀରବେ ମୁଁ ନୈବେଦ୍ୟ ଅରପେଁ
ନବ ବର୍ଷା ତରେ
ଦୂରୁଁ- ବହୁ ଦୂରୁଁ-
ଗୋଦାବରୀ ତୀର ସାନୁମାନୁଁ
ଅଞ୍ଜଳି ମୋ ଭରି
ତୁଷାର ହୁଁ ବଳି ଶୁଭ୍ର
ଯୂଥୀ ଓ ନବମଲ୍ଲୀର
ଦରଫୁଟନ୍ତ ସ୍ତବକେ ।



॥ ୭ ॥

## ପ୍ରତିଦାନ

ସେ ସିନା ଦେଇଛି ଯାହା ଥିଲା ତାର
ମୋର ଦୁଇ କରତଳ ଭରି
କି ବା ତାର ଥିଲା ଆଶା ବା ଆକାଂକ୍ଷା
        ଦିନେ ସେ କହି ନି ଖୋଲି;
        ମୁଁ ବି ଯାଚି ହୋଇ
        ପଚାରିଲି ନାହିଁ ଦିନେ
କି ବା ମୋର ଥିଲା ତାକୁ ଦେଲା ଭଳି ।
ଆଜି ଦେବା ଲାଗି ବଳିଲେ ଆଗ୍ରହ
ନାହିଁ ସିଏ ।
ସଞ୍ଚି ରଖେ ନେଇ ତାର କମ୍ର ବକ୍ଷପୁଟେ ।
        ଅତୀତରେ କେବେ ସିଏ ଥିଲା ।

ମୁଗ୍ଧ ବଧୂ, ଶାନ୍ତ, ସୁଶୀଳା ଓ ନମ୍ରା
ମୁଁ ବା ଥିଲି ତାର କେଉଁ ଗୁଣେ ସମକକ୍ଷ,
ଖୋଜିଲେ ହେଁ ରସାତଳ ଯାଏ
ନାହିଁ ମିଳେ ଥଳ କୂଳ ।

ପ୍ରୀତି ତନ୍ମୟତା-
ଏକର ଆନଠି
ହରାଇବାର ସୌଭାଗ୍ୟ
କ୍ରୌଞ୍ଚ ମିଥୁନର
ନିର୍ବୋଧ ନିଷାଦ ପାଇଁ
ନିତାନ୍ତଇ ମୂଲ୍ୟହୀନ ଅତି ।
ତଥାପି ସେ ଲଭିଲା ପ୍ରତିଷ୍ଠା ।
ନ ମାଗୁଁ ବି ଖଳ ଶିରେ
କଲ୍ୟାଣ ନିଗିଡ଼େ ।
କବି କଣ୍ଠେ ସ୍ବରେ
କାଳର କପୋଳ-ତଳେ
ଏକ ଅଶ୍ରୁ ବିନ୍ଦୁ
ଶୁଭ୍ର ସମୁଜ୍ଜ୍ୱଳ ।
ଆଜି ମୋ ନୟନ ପ୍ରାନ୍ତୁ
ଶତ ଲୁହଧାର ଝରିଲେ ବି
ସାହାରାର ତପ୍ତ ବାଲୁବନେ
ହରାଇ ବସେ ସେ ଏକାନ୍ତତା ନିଜର ଅସ୍ତିତ୍ୱ ।
ତେବେ କାହିଁ ସେଇ ବିଗତ ପ୍ରସିଦ୍ଧି ।
ଯାଇଛି ସେ;
ଯାଉ,-
ଯଦି ତାର ଯିବାରେ ଆନନ୍ଦ ।
ତାରା ପୁଞ୍ଜେ ସ୍ୱାତୀ,
ଅବା ଆଉ କିଛି ହୋଇ
ଜଳୁ ଥାଉ ପ୍ରତିଟି ନିଶାରେ ।

ହଜି ଯାଉ ପଛେ
ହରିତାଳିକାର ଶତସସ୍ର ତାରକା ଗହଣେ
ବାଛି ମୋର ଚିହ୍ନି ନେବା ଶକ୍ତି ।
ଏତେ ଦିନେ ଆଜି
ଦେଇପାରି ନ ଥିବା ତ୍ରୁଟିର
ଏଇ ମୋର
ହୃଦଭରା କ୍ଷୁଦ୍ର ଏକ ପ୍ରତିଦାନ ।



॥ ୮ ॥

## ସନ୍ଧ୍ୟା

ବିଦାୟ ବେଳାର ମର୍ମଛୁଆଁ କଥା
ସନ୍ତର୍ପଣେ ଶୁଣେ ପ୍ରଣୟିନୀ
ଆସନ୍ନ ବିରହ ଭାବେ
　　　ଭୟାତୁରା ।
　　　କଷାୟ ଉତ୍ତରୀ ଭେଦି
ସ୍ୱର୍ଣ୍ଣାଙ୍ଗୀର ରସାଣିତ ଅଙ୍ଗ ଆଭା
ଦେଖେ ମୁହିଁ ମୁଗ୍ଧ- ପଲକ ପଡ଼େନା-
ନୂଆ, ଅଙ୍କୁରିତ କିଶଳୟ ପରି
ହେଲାଣି ଆରକ୍ତ ।
କିଏ ସେ ପ୍ରଣୟୀ ?
ନିକଟେ ନା ଦୂର ଅସ୍ତାଚଳେ ଚୂଳେ ?
ସତେ ନା କି ବିଦାୟୀ ପ୍ରିୟର
ନିବିଡ଼ ଆଶ୍ଳେଷ
ଏଇ କ୍ଷଣିକାର
କାମନା ପରାଗ
ଅଧିକରୁଁ ଅଧିକରେ
କରିଛି ରକ୍ତାକ୍ତ ।

ଲାଜ ସରମରେ ସିନା ବୃତ୍ତିମରେ
ଅନାୟତ୍ତ ଅଭିସାରେ ପ୍ରୀତି ପୂଜାରିଣୀ,
ଆନକୁ ବି - ଦ୍ୟାବ୍ୟା ପୃଥିବୀ କି-
ନେଇ ନିମଜ୍ଜାଇ ଦିଏ
ନିଜ ଲାଜ ପଣେ
ଅଣ ଲେଉଟାଣି ରକ୍ତସିନ୍ଧୁ ସ୍ରୋତେ ।
ତାକୁ ଭଲ ଲାଗେ
ତନୁ ରୋମାଞ୍ଚନ ମରଣର ତ୍ରାସ ।
ଊର୍ଦ୍ଧ୍ୱେ ଅନ୍ତରୀକ୍ଷ ପ୍ରାନ୍ତୁ
ଗୋଟି ଗୋଟି ଜ୍ୟୋତିର୍ବିନ୍ଦୁ ଦ୍ୟୁତି ବିତରନ୍ତି
ଲଜ୍ଜାବତୀ ଲଜ୍ଜା ନୀରାଜନେ ।



॥ ୯ ॥

## କୌମାର୍ଯ୍ୟ

ଅନଙ୍ଗୁଳି ଲୂନ
ସ୍ତନାଙ୍କୁରେ ମୋର
ତୋରା ଶୀତାକ୍ତ ମଳୟ ସ୍ପର୍ଶ
ଚନ୍ଦନ ଲେପିଲା ପରି ଲାଗେ ।
କାଞ୍ଚୁଲି ତଳର ମଧୁର ଉଷ୍ଣତା
ସାଥେ ତାର ଖେଳି ବୁଲେ ଲୁଚକାଳି
  କିଶୋର ସୁଲଭ ।
ବୃନ୍ତ କୋଳେ ଫୁଟନ୍ତ ଯୂଥୀର
ତନ୍ଦ୍ରା ଭାଙ୍ଗି ପାରେ ନାହିଁ,
  ମଧୁଲୋଭୀ ପ୍ରଜାପତି
ଯେତେ ସେ ନିବେଦି ବୁଲୁ
  ପ୍ରୀତି ଅନୁରାଗ
ଅନୁକ୍ତ ଗୁଞ୍ଜନେ;

ତେବେକେ ସେ ହୁଏ ନି ନିରାଶ ।
ମୋର ଏ ଅଧର ପ୍ରାନ୍ତେ
କେ ଜାଣେ କି ଖୋଜେ,
କିସ ଅବା ପାଏ କିବା ନାହିଁ,
ମୁଁ ଦେଖେ-
ଦେଇଛି ବୋଲି ତହିଁ
ଚିତ୍ରକ ତା ତନୁରୁ ଅଡ଼ାଡ଼ି,
ଆଣିଥାଏ ଆହରି ଅବା ତା
କେତେ ରେଣୁ କଣା
କେତେ କେତେ ଅନ୍ୟ ଫୁଲ ଦେହୁଁ ।
କୋରକିତ ଆଙ୍ଗୁଳି ବଢ଼ାଇ
ସ୍ନେହାଦର ଦେବାରେ ମୋ
ଛୋଟ ପ୍ରୟାସଟି
ଭଲ ଲାଗେ କିବା ନାହିଁ ତାକୁ
ଦିଏ ନି ରେ ଧରା;
ଅଥଚ ଏଠି ବି ତା ଚାଟୁଭାବା
ଶୁଣାଇ ଯାଏ ସେ ।
ଇଏ ଯେହ୍ନେ
ସୁକୁମାରୀ ସ୍ୱର୍ଣ୍ଣ ଚମ୍ପାକଳି,
କାନେ କାନେ ତାର
ଜାଳି ଦେଇଯିବ
ସ୍ୱପ୍ନର ମଦିରା ।
ମୁଁ ବି ସପ୍ନ ଦେଖେ ଆଜି-
ଏଇ ସଞ୍ଜ ପୁରୋଭାଗେ
ଉଡିଯାଏ
ଏଇ କାନ୍ତିମତୀ କାଦମ୍ବିନୀ ସନେ ।
ଦୂରୁଁ ଦୂରାନ୍ତରକୁ
ଯହିଁ ଭାସମାନ ମାନ-ସରୋବର
ହଜାଏ ନିଜେରେ

ନିଜ ବିସ୍ମୃତିରେ
ଅକଳନ୍ତ ଲାବଣ୍ୟର ନିଗୂଢ଼ ନିଳୟେ ।
ମୁହିଁ ତହିଁ ଫୁଟିଥାଏଁ
ଆପଣା ସୌରଭ ଭାରେ ଆନମିତ
ପ୍ରଭାତ ନଳିନୀ-
ଆନ ଅଗୋଚରେ ।



## ॥ ୧୦ ॥

## ନିରାଧାରା

ଆଗୋ ପ୍ରିୟ
ଶତକୋଟି କଣ୍ଠରୋଳେ
ଉଠେ ସିନା କୋଟି ତାନପୁରା–
ଆଶାବରୀ ତାନ,
କିବା ଲାଭ ତହୁଁ ମୋର ?
ମୁହିଁ ପାଏ ପରମ ପୁଲକ,
ମିଳେ ମୋତେ ପ୍ରାଣର ସନ୍ଧାନ
ଏକା ତୁମ ପ୍ରିୟ ଭାଷେ ।
ସେଇ ଅଧରର ଅମୃତିମ ସ୍ପର୍ଶେ
ମୋର ଏଇ ଓଷ୍ଠାଧରୁଁ ପରା
ପ୍ରବାଳରୁ ବଳି ରକ୍ତିମା ଉଚ୍ଛୁଳି ଉଠେ;
ଭାଳି ହୁଏଁ–
କେତେମନ୍ତେ ଜାଣ ତୁମେ
ଚାଳିବାରେ ଉଚ୍ଚାଟନା ମୋର
ଅଳପକେ ମୋତେ
କରି ଉଜ୍ଜୀବିତ ।
କାହିଁ ଥାଏ ତୁମ ବିରାଟ କାମନା
ଉଡାଇ ଯାଏ ତା ଉଦ୍ଧତ ଚିରାଳ ।

ଘନ ଘନ ଶିହରଣ ସ୍ତୁରେ
ଅବିନୀତ ସ୍ତନାଗ୍ର ଯୁଗଳେ
ତୁମେ ଦିଅ ଗାଢ ଅଙ୍ଗ ନିପୀଡନ
ଯେତେ ମୁହିଁ ମାଗେ
ତହିଁ ଲୀନ ହୁଏ ଏକାକାରେ;
ତୃଷା ମୋର ବଢି ଚାଲେ–
ବନ୍ଧୁ ଥାଉ, ସେଇ ମୋର ଭଲ,
ତୃପ୍ତି ? ତୃପ୍ତିର ବି ନାହିଁ ପରିତୋଷ ।
ଆଜି ଆଗୋ ବନ୍ଧୁ, ପ୍ରିୟତମ
ତୁମେ ସେଇ ପ୍ରିୟଂବଦ,
ଜିହ୍ୱାତଟେ ତୁମ ସେଇ ତ ବାଗ୍‌ଦେବୀ,
ଅଧିକରେ ଅର୍ଥପୂର୍ଣ୍ଣା
        ଦେଖେଁ ମୁଁ ଆଗହୁଁ ।
କେମନ୍ତେ କହିବି
ଯା'କୁ ତୁମେ କହୁଥାଅ
ପରିପୂର୍ଣ୍ଣ ସୁଧାଭାଣ୍ଡ ବୋଲି
ମଧୁ ଚଇତର ସେଇ ଅପାଶୋରା ଦିନେ,
କେଉଁ ଦିନୁ ସେଥି ଜନମିଛି
        ଏକାଧିକ ଛିଦ୍ର
        ଏତେ ଅଲକ୍ଷିତେ
କହ ପ୍ରିୟ କହ ନି ଫିଟାଇ
ଅଧରେ ମୋ ମଦିରା ସଙ୍କେତ ରାଗ
ନାହିଁ ନା କି ଆଉ ?
ସବୁ ଅବା ଶୁଖି ଯାଉଛି ନିପଟ,
ନାହିଁ ନି ବା ହାରହୀନ ପୟୋଧରେ
        ପୂର୍ବ ଅନୁରାଗ !!

■■

॥ ୧୧ ॥

## କଃ ପନ୍ଥାଃ

ଭଲ ଲାଗୁ ଅବା ନାହିଁ ଗୃହାଙ୍ଗନ
ଜନମୁଁ ବା
ଅଜ୍ଞାନ ବାଲୁତ ବୟସ ବେଳହୁଁ,
ଅକପଟ ପରିଚୟ ତାର
ଦେଇ ସେ ଯାଇଛି ।
ସେଇ ଯଦି ସର୍ବମୟ ପରିଚିତି ତାର
ତେବେ କିସ ଘେନି
ସୁଜ୍ଞଜନେ କହୁଥାନ୍ତି
ସୁନ୍ଦର ସଂସାର ନା କି ସୁଖ ନିକେତନ,
ଯେଉଁ ସୁଖ ଲାଗି
ନିର୍ଜ୍ଜୟ ଦେବତା ସୁଦ୍ଧା
ଲୋଭାଇ ହୁଅନ୍ତି
ମର୍ତ୍ତ୍ୟପୁରେ ଅବତରିବାରେ ।
ସୁଖ ଅବା ଆଉ କିଛି ଅନ୍ୱେଷଣେ
ଏକ କ୍ଷୁଦ୍ର ଗୃହ କୋଣେ
ଗୃହୀପଣେ ଯାପନ୍ତି ମୁଁ ଦିନମାନ
ଅନୃଣୀ ଓ ଅପ୍ରବାସୀ
ଏଇ ମାତ୍ର ମୋର କ୍ଷୁଦ୍ର ଅଭିଳାଷ ।
ନାହିଁ ମୋର ଲକ୍ଷ୍ୟ
କିଞ୍ଚିତରେ ହେଲେ
ମର ଜଳ୍ପି ଅମର ଜନ୍ମର ମହାର୍ଘ ସମ୍ମାନ ।
କେତେ କେତେ ଯେ ରହସ୍ୟ
ଘେରି ରହେ ଏ ଜୀବନେ,
ଭେଦନ ଅକ୍ଷମ ।
ଅନାସକ୍ତ ଯୋଗୀ ନେତ୍ରେ ଯାହା
ଘୋର ମାୟାଜାଲ

ଢାଳିକ, ସେ ବି ଯଦି ପାତି ଥିଲା ପାଦ
ପାରେ ନାହିଁ ସଂବରଣ କରି;
ମୁହିଁ ବି ପଚାରି ବୁଲେଁ
କିଏ ଦେବ କହି
କାହିଁ ପନ୍ଥା–
ଦିବା ଲୋକେ ଅବା
ଅମା ଅନ୍ଧକାରେ ।



## ॥ ୧୨ ॥

## ଶୁଭ୍ର ସମାହାର

ଏତେ ପୁଷ୍ପ,
ଏତେ ଏତେ ଗୁମ୍ଫିତ ସ୍ତବକ,
କ୍ଷୀରୋଦର ଫେନ ପୁଞ୍ଜେ
କାହିଁ ଏତେ ଧବଳିମା;
ଡାଳ ଭାଙ୍ଗି ପଡ଼େ ଫୁଲେ ଫୁଲେ
ଅଜସ୍ର ସମ୍ଭାରେ,
ଗୁଣୀଜନ ପରି,
ଅବା ମହୀମୁଖେ
ଅବିରଳ ବାରିଧାରା ପାତ ଭଳି
ଶୁଭ୍ରାୟିତ ।
ଶାଳ ବନାନୀର ଏଇ ପୁଷ୍ପଳ ବିସ୍ତାରେ
ଅଙ୍ଗ ସଙ୍ଗ ଲୋଡ଼ି ନ ମଜ୍ଜୁ ବି ମଜ୍ଜେ
ମଦିରଳ ରସାଳ ମଞ୍ଜରୀ,
ପବିତ୍ର ଯେସନ ଗଙ୍ଗା ଯମୁନାର ପ୍ରୟାଗ ସଙ୍ଗମ;
ଫୁଲ ରେଣୁମୟ ଏଇ ନା କି
ବସନ୍ତ ଓ କାମଦେବତାର ଦୋଳ ମହୋତ୍ସବ !
ଅଙ୍କୁରିଛି କିବା ନାହିଁ

ପର୍ଣ୍ଣକୋଷେ କିଶଳୟଟାଏ
ତରୁମୂଳ୍କୁ ଝରାପତ୍ର ସବୁ
ନେଲାଣି ଉଡାଇ
ଉତଳା ବତାସ ।
ରସପାୟୀ ସିଏ; ହେଲେ
ଆଜି ତାର ମର୍ମର ନିସ୍ୱନ
ହେଲାଣି ନୀରସ ।
ଧୀରି ଧୀରି ପଦପାତେ
ମଧୁପ ଗୁଞ୍ଜନ ସ୍ପୃହା
କରି ସେ ଗଲାଣି
ପରାଗ ବହୁଳ ଫଗୁଣ କାନନେ
ଏଇ ମାତ୍ର ଏକଇ ସମ୍ବଳ ।
ଆଜି ଲାଗେ ମୋତେ
ଏଇ ଶୁଭ୍ର ପୁଷ୍ପରାଶିର ବୈଭବେ
ତୁଷାର ଧବଳ ଊର୍ମିମୟ
ଏଇ ଶୀର୍ଷେ ଶୀର୍ଷେ,
ସନ୍ତରି ବୁଲନ୍ତି ମୁହିଁ ଅଗ୍ରଦୂତ
ଅଣ-ଉଭଳା ଶାନ୍ତିର—
ଆଜି ମୀନରୂପୀ
ଯଥା ଆଦ୍ୟ ଅବତାରେ ।
ପାରନ୍ତି ତ ରଚି ଦେଇ ଯାନ୍ତି
ପୁଣ୍ୟ ପରି ଶୁଭ୍ରମୟ
ଶାଶ୍ୱତ ସଂସାର
ଆପଣାର ଅଭିରୁଚି ଜାଣି ।

■■

॥ ୧୩ ॥

## ସଞ୍ଜ ସୋହାଗ

ଓହ୍ଲାଇ ଆସିଛି ସନ୍ଧ୍ୟା
ବାରୁଣୀ ଗଗନୁ

ଦୀକ୍ଷା ଶୁଚି-ଶୁଦ୍ଧା ସନ୍ୟାସିନୀ ପରି ।
ଲୁଚି ଲୁଚି ନି ତନୁଶ୍ରୀ
ଗୈରିକ ବସନ ସାତପ୍ରସ୍ତକୁ
ଝଲି ଉଠେ ଯେ ରକ୍ତିମ ଆଭା
ଆଜି ତାହା ପ୍ରକାଶିଛି
ପ୍ରାଣବନ୍ତ ହୋଇ
ଏଇ ଗୋଧୂଳିର ଶୀତସ୍ପର୍ଶା ଲଗ୍ନେ ।
ଗଗନ ପ୍ରାଙ୍ଗଣୁଁ କୁରଙ୍ଗ-ନୟନ-ଜିଣା
ନୀଳିମାର ଗାଢ଼ ଉଜ୍ଜ୍ୱଳତା
ଏତେ ବେଗି କିଏ ଯେହ୍ନେ ହରି ନେଇ
ଅନ୍ତିମ ଆଭାସ ସୁଦ୍ଧା ଦେଇଛି ଲିଭାଇ ।
ଏଠି ଅଛି ଖାଲି ଲଳିତ ଲାବଣ୍ୟ
ସବୁ ବିରଞ୍ଜିତ କରା ଦିଗଙ୍ଗନାଙ୍କର
ରକ୍ତ କରବୀ ହୁଁ ବଳି ହୃଦରାଗ ଜ୍ୱଳନ୍ତ ଜୁଆର;
ଦିନାନ୍ତେ ତ ମାୟାଲାଗେ ବେଶୀ
ଚାଚେରୀ ଖେଳକୁ ସୋହଗିନୀଙ୍କର ।

ଜାଣେନା—
ତ୍ୟାଗର ଅନ୍ତରାକୁଁ କେବେ
କ୍ଷରିଛି କି ନାହିଁ—
ନ ହେଲା ବା ଆତ୍ମତୋଷ ସ୍ପୃହା—
ଦେବାର୍ଚ୍ଚନ ଲାଗି ହେଲେ
ପୁଷ୍ପ ଆହରଣ କାମନା ବିଳାସ ।

ଅଦୂରେ ଶୁଭଇ ଶଙ୍ଖ,
ମୃଦଙ୍ଗ ତାଳର ଲହରେ ଲହରେ
ସନ୍ଧ୍ୟା ବନ୍ଦାପନା ବିତରେ ପ୍ରଶାନ୍ତି,
ଆଳତୀର ଘଣ୍ଟାଧ୍ୱନି ମୂର୍ଚ୍ଛନା ପ୍ରବୁଦ୍ଧ ।
ଆଗୋ ବରବଧୂ
ତୁମ ହାତ ଦୀପଶିଖା

ଧୀର ସମୀରଣେ ଧୂପ ସମ ଜଳି,
କହ କି ମାନିନୀ,
ଜଳାଇ ଯାଇଛି କେଉଁ ତୀବ୍ର
ହଳାହଳ ଜ୍ୱାଳା ।
ଭୟ ଲାଗେ ଅଚିନ୍ତ୍ୟ ଚିନ୍ତନେ
ସତେ ତୁମେ
କଳହାନ୍ତରିତା ?



## ।। ୧୪ ।।

## ଦୁର୍ଲ୍ଲଭା

ଆଜି ମୁଁ କବିତା ଲେଖେଁ—
ଦୁର୍ଲ୍ଲଭ କବିତା,
କେବେ କାହା ଜିହ୍ୱାତଟୁଁ
ପ୍ରଥମ ସ୍ଫୁରିତା,
ଛନ୍ଦୋମୟୀ ଆଦ୍ୟାଗୀତି ବାଣୀ ସ୍ୱରୂପିଣୀ
ତମସା ପୁଳିନ ବନୁଁ ଆଜି ଏତେ ଦିନେ ବି ଯାଇନି
ନିତ୍ୟ ନୂତନ ପରି ଯା
ଧ୍ୱନିତ ଝଙ୍କାର,
କେତେ ମାତ୍ର ତହିଁ ହାୟ
ହରାଇ ଯିବାର
ବିହ୍ୱଳିତ ଛନ୍ନମତି ସୃଜନ ଆକାଙ୍କ୍ଷା ।
ଫୁଟିବାରେ ଅସମର୍ଥ ଯାହା
କାହିଁ ତାର ଗୀତି ଟୀକା ବ୍ୟାଖ୍ୟା ।
ନାହିଁ ମୋର ପାଶୋରା ଦିନର
ଗତସ୍ମର ଖ୍ୟାତି
ଉତ୍ସବ ମୁଖର କେବୁଁ ସେ ରଜନୀ
ହେଲାଣି ପାହାନ୍ତି ।

ପଦ୍ମବନୁ ଯାଇଛି ବା ବାସ
କେଶର ରେଣୁ ବା ଗଲାଣି ମଉଳି
ଦିନ ଥାଉଁ ଯାତ୍ରା ପଥ ମୋର
ପ୍ରତିବନ୍ଧେ କେ ନିଏ ଆଗୁଳି ।
କେବେ ଲେଖିଥିଲି କି ବା ନାହିଁ ମୁହିଁ
ଦୁର୍ଲ୍ଲଭ କବିତା
କିଏ ମୋତେ ଆଶ୍ୱାସିବ କହି
ନୁହେ ଏ ମୋ ଚରମ ଅସ୍ମିତା ।



॥ ୧୫ ॥

## ସ୍ୱାତୀ

ଜ୍ୟୋତିର୍ମଣ୍ଡଳର
ଅନନ୍ତ ପରିବ୍ୟାପ୍ତିରେ
ଶତ ଶତ ଜ୍ୟୋତିଷ୍କର
ମହା ଅବଦାନ ଘେନି ସ୍ୱିଗ୍ଧୋଜ୍ଜ୍ୱଳ
ଯେଉଁ ଜ୍ୟୋତିରାଶି
ସ୍ୱାତୀର ଦେବାର ଦୀପ୍ତି ପରିମାଣ
କେତେ ତହିଁ, ନିଜେଇ ଜାଣେ ନା ।
ଜ୍ୟୋତିବିଶାରଦ ବୁଧେ
ସେ ବି ମରୁଥାନ୍ତି
ମହା ମହା ବିଭ୍ରାନ୍ତିର ଜାଲେ ।

ସ୍ୱାତୀ, ସର୍ଜନା ଯା'
କେଉଁ ଏକ ରହସ୍ୟ ମଞ୍ଜୁଳ
ହେମମୟ ମୁହୂର୍ତ୍ତର
ପ୍ରତୀକ୍ଷାରେ ବସିଥିଲା
ସୃଷ୍ଟିର ପ୍ରାକ୍ କାଳେ ।

ସ୍ୱାତୀ ତାର, ସେଇ ମହାଲଗ୍ନେ
ପୁଣି ଆଉ ଏକ ରହସ୍ୟ ସଂଘାତ,
ଆହୁରି ସୁନ୍ଦର,
ଆହୁରି ବି ମନୋରମ ।
ଅକଳନ୍ତି କେତେ ବର୍ଷାଧାରା ପାଠୁଁ
ସ୍ୱାତୀର ସେ ଦୀପ୍ତି ସ୍ପର୍ଶ,
କେଇଟା ବା ଜଳବିନ୍ଦୁ
ବାଛି ନିଏ ଭୋଜବିଦ୍ୟା ବଳେ;
କେମିତି ବା ଜାଣେ ସିଏ
କେଉଁ ଅତଳ ବାରିଧି ତଳେ
ଚାହିଁ ରହିଥାଏ ମୁଖ ଫେଇ
ପନ୍ତି ପନ୍ତି ଶୁକ୍ତି
ଗର୍ଭ କୋଷେ ରଖି ଉନ୍ମୀଳିତ ।
ବିଚିତ୍ର ସମସ୍ୟା-
ଉର୍ବର ମୃତ୍ତିକା ପରି,
ମଦାଳସୀ
ନିମଷେ ହୁଏ ସେ ଉଜ୍ଜୀବିତ ।
ଆଚମ୍ବିତେ ଦେଖେ ବିମୁଗ୍ଧା ବସୁଧା
ନିପତିତ ଜଳବିନ୍ଦୁ ହେଲାଣି ଫଳିତ
ସ୍ୱଚ୍ଛ ସମୁଜ୍ଜ୍ୱଳ ମୌକ୍ତିକ ବିନ୍ଦୁରେ ।

✲✲✲✲✲✲✲✲✲✲✲✲✲✲✲✲✲✲✲✲

ଆଜି ନାହିଁ ମହୀତଳେ
ରାଜ ରାଜେଶ୍ୱରୀ
ବକ୍ଷ ଯାର ମଣ୍ଡିଥାନ୍ତା
ଯତ୍ନେ ଆହରିତ ରତ୍ନ ମହୋଦଧି ଗର୍ଭୁ,
କୁଶଳୀ ହାତର ସୂଚୀ କଉଶଳେ ରଚା
ଏଇ ମୁକ୍ତାମାଳା,
ଯାହା ଧରା ମଣ୍ଡନାକ

ଚିତ୍ତ ଲୋଭୀ ଧ୍ୟାନ ଓ ମନନ ।
ସ୍ୱାତୀ ! ସତେ ଦିଅ ନି ସୂଚାଇ,
କେବେ କିପରି ସମ୍ଭବେ
ସେଇ ଶୁଭଲଗ୍ନ ଯୋଗ,
ଯେବେ ପ୍ରତିଟି ଧାରାରେ
ଯେତେ ଜଳବିନ୍ଦୁର ସମ୍ପାତ,
ସବୁ ହେଉଥିବ ଦିନ ଦିନକରେ
ଗୋଟି ଗୋଟି ଉପମା ନିନ୍ଦିତ ମୁକ୍ତାର ଗୋଳକ ।



॥ ୧୬ ॥

## ପ୍ରଲୁବ୍ଧ

ତୁମେ ଯେଣୁ ଦେହାତୀତ
ତୁମ କୃପା କମଣ୍ଡଳୁ ବାରି
ନତଶିରେ ମୋର ଝରିପଡୁ
ଦିନେ କରିନି ଦୟିନୀ ।
କେବେ ଆସି ବିଜୁଳୀ ଚମକ ପରି
ଯାଇଛି ପ୍ରଭାତ ।
ମଧୁ ଶୈଶବର ଧୂଳିଘର
ଭାଙ୍ଗି ଦେଇ ଯାଏ
ନିର୍ଲିପ୍ତ କେଜାଣି ନିର୍ମମ ଅଥବା ।
ଦୂରାନ୍ତୁଁ ତା ମଉଳା ହାସର
ଆଭାସ ବି ଥାଏ ନା ଚିନାଏ ।
ଅନାଗତ ସୂର୍ଯ୍ୟ,
ଯାର ରୁଦ୍ର ସୁନ୍ଦରିମା
ଆପଣା ଗର୍ଭକୋଷରେ
ମିଳାଇ ଯେ ଯାଏ

କିଏ ତାର କରେ ମୂଲ୍ୟାୟନ ?
ସଞ୍ଜ ଦୀପ ଦିବା ଅବସାନେ
ଥରି ଥରି ଭୀରୁ ପରି ଜଳେ
ତୁଳସୀ ତଳର କେତେ ଅଂଶଟିକ
ଆଲୋକିତ କରେ,
ସାମର୍ଥ୍ୟ କେତେ ତା
ଜାଣେ ମାତ୍ର ସେଇ ।
ଅରୂପର ରୂପେ ତୁମ
ବିଗ୍ରହ ତିଆଣ କରୁଥିଲେ କରୁ
ନିପୁଣ ବିଜ୍ଞାଣୀ,
କଳ୍ପନାର ପରିଧି ଯେ ତାର
ନିତାନ୍ତ ସୀମିତ ।
ଗଣା ହେଲା ହାତ ରେଖା ପରି
ଅତି ଜଣା ଶୁଣା କଥା
ଅସ୍ତମିତ ସ୍ୱର୍ଣ୍ଣ ରଶ୍ମି ଜାଲ
ଅସ୍ତାଚଳ ଅତିକ୍ରମି
ବିଶାଳ ଏ ସାନ୍ଧ୍ୟ ନୀଳାମ୍ବରେ
ରଚିଯାଏ ଯଦି ବର୍ଣ୍ଣାଢ୍ୟ ସଂସାର,
ହେଉଥାଏ ପ୍ରଲୁବ୍ଧ ମୁଁ ସିନା,
ନାହିଁ, ଶେଷ ସଂଗୀତ ମୋ
ଗାଇବି ପାରେନା;
ଗାଇବାର ସ୍ପୃହା
କଣ୍ଠେ ଘନ ଘନ ଜାଗି
ଉପମଥ ପରି
ପୁଣି ତହିଁ ହୋଇଯାଏ ଲୀନ ।



॥ ୧୭ ॥

# ଦ୍ରୁମ

ସେ ଏକ ସ୍ମୃତି—

********

ଶିବାଲିକ୍ ତୁଙ୍ଗ ଗିରିଶ୍ରେଣୀ,
ଉଦାସୀନ ଦିଗମ୍ବର ଯିଏ ସଦାଶିବ ସନେ
ବୈରପଣ ରଚି ।
ଟେକୁଥିଲା ସିନା ଉଦ୍ଧତ ତା ଶିର,
ଅନ୍ତିମେ ସେ ପରାଭବ ମାନି
ଦ୍ୱନ୍ଦ କଲା ପରିହାର ।
ବୋଲାଇଲା ଅଲୀକ ଶିବ ସେ ।
ବୃଦ୍ଧି ସିନା ଖର୍ବକଲା,
ତଥାପି ସେ ତୁଙ୍ଗ ଶିବାଲୀକ ।
ଯୋଜନ ବିସ୍ତାରି ରାଜେ
ଏକୁ ଏକୋତ୍ତର ପରି
ସେଇ ନୀଳ ଶୈଳ ମାଳା ।
ଅନ୍ତର ବିଦାରି
ଚଳେ ରାଜପଥ
ବିରାଟ କାଳୀୟ ଦର୍ପ ପଦତଳେ ଦଳି ।
ସର୍ପିଳ ତା ଗତିପଥ
କିନ୍ତୁ ଏକାଗ୍ର, ଆଉ ନିରୁଦ୍‌ବିଗ୍
ନାହିଁ କାହିଁ ତା ଭ୍ରୂକ୍ଷେପ,
ମାନ ଲାଗି ନାହିଁ ଅଭିମାନ
ଅପମାନେ ନିର୍ବିକଳ୍ପ
ବୁଝେ ନା ସେ ବିପାକ ବେଦନେ
ଲାଭ ବା କ୍ଷତିର
ପରିମାପ କେତେ ।

ଆଗେ ଚାଲେ, ଯାନ ଦ୍ରୁତ ଦ୍ରୁତତର
ପଛେ ପଡ଼ି ରହେ ଆଖୁ କ୍ଷେତ,
ବେନି ପାର୍ଶ୍ୱେ ଛନ୍ଦି ରହେ
ମହା ମହା ଦ୍ରୁମ, ଲତା ଗୁଳ୍ମ-କୀର୍ଣ୍ଣ
ଘନ ବନସ୍ତର ନିଘଞ୍ଚ ବେଷ୍ଟନୀ
ସ୍ତରେ ସ୍ତରେ ପାଷାଣ ପିହିତ ।
ଏ କୁଣ୍ଡଳୀ ଗର୍ଭୁ
ନିର୍ଗମନ ଦ୍ୱାର ସବୁଦିନ ପାଇଁ ରୋଧି
ଅଣ ନିଶ୍ୱାସୀ ପାନ୍ଥର
ଜୀବନ ସଂକଟାକୁଳ କରି ରଖେ ଅବା ।
ଶୈଳ ସଂକଟ ଆବର୍ତ୍ତୁ
ତଥାପି ନିଷ୍କୃତି ମିଳେ,
ଜୀବନ୍ତ ମରଣ ଏଇ ଉଦ୍ଧରିଲା ପ୍ରାୟ
ଦେଖେ ସାଂଯାତ୍ରିକ ବୃନ୍ଦ ଯାତ୍ରୀବଧୂ
ବିସ୍ମୟ ଚକିତେ, ଭୀତି ତ୍ରସ୍ତା କୁରଙ୍ଗିଣୀ ଜିଣି ।

ପୁରୋଭାଗେ ଗିରି ଉପତ୍ୟକା
ଅତି ମନୋରମ ଦିଗନ୍ତ ବିସ୍ତାରୀ
ଶସ୍ୟ ସ୍ନେହର ନବୀନ ଭୂଖଣ୍ଡ ଉଭା ।
ନୟନର ଅଚିହ୍ନା ଅତିଥି ।
ଅବସାଦ ନାହିଁ
ଯେତେ ଦୂରେ ଆଖି ଫେରେ
ସବୁ ଶ୍ୟାମ ସ୍ନିଗ୍ଧ, ସବୁ କାନ୍ତିମୟ,
ଶାନ୍ତ ଯେହ୍ନେ ପ୍ରଶାନ୍ତି ସାଗର ।
ନାହିଁ କ୍ଳାନ୍ତି
ନାହିଁ ଶ୍ରମସ୍ୱିନ୍ନ ଖେଦର ଜଞ୍ଜାଳ;
ଏଥି ନାହିଁ ଦୈନ୍ୟର ଦୌରାତ୍ମ୍ୟ ।

ଚିତ୍ତ ଚାହେଁ-

ରାଶି ରାଶି କୁସୁମର ଫେନବନ୍ତ ଶିରେ
ତରୀଟି ତା ଚାଲିଥାଉ ଅବାରିତ ଗତି;
ତରୀ ଗର୍ଭ ଭରି
କଙ୍କରିଛ, ସୁଧାରସପ୍ରସୂ
ଏ ମାଟିର ଉପଜାତ
ରସଘନ ସ୍ତବକିତ ଅଙ୍କୁର ପୁଞ୍ଜରେ ।
ଅଦୂରେ ନା ଦୂରେ
କେତେ ଅବା ଦୂରେ
ଏ ବନ ଭୂମିର ଶେଷ ପ୍ରାନ୍ତ
ହଜିଯାଏ ସେ ବନରେ ଆଉ ଏକ ସବୁଜିମା କୋଳେ—
ନା, ନା ନୀଳିମା କୋହରେ;
ଯହିଁ ଆକାଶ ଓ ଅବନୀର
ଅଧର ଆଶ୍ଳେଷ
କରି ବି ପାରେନା ଛିନ୍ନ,
ଆମେ ଯାଉ କହୁ
ମଦମତ୍ତ ଦିଗବାରଣ ।
ଶୃଙ୍ଗ, ଶୃଙ୍ଗ ପରେ ଶୃଙ୍ଗ
ତଦୁପରି ଶୃଙ୍ଗ,
ଶୈଳରାଜ ହିମବନ୍ତଙ୍କର
ଏଇ ପରା ବିରାଟ ପ୍ରକାଶ ।
ଦିଗଦନ୍ତୀଙ୍କ ବପ୍ରକ୍ରୀଡ଼ା
ଦନ୍ତାଘାତେ ମହୀ ବିଦାରଣ ସ୍ପୃହା
ଅଳପକେ ତୁଚ୍ଛ ହୁଏ ବୋଲି
ଏଙ୍କଠେଇଁ
ତ୍ରିଲୋକେ ଭୂଧର ନାମେ ଏହାଙ୍କ ପ୍ରସିଦ୍ଧି ।
ଆସୁ ବର୍ଷା
ହେଲା ବା ପ୍ରଳୟଙ୍କାରୀ, ଆସୁ ବର୍ଷା
ଧାରାଳ ଶ୍ରାବଣ,

ଚିର ଅଭୀପ୍‌ସିତ ଦେବାତ୍ମନ୍‌ଙ୍କର;
ବର୍ଷା-ଏଯେ ପ୍ରାଣ
ଚରାଚର, ଜନ ଜଗତର ।
ଏଥୁଁ କ୍ଷରେ ଅମୃତ ଜୀବନୀ ସ୍ରୋତ
ଯାହା ଘେନି ସଦା ପ୍ରିୟସ୍ୱିନୀ
ଜାହ୍ନବୀ ଯମୁନା
ଗଢ଼ି ଯାଇଛନ୍ତି
ପୁରାଣ ପ୍ରଥିତ ନିମ୍ନତଳ ଆର୍ଯ୍ୟାବର୍ତ୍ତ ଭୂମି ।
ଏମିତି ଏକ ବର୍ଷଣ ମୁଖର ଦିନେ
ବାତାୟନ ମାର୍ଗୁ ଦିଶୁଥାଏ
ଧାରା ସ୍ନାନରତା ନାଗରିକା ପ୍ରମଦାର ଉତ୍ସବ ଉଲ୍ଲାସ
ଧାଡ଼ି ଧାଡ଼ି ଦେବଦାରୁ ପତ୍ର ଫାଙ୍କେ ଫାଙ୍କେ
ସନ୍ତରଣ କେଳି ।
ତିନ୍ତିଲା ବସନ ତଳୁଁ
ସୁନ୍ଦରୀର ତନୁଶ୍ରୀ ଚମକ
ମୁଷଳ ଏ ବାରିଧାରା ପାରି ନାହିଁ ଢ଼ାଙ୍କି ।
ଦିବାଲୋକ ଅନ୍ଧାରିତ
ଦିନ୍ ଅବସାନ ଏ ବା,
ହେଉ ନାହିଁ ବାରି ।
କୃଷ୍ଣା ରାତ୍ରି ସୂଚୀଭେଦ୍ୟ,
ବିଜନ ଝିଙ୍କାରୀ ସ୍ୱନେ
ଭୀମ ହୋଇ ଶୁଣାଯାଏ
ଅଶରୀରୀ ନିଶିର କୁହାଟ,
ଆତଙ୍କ ବଢ଼ାଏ ପ୍ରତିଟି ପଳକ ।
ତଥାପି ଏ କିସ ଉନ୍ମାଦନା ।
ସ୍ୱୟଂଜ୍ୱଳ ମାଳମାଳ ବିଦ୍ୟୁତ ଆଲୋକେ
ଉଦ୍‌ଭାସିତ ହୋଇ ଉଠେ ନିଶିଥିନୀ ଅଙ୍କ,
ଶୋଭାଙ୍ଗିନୀ ଦେବ ଦୁଳଣୀଙ୍କ
ଏଇ ଘିର ପ୍ରଭ ଦୀପାଳୀ ସମ୍ଭାରେ ।

ଦୂରାନ୍ତୁଁ, ଦୂରାନ୍ତେ ନିବିଡ଼ ଏ ଅନ୍ଧକାର ମଧ୍ୟେ,
ଲୋଡ଼ି ବୁଲେଁ,
କାହିଁ ସେ ନଗାଧିରାଜ;
କାହିଁ ରାଜ ଅଧିଷ୍ଠାନ,
ପୁଚ୍ଛୁଥିଲେ ସର୍ବେ ନିରୁତ୍ତର ।
ଆଲିଙ୍ଗନ ଲୋଭ
ଦେଇଯାଏ ମାତ୍ର ନିପଟ ଶୂନ୍ୟତା,
ଅନୁଭବ ପରି ଜଳେ ମାତ୍ର ଏକ ସତ୍ତା ।
ଯଥା–
ମନେ ପଡ଼େ
ଏକମ୍ର କାନନେ ହଜିଲା ଅତୀତ,
ଯହିଁ ବିସ୍ମୃତିର ଆବରଣ ଭେଦି
ଟେକି ରହେ ଶିର
ମୂଳୁ ଚୂଳ ଯାଏ କାରୁକଳାମୟ
'ରାଜରାଣୀ' ଆଉ 'ଲିଙ୍ଗରାଜ' ।
ଶିଖରୀର ସାନୁଦେଶେ
ଏଇ ଯେହ୍ନେ ସେଇ ପ୍ରତିବିମ୍ବ
ନିମ୍ନେ ଉର୍ଦ୍ଧେ ଉଚ୍ଚାବଚ ହୋଇ
ମିଞ୍ଜି ମିଞ୍ଜି ଜଳେ
କ୍ଷୀଣ ନିଶୀଥ ପ୍ରଦୀପ
'ମସୋରୀ' ନଗରୀ ଗ୍ରୀଷ୍ମ ନିବାସର ।
ତାରକିତ ଅନ୍ତରୀକ୍ଷ ଖଣ୍ଡ
ଏଇଠି ବା ପଡ଼ିଅଛି ଖସି,
ମୌନ ଓ ନିର୍ବାକ ।
        ଏଣେ
କେଉଁ ଏକ ଦେବାଳୟୁଁ ଭାସି ଆସେ
ପ୍ରାଣ ପୂତକରା ଶଙ୍ଖ-ଘଣ୍ଟା ଧ୍ୱନି
କାହୁଁ ଅବା ଅଜଣା ମୁରଜ ମୁଖୁଁ ମେଘ ମନ୍ଦ୍ରତାନ;
ମିଳାଇ ଯାଏ ଆଉ କାହିଁ ମେଘ ମହ୍ଲାର ରାଗର
        ସାଧନା ଆଳାପ,-

ଆହୁରି କେତେ କି ?
ଏତେ ଥାଏ ବିଚଳିତ କରିବାରେ ମତି,
ଏ ନଗରୀ ଉପାନ୍ତେ, ତଥାପି
ନିର୍ବିକାର ବୈରାଗ୍ୟ ମନନ
ଆଚରନ୍ତି ସାଧୁସନ୍ଥ ଜନେ....
ଓ ସାଧକେ ।



॥ ୧୮ ॥

## ମୁକ୍ତି

ମେଘମୁକ୍ତ ହେଇନି ଆକାଶ,
ଛାୟା ମିଶା ରୌଦ୍ର
ବଢ଼ ବାଧେ ଖର ତପ୍ତି;
ସ୍ୱେଦୋଦ୍‌ଗମ ଭଗାରି ପରିକା
କେଉଁ ବାଦ ସାଧି
ଓରମାନ ମେଣ୍ଟେଇ ପାରେ ନା;
ବଢ଼େ ପ୍ରତିକ୍ରିୟତ ଉଦ୍‌ପାତ ।
ମୋର ରଥ ଚକ୍ର
ଚକ୍ରୁ ଚକ୍ରୁ ଶିଥିଳିତ ହୋଇ ଉଠେ
ସୁଦୀର୍ଘ ତା ଗତିପଥ କେତେ ଥାଏ
ଅନତିକ୍ରାନ୍ତ ।
କେଜାଣି ନିଃଶଙ୍କ
ପଥି ପାର୍ଶ୍ୱେ ଝିମାଇଁ ନ ପଡୁ ।
ପଡୁ, ମନ୍ଦ ଅବା ସେକି ।
ନିଦ୍ରା ଆସୁ;
ଆଖି ପକ୍ଷ୍ମେ ଲାଗି ରହୁ
ମୃଦୁ ମଧୁ କିଶଳୟ ସ୍ପର୍ଶ,
ଅବଚେତନାର ।

ତାପରେ ଯା ଆସେ
ସେଇ ମୋର ଉପଲବ୍ଧି-
ଆଉ ଏକ ଅନ୍ୟ ପ୍ରକାରର
ଅନ୍ୟ ଚେତାହୀନତାର
ଶାନ୍ତ ପରିବେଶ ।
ଅଖଣ୍ଡ ନିଶାର ସାନ୍ଦ୍ର ସୁପ୍ତି
ସ୍ୱପ୍ନାତୀତ ହୁଁ ମନୋଜ୍ଞ, ନିତ୍ୟ ଅତୀନ୍ଦ୍ରିୟ ।
ନିର୍ବାଣକାମୀଏ ଯେତେ ଚାହଁ
କାମନା ବିନାଶ
ଆସ, ଏଇ ତୁମ ମୁକ୍ତି ।



## ॥ ୧୯ ॥
## ଅସମତୁଲ

ସୁବିସ୍ତୀର୍ଣ୍ଣ ଜଳରାଶି,
ପୂର୍ବପ୍ରାନ୍ତ ଜଳଧିର ସିକତିଳ ବେଳା;
କ୍ରୋଧୋନ୍ମତ୍ତ ଫଣା ଟେକି
ମାଳ ମାଳ ଶତଜିହ୍ୱ ଢେଉ
ବିଷଦନ୍ତୁଁ ଉଦଗାରି ବୁଲନ୍ତି ଫେନିଳ ଗରଳ ।
କେଉଁ ବସୁଧାର ରକ୍ତନାହୀ ନାଡୀ ଓ ନାଟିକା
ଶିରା ଓ ପ୍ରଶିରା
ହୋଇ ନ ଉଠିଛି ନୀଳ, ନୀଳୁଁ ନୀଳତର ।
ଊର୍ମି ସହଜେ ତ ସିଏ
ନୀଳାଙ୍ଗୀ ଭୁଜଙ୍ଗୀ
ମରି ବି ଜାଣେନା ତନ୍ୱୀ, ଘାରି ହୁଏ ଜୀବନ୍ତ ମରଣେ ।
କେତେ ଦୂରୁଁ, ଦିଗନ୍ତର ଚକ୍ରରେଖା ତଳୁ
ଭାସି ଆସେ ନିରନ୍ତରୀ ଏକ ଦୀର୍ଘଶ୍ୱାସ ।
ବିରହିଣୀ ମତ୍ସ୍ୟକନ୍ୟା ଏକି
ସାଗରିକା ଜନନୀର ଊର୍ମିଳ ଅଙ୍କ ପଲ୍ୟଙ୍କେ

ଯା'ର ସହଜେ ଆସେ ନା ନିଦ୍ରା
ତାର ଅନ୍ତରେ ବି
ବିରହ ତାପର ଦାରୁଣ ଯନ୍ତ୍ରଣା !
ଏଇ ସଙ୍ଗସେବୀ ଜନ ଗହଳିରେ
ଆଜି ତାର ଦୁଃଖଭାଗିନୀ କେ,
ମାତ୍ର ଏକାକିନୀ ମୁହିଁ ?
ତେଣୁ ମୋ ଅନ୍ତରୁ ସୁଦ୍ଧା
ଉଠେ ଦୀର୍ଘଶ୍ୱାସ,
ମିଶିବାରେ ଚାହେଁ ଏକାକାରେ
ତା'ରି ଦୀର୍ଘଶ୍ୱାସେ ।
ତେଣେ ପୁଣି ହାୟ !
ନିୟତିର ନିଷ୍ଠୁର ସଙ୍କେତ
ନିଜ ହାତେ ଲିହି ନିଦାରୁଣ ଭାଗ୍ୟଲିପି, ଅଭାଗିନୀ ଭାଲେ,
ନିଜେଇ ସେ କଠୋରତା ପାରେ ନା ସମ୍ଭାଳି
ତାଇ ନା କି ଏଇ ତାର କୋହ,
ଏମିତି ସ୍ତିମିତ ।
ସଂସାର ଗହନେ ଅସରନ୍ତି ଦୁଃଖ;
ଦୁଃଖିନୀ ଏ କେତେ ଆଖିଲୁହ ଢାଳି
ସର୍ବଂସହା ପାଦେ ମଥା ପିଟୁଥିଲେ
ତା'ରି ସନେ,
ଉଦ୍‌ବେଳିତ ତରଙ୍ଗରାଜିର ଆକୁଳତା
ହେବ ସମତୁଲ-
ଭାଳି ମରେଁ ମୁହିଁ ।



॥ ୨୦ ॥

## ରାଜ ନର୍ତ୍ତକୀ

ରାଜ ଦରବାରେ
ନଗରୋପକଣ୍ଠେ, ଜନପଦ ପ୍ରାନ୍ତେ,
ଆଦି ନରନାରୀଙ୍କର ନଗ୍ନ ରସାଳାପେ,

ଏକାନ୍ତ ବିହାରେ,
କେବେ ଜଗିଥିଲା ଆଦି ନୃତ୍ୟଛନ୍ଦ ।
ଆଜି ତାର ପ୍ରତିବିମ୍ବ;
ହେ ରାଜ ନର୍ତ୍ତକୀ,
ତୁମ ଉଦ୍‌ଗତ କିଶୋରିକାର ନିଟୋଳ ଯୌବନେ
ଲଗାଏ ଲହରୀ ଖେଳ ।
ପାଦାଙ୍ଗୁଳେ କୋରକ ଅଙ୍କୁରେ,
ପ୍ରତି ପଦପାତେ ଧରଣୀ ଅଙ୍ଗନେ
ଶତଦଳ ବିଳାସ ପ୍ରସ୍ଫୁରେ ।
ଅଙ୍ଗୁ ଅଙ୍ଗେ ନିତ୍ୟ ବସନ୍ତର ମୃଦୁ ଶିହରଣ
ପୁଲକ ସଞ୍ଚାରେ କେଳିଲୋଳ କନକ ମୃଗର ।
କିଏ ତୁମ କଟାକ୍ଷର ଗୁରୁ
ନିର୍ମମେ ହାଣିବା ଲାଗି ନିଜ ଉନ୍ମୁଖ ବକ୍ଷୋଜେ
ଦେଇଛି ଶିଖାଇ;
ତୁମେ ମଣ ତୁମର ଏ କରୁଣା ବର୍ଷଣ,
ତେଣୁ ଓଷ୍ଠାଧରୁ ଅବା ଝରେ ଚନ୍ଦ୍ରହାସ
ଶାରଦୀୟା ପୂର୍ଣ୍ଣିମା ନିଶିର ।
ମୃଣାଳ ହୁଁ ବଳି ତୁମ ସୁକୁମାର ବାହୁଲତା ଅଗ୍ରେ
ଅଞ୍ଜଳି ବିରଚି
ତୁମେ ଢ଼ାଳିଲେ ଆଳତୀ–
ଜାଣେ ନା ମୁଁ କେଉଁ ଦେବାର୍ଚ୍ଚନେ,–
ଅଜଣା ସେ ପୁଣ୍ୟତୀର୍ଥେ
ନିବେଦେ ପ୍ରଣତି ।
ତୁମେ ସିନା ରାଜନର୍ତ୍ତକୀ, ନଅର ପ୍ରାଙ୍ଗଣେ,
ତୁମ ନୃତ୍ୟ ବନ୍ଧ ସେ ଯେ
ତନ୍ମୟ ବିଶ୍ୱର ଅମୂଲ୍ୟ ସଞ୍ଚାଳି ।



॥ ୧ ॥

## ବିଜୟା

ଦୁର୍ଗତି ନାଶିନୀ ମାଗୋ ଦୁର୍ଗେ,
କେଉଁ ଦୁର୍ଗମ ସରଣୀ କରି ଅତିକ୍ରମ
ଆସି ପାରିବି ମୁଁ ତବ ଦୁର୍ଗ ଦ୍ୱାରେ
ବଜ୍ର ଠାରୁ ଦୃଢ଼ତର କିଳଣୀରେ
ସେ ଯେ ରହି ଅଛି କିଳା;
ନାହିଁ ପଥ ପିପୀଲିକା ଲାଗି ମଧ
ପ୍ରବେଶନ ପାଇଁ, ଚଉପାଶେ
ନଭଶ୍ଚୁମ୍ବୀ ମେଘନାଦ ପ୍ରାଚୀରର
ବିଶାଳ ବିସ୍ତାର ବେଢ଼ି ରହେ ।
ଯୋଗୀ ଜନେ ମଧ
ଭାଜନ୍ତି ଏ ପଥୁଁ ଭୟେ ।
ଦୁର୍ଗତ ଯେ କେଉଁ ସୁଧା ସିନ୍ଧୁ ଜଳେ
ନ କଲେ ପାତକ ଧୌତ
ତବ ଦରଶନ ସ୍ପୃହା ଏହି କପାଟରେ ବାଜି
ହେଉଥିବ ଚୂର୍ଣ୍ଣ ଜନ୍ମୁଁ ଜନ୍ମାନ୍ତର ଯାଏ ।
ମାଗୋ ସର୍ବାଣୀ, ଅଭୟା
ସର୍ବମୟୀ କର୍ତ୍ତ୍ରୀ ତୁମେ,
ଏ ପୁରର ଅଧିଷ୍ଠାତ୍ରୀ ଦେବୀରୂପେ
ଥିଲ ଚିର ଅଧିଷ୍ଠିତ ।
ତୁମେ ପରା ବାଞ୍ଛା କଳ୍ପ ତରୁ
ସମ୍ଭବିଲା ମାତ୍ରେ ଈପ୍‌ସା

ଶତ ଗୁଣ କରି ଦେଇଥାଅ ପୂର୍ତ୍ତି ।
ତବ ଆଶିଷର ବଳେ
ଏ ଠାବେ ପିତୃ ପିତାମହ
ଲଭିଥିଲେ ଏ ଭୂତଳେ ପ୍ରତିଷ୍ଠା ଅଖଣ୍ଡ ।
ହାୟ ମୁହିଁ ହେଲି ତାଙ୍କ
ଅଯୋଗ୍ୟ ଦାୟାଦ ସତେ ।
ମୋହରି ଏ ଈଶାଣ କୋଣରୁ
ଅପହରି ଘେନି ଯାଏ କିଏ
ସିନ୍ଦୂରାରୁଣିତ ତବ ପଦସ୍ପର୍ଶେ ପବିତ୍ରିତ
ସେଇ ପୁଣ୍ୟ ପୂଜା ପୀଠ ।
ତେଣୁ ପରା ଆଜି ମାତୃ କ୍ରୋଡ଼ ଲୋଡ଼ି
ଦଶ ଦିଗେ ଛାଡ଼ି କୋଡ଼ି ହେଲେ
ପାଏ ନା ମୁଁ ସନ୍ତାନ ବତ୍ସଳା ମାଆର ସନ୍ଧାନ ।
ସଙ୍କଟ ତାରିଣୀ ବୋଲି
ବୋଲାଉଛ ମାଗୋ ଯୁଗେ ଯୁଗେ ।
ଅୟୁତ ଯୋଜନାନ୍ତରେ ଥାଇ ମଧ
ରଖିଛି ଭରସା, ହେବିନି ନିରାଶ
ସେଇ ତବ ପରସାଦ ଲାଗୁଁ
ଯାହା ଦେବେ ବି ଦୁର୍ଲଭ ।
ଆଜି ଘରେ ଘରେ ତବ ପୂଜା
ତୁମର ମଙ୍ଗଳାଳତୀ, ନାହିଁ ଭେଦ
ଧନୀ ନିର୍ଦ୍ଧନର । ସଭିଏଁ ଚାହାନ୍ତି
ଏକୁଁ ଏକ ଜିଣିବେ ଆନକୁ
ନୀରାଜନା ଆଡ଼ମ୍ବରେ ।
ମୁଁ ବି ଚାହେଁ ଏଥି ହେବି ପ୍ରତିଯୋଗୀ,
ଥାଉ ବା ନ ଥାଉ ମୋର ସାଧନା ବା ଭକ୍ତି ।
ଅବା ତବ ଅର୍ଚ୍ଚନାର ଯୋଗ୍ୟ ଉପଚାର ।
ତବ ପୂଜାବିଧି ଲାଗି ମନଲାଖି ଉପାୟନ ।
ଥାଉ କିଛି ନୋହୁ

କରିବାକୁ ତୁମ ପାଦାମ୍ବୁଜେ
ଅଜ୍ଞାତରେ ଆତ୍ମ ନିବେଦନ
ସେଇତ ମୋ ମହାର୍ଘ୍ୟ ନୈବେଦ୍ୟ ।
ଚରାଚର ଚଉଦ ଭୁବନ ଆଗୋ ଜଗଦମ୍ବେ
ସଭିଏଁ ତ ତୁମରି ସନ୍ତତି ।
ତେଣୁ ତୁମକୁ ମୋ ଏକାକୀର ମାଆ ବୋଲି
ଆବୋରି ବସିଲେ
ଆତ୍ମପରତାର ତାହା ହେବ ସିନା
ମାତ୍ର ଅନ୍ୟ ନାମ ।
ତଥାପି ଗୋ ତ୍ରିପୁର ଜନନୀ ତୁମେ,
ଆଉ ମୁହିଁ ଅବୋଧ ସନ୍ତାନ ଏକ
ମାଗେଁ ତବ ଅଖଣ୍ଡ ବାତ୍ସଲ୍ୟ ।
ଗତ ଅନଟନ ନିଷ୍ପେଷିତ ନିଃସ୍ୱ ଏ ଜୀବନେ
ସବୁ ଦୈନ୍ୟ ଦିଶିଯାଏ
ଯଦି ସର୍ବାଧିକ ପରିଭାର ଗୁରୁ–
ସମ୍ଭାଳିବାରେ ଯା ମୋର ନାହିଁଛି ସାମର୍ଥ୍ୟ,
ତା'ରି ମୋଚନ ପାଇଁ କି
ଆଗୋ ଜଗଦ୍ଧାତ୍ରୀ ହୁଏ ମୁଁ ଶରଣାଗତ
ଏତ ନୁହେ ଅପରାଧ ମୋର
ଆଜି ମନେ ପଡ଼େ–
ଏହି ପରି ଏକ ନିର୍ମଳ ଶରତେ
ଯୋଗମାୟା ଜନନୀଙ୍କ ଦୁର୍ଗୋତ୍ସବ
ସମାଧିଲେ ରଘୁକୁଳ ତିଳକ ଶ୍ରୀରାମ
ଧରଣୀର ଅଶୁଭ ସଂହାରେ
ବିଜୟାଭିଯାନେ ।
ସେଥି ତବ ପୂଜା ଲାଗି ଆହରିତ
ସହସ୍ର କମଳଁ
ଏକଇ ଊଣାରେ
ସବୁପୂଜା ବିଧି ସଂଘଟନ ପରା

ହେଉଥିଲା ବ୍ୟର୍ଥ । ତେଣୁ ଆପଣା ନୟନେ
କମଳ ଲୋଚନ ଆଖ୍ୟା ଆରୋପିତ ହୁଏ ବୋଲି
ଭକ୍ତି ପ୍ଳୁତ ସେ ମହା ପୂଜକ
ବେନି ନେତ୍ରୁ ଏକ
ଉପାଡ଼ି ସ୍ୱକରେ ପୂଜା ସମାପନ ପାଇଁ
ହେଉଁ ଅଗ୍ରସର ହେ ମହାମାୟୀ
ଲୁଚାଇଲା ପୁଷ୍ପ ଗୋଟି ପ୍ରସନ୍ନେ ଫେରାଇ
ପୂରାଇଲ ମନସ୍କାମ ତବ ପୂଜାରୀର
ଦୃଢ଼ ବ୍ରତ ନିଷ୍ଠା ଦେଖି ।
ମୁଁ କିନ୍ତୁ ପଡ଼ିଛି ମହାଘୋର ଦ୍ୱନ୍ଦେ
କେମନ୍ତେ ମୋ ଉପାସନା ସମାଧିବି
କାହୁଁ କେଉଁ ଅର୍ଘ୍ୟ ଆଣି,
କେ ଦେବ ବତାଇ ମୋହ ପରା ହୀନ ଭାଗ୍ୟ ଜନେ ?
ମରଣାନ୍ତ ପରାଭବ ହାୟ ମୋର
କରମ ଲିଖନ ।
ପୁଣି ଆଜି ପରି ଦଶମୀର
ବିଜୟା ବାସରେ ।



॥ ୨ ॥

## ସୁନ୍ଦର ଚିର ସୁନ୍ଦର

ଯେ ହେଉ ସେ ସ୍ରଷ୍ଟା, ସୃଷ୍ଟି ତାଙ୍କ ଅତି ମନୋରମ,
ଯାହା ଦେଖେଁ ପଲକ ପଡ଼େ ନା
ଥରେ ଦେଖିଲେ ବି
ପୁଣି ଦେଖୁଥିବା ପରି ଲାଗୁଥାଏ ସଦା
କିସ ସେହି, ଯାର ଆକର୍ଷଣ ଏତେ ?
ସୁନ୍ଦର 'ପଣରେ
ମିଳେ ନାହିଁ ପଟାନ୍ତର ଏକୁଁ ଆରେକର ।

ସୌନ୍ଦର୍ଯ୍ୟ ସୁଷମା ସବୁ ଏକାଧାରେ
ଠୁଳ କରି ଦେଖିବାର ଲିପ୍ସା ଥିବା
ଚରିତାର୍ଥ କରେ ଆଦିସ୍ରଷ୍ଟା ନିଜ ସର୍ଜନାର ।
ଫୁଟେ ଫୁଲ ନିଜ ଗୁଣେ ଚିର ସୁନ୍ଦର ସେ ।
ସୁକୁମାରୀ କମଳିନୀ
ଅତି ଅଲିଅଳ କୁସୁମ ସମାଜେ;
ତହିଁ ଯେ ପାଖୁଡ଼ା ଖଞ୍ଜା ମନୋହାରିତ୍ୱରେ
ତାକୁ ମଧ ବଳି ପଡ଼େ ସଯତ୍ନ ସଞ୍ଚିତ
ତା କେଶର ରାଶି ।
ଶୀତଳ ସରଶା ପରାଗ ସମ୍ଭାର;
ଆଗୋ ନାରୀ ମହୀୟସୀ,
ସେ ସବୁର ସମାହାର ସୁଦ୍ଧା
ପାରି ନାହିଁ ପରିଗ୍ରହି
ଅତୁଳ ଏଇ ତୁମ ଶୋଭାରେ ବୈଭବ ।
ସୁବର୍ଣ୍ଣକୁ ଜିଣି ରୂପକାନ୍ତି;
ନାହିଁ ତହିଁ ତୃପ୍ତି, କ୍ଲାନ୍ତି, ଅବସାଦ ।
ଉଛୁଳଇ ବଦନ ମଣ୍ଡଳୁଁ
ଅଫୁରନ୍ତ ସୁଧାସ୍ରାବୀ ଆଭା, ଶରଦ ଶଶୀର ।
(ହାୟ ଚନ୍ଦ୍ରଲୋକେ ଅବତରି ଅନ୍ତରୀକ୍ଷଚାରୀଏ କହନ୍ତି-
ଚନ୍ଦ୍ର ସେ ତ ହିମମୟ ଏକ ଶୁଷ୍କ ଜଡ଼ ପିଣ୍ଡ)
ଯିଏ ଯାହା କହୁ
ଦୁର୍ହିଙ୍କର ନିଃସରେ ଯେ ଶାନ୍ତି,
ଯେ ପରମ ପରିତୋଷ, ଆଗୋ ଚିତ୍ତ ପ୍ରସାଦିନୀ
ସେଇ ଘେନି ତୁମେ ପରା
ବିଧାତାଙ୍କ କଳା ସାଧନାର
ଅପରୂପ ଶ୍ରେଷ୍ଠ ପରିଣତି ।
ତୁମ କରାଙ୍ଗୁଳି ଲକ୍ଷ୍ୟ ଖୋଜି
କୋରକିତ କନକ ଚମ୍ପକେ
ନିରାଶେ ଫେରଇ ଉପାସକ;
ନବୋଦିତ ନୀରଦର ନୀଳିମ ଆବେଶେ

ମିଳିନାହିଁ ତୁମ କୁନ୍ତଳ- ମାଧୁରୀ;
ଦରହସା ଅଧରର ଆରକ୍ତିମା ତଳେ
ହାର ମାନେ ଶିଶିର ବିଧୌତା
ଉଷା ଅରୁଣିମା ।
ଗତି ପଥେ ତବ ଉଠେ ଯେତେ ଯେତେ
ନର୍ତ୍ତନର ଛନ୍ଦ
ସେତିକି ଫୁଟଇ ପ୍ରତି ପାଦପାତେ
ଶତ ଶତ ଲୀଳା ଅରବିନ୍ଦ ।

ଯହିଁ ଯାଅ ଅଙ୍ଗୁ ସ୍ଫୁରେ
ମୃଦୁ ପଦ୍ମଗନ୍ଧ,
ଅଳପକେ ଆମୋଦିତ କରି ଚଉକତି ।
ଉଦ୍‌ଗତ ଯୌବନ ଭାର
ପାରେ ନା ସମ୍ଭାଳି ପିନ୍ଧାବାସ ଦେଖି
ଆଗୋ ତନ୍ୱୀ ! ତୁମେ ଆପଣାର ଛାଏ
ହୋଇ ଉଠ ସରମ ପାଟଳ ।
ଏ ସୁନ୍ଦର ଶିରୀ
ଦେଖିବାର ପରମ ସୌଭାଗ୍ୟ
ସେ କେବଳ ଚିର ତରୁଣ ସୁନ୍ଦର
ସେଇ କନ୍ଦର୍ପ ରାଜାର ।
ଅଲକ୍ଷିତେ ଫୁଟେ ତା'ର ଅଧର ପଲ୍ଲବେ
ହାସ୍ୟରେଖା ଭୁବନ ମୋହନ ।
ରୂପସୀ ଗୋ ! ତୁମେ କି ଜାଣ ନା
ସେ ପରା ତା' କଳା କଳ୍ପନାର ସ୍ୱିପ୍ନ ରୂପାୟନ ।

ତୁମେ ଥିଲ ଦିନେ କିଶୋରୀ କଳିକା
ସଂସାରର  ମାୟା ସ୍ପର୍ଶ କିସ
ନ ଜାଣୁଁ ବିତରିଛ
ଆନନ୍ଦର କେତେ ଶୁଭ୍ରଧାରା ।
ଏଥି ମଧ୍ୟ ଫୁଟନ୍ତ ସୌନ୍ଦର୍ଯ୍ୟେ
ହସି ଉଠିଥିଲା ମୁଗ୍ଧ ସେ ଦିନ ଯେ
ଅଦିନର ସେବି ସେଇସେ ଅନଙ୍ଗ ?

ଆଉ ଯେବେ ପୂର୍ଣ୍ଣାଙ୍ଗିନୀ ତୁମେ
କଟାକ୍ଷ କୁଶଳ ନେତ୍ର ଶିଖିଲ ନଚାଇ
ସଞ୍ଚାରିଣୀ ଅଙ୍ଗ ଲତା
ଯୌବନ ତରଙ୍ଗ ରଙ୍ଗେ ଉଠୁଥିଲା ଫୁଲି ।
ସେ ଦିନର ମହୋଦଧି ଉଲ୍ଲାସ ଉଚ୍ଛ୍ୱାସେ
ହେଲା ସିନା ଉଭରଳ, ଜୁଆର ଉନ୍ମଦ;
ମାତ୍ର ହାର ମାନି ଝୁରି ମରୁଥିଲା
ତଟ ପ୍ରାନ୍ତେ ଶିଳାରେ ଶିଳାରେ ପିଟି ପିଟି ଶିର ।
ପୁଣି ଜନନୀର ଆଶୀର୍ବାଦ ନେଇ
କେ ଗଣିଛି କେତେ
ସନ୍ତତିର ଭକ୍ତି ନମ୍ର ଶିରେ,
କେ କଲ୍ୟାଣି, ଢାଳି ଦେଲ ଅଯାଚିତେ
ଅସରନ୍ତ ତବ କରୁଣାର ବାରି
କରକ ମଣ୍ଡଳୁଁ *
* ଯେମିତି ମୋହିନୀ
ଅମୃତ ରୂପିଣୀ
ଅମୃତ ବିତରି ସମୁଦ୍ର ମନ୍ଥନ
ଶେଷେ ରଖିଗଲେ ଦେବକୁଳେ
ନିଜର ପ୍ରଖ୍ୟାତି
କାଳକାଳ ଲାଗି
ଆଜିର ଏ ଦାନ
ଏଇ ମହାଦାନ ।
ଇଏ ସେଇ ପରିଣତ ସୁନ୍ଦରର ଆତ୍ମ ପରକାଶ ।
ତୁମେ କିଶୋରିକା
ତୁମେ କନ୍ୟା, ତୁମେ ବଧୂ, ତୁମେଇ ତ ଜଗତ ଜନନୀ
ତୁମେ ଧରା ଧାତ୍ରୀ, ତୁମେ ମହାମାୟା ପୁଣ୍ୟ ସ୍ୱରୂପିଣୀ
ତ୍ରିଭୁବନେ ସୌନ୍ଦର୍ଯ୍ୟର ପରମ ସ୍ଫୁଟନ ।
କଣ୍ଠେ କଣ୍ଠେ ଜୟକାର ଧ୍ୱନି
ଏଣୁ ସେଇ ଦିବ୍ୟ ସୁନ୍ଦରର ।



॥ ୩ ॥

## ନାନୁରାଗଃ

କବି ଶ୍ରେଷ୍ଠ,
ରାଜ ଦରବାରେ ତୁମେ ଥିଲ
ନବରତ୍ନ ଦୀପ୍ତତମ ରତ୍ନ ।
ଏତ ଖାଲି ଶୁଣା କଥା ନୁହେ ।
କିମ୍ବା ଗାଲ ଗଳ୍ପ; ଅଥବା ତୁମଙ୍କୁ
ବଡ଼ ବୋଲି ତିଆରି ଥୋଇବା
କୌଶଳ ମାତ୍ରକ ।
ତୁମେ ଥିଲ ଜାତ କବି,
କବି ସମାଜ ମଣ୍ଡଳେ, ଲଲାଟ ପଟର ଉଜ୍ଜ୍ୱଳ ମୁକୁଟ;
ସୁଧୀ ଦରବାରେ ଗୁଣୀଗଣ ଅଗ୍ରଗଣ୍ୟ; ଆଜି ବି ଅପ୍ରତିଦ୍ୱନ୍ଦ୍ୱୀ ।
କେଉଁ ନାମେ ନାମିତ ଯେ ହେବ ତୁମେ
ଖୋଜି ପାଇନାହିଁ ଇତିହାସ ତଥ୍ୟ,
ଆଖ୍ୟା ପରିସର ଏତେ ତା ସୀମିତ ।
ବାଣୀଶ୍ୱରୀ ଜନନୀଙ୍କ
ଅଙ୍ଗ ରୁଚି ଜାଣି,
ତୁମେ ଯାହା କରିଗଲ ପରମ ଅଳଂକରଣ
ଅଲଙ୍କାର ସୂତ୍ର ହେଲା ପରା ସେତହୁଁ ଉତ୍ପତ୍ତି
ତୁମେ ଭାବି ନାହଁ କେବେ କେଉଁ ଅଙ୍ଗ ଲାଗି ତାଙ୍କ
ହେବ କେଉଁ ଆଭରଣ ଖୋଜା;
ଖଞ୍ଜି ହେଲେ ସବୁ ଆସି ଠାଏ ଠାଏ
ଯହିଁକି ଯା ଯୋଗ୍ୟ
କମଳାଙ୍କ ଅସରନ୍ତି ଭଣ୍ଡାର କୋଠରୁ ।
    ବିଦ୍ୟାବଳେ ବଳୀୟାନ ତୁମେ
ଜଗଜ୍ଜୟୀ, ସେଇ ବାଗ୍‌ଦେବୀ ପ୍ରସାଦୁଁ,
ଅନାୟାସେ ବିଶାଳ ଏ
ଆସାଗରା ଧରାଭାଗେ

ବିଦ୍ୟାବନ୍ତ ଜନେ ମାନିଥିଲେ ହାର
ଦୀପ୍ତିମୟୀ ତବ ପ୍ରତିଭାର ଝଲକ ନିକଟେ ।
ବିରାଟ ସେ ଟେକ ପଣ
ସେ ବି କାଳେ ଲଭିଥିଲା ପରାଭବ ପରା
ବିଦ୍ୟା ନଗରୀର ଅଜ୍ଞାତ ସେ କେଉଁ ଏକ
ଚତୁର ଧୀବର ଠେଇଁ, ହାୟ !
ତାଙ୍କ କରୁଣା କଣାକ ଊଣା ଥିଲା ବୋଲି ।
ଶଶଲାଞ୍ଛନ ଟିକକ ବଢ଼ାଇଛି ଯଥା
ସ୍ନିଗ୍ଧ ଶୀତାଂଶୁର ଶୁଭ୍ର କଳେବର ।
ପ୍ରାଚୀନ ସେ ଇତିହାସ,
ତଥାପି ଦେଖୁଛି ଆଜି
ଘଟେ ତାର ପୁନରାବର୍ତ୍ତନ ।
ସଭିଏଁ ଜାଣନ୍ତି
ତବ କାବ୍ୟ କଳାକୁଞ୍ଜେ
ଫୁଟିଥିଲା ଯେଉଁ ଅନିର୍ବଚନୀୟ
ଅନିନ୍ଦିତ କବିତ୍ୱ କୁସୁମ
ପଟାନ୍ତର ହୋଇ ନାହିଁ,
ହୋଇ ବି ପାରେନା, ଯାର ।
କଳ କଲ୍ଲୋଳେ ବାତୀୟ ବ୍ୟଞ୍ଜନାର ତବ
ସ୍ୱତଃ ପରିସ୍ଫୁରଣ ସାଥେ
କାଳ କାଳାନ୍ତର ସରି, ସମକକ୍ଷ
କିଛି ହେଲା ପ୍ରାୟ ଜନ୍ମୁଥିଲେ ସ୍ପର୍ଦ୍ଧା କିଞ୍ଚିନ୍ମାତ୍ର
କିଏ ନ କହିବ ଜ୍ୟୋତି ଦେଖାଇ ହେବାର
ସ୍ପୃହା ଏହା ଜ୍ୟୋତିରିଙ୍ଗଣର ।
ପାର୍ବତୀ ପରମେଶ୍ୱର ସମ
ବାଗର୍ଥର ପରମ ପ୍ରତିପାଦକ
ସେ ନୈପୁଣ୍ୟ ଏକାନ୍ତ ତୁମରି-
ଅନିପୁଣ ଆନ ହାତେ
ମନେ ହୁଏ ଏକ ତୀବ୍ର ଉପହାସ ।

ତେଣୁ ପରା ଆଜି ତୁମ
କାବ୍ୟ କବିତାର ମହା ସମାହାର
ଗଣାହୁଏ ନିଛକ ସେ
ଧନିକବାଦର ବ୍ୟସନ ବିଳାସ ।
ଆଜି ତେଣୁ
ଅଳପ ଆୟସ-ସାଧ ସହଜିଆ ଧର୍ମ । ହୋଇ ଉଠେ
ଲୋକରେ ଆଦର,
କାହିଁ ସେ ସିଦ୍ଧି ସାଧିବାର
ଐକାନ୍ତିକ ନିଷ୍ଠା,
ଯୋଗୀ ଜନେ ମଧ ଯହୁଁ ଭାଜୁଥାନ୍ତି ଭୟେ !
କହୁଛନ୍ତି ସୂରୀ ।
ଆଜି ଆପଣାର ଅସମର୍ଥ ପଣ
ସଯତ୍ନେ ଲୁଚାଇ ରଖିବା ଲାଗିସେ
ଦିଆ ହୁଏ ତୁମକୁ ବି
ସେଇ ପରାଭବ, ସେଇ ପୁରାତନୀ
ବିଦ୍ୟାନଗରୀର ।
ଆଜି ଦେଖେଁ
ରାଶି ରାଶି ଚାପଲ୍ୟର
କିଂଶୁକ କାନନେ
ସବୁ ଛନ୍ଦ ମଧୁରିମା,
ସବୁ ଶାଳୀନତା,
ହରାଇ ବସିବାର ତା'
ଗୌରବ ଗାରିମା ।



॥ ୪ ॥

## ସ୍ୱୀକୃତି

କିଏ କହେ ମୁଁ ତ କହୁନାହିଁ କେବେ—
ଯାଚକ ମୁଁ ନୁହେ ବୋଲି,

ମୋର କାମ୍ୟ, ଜାଣେ ମୁଁ, ନିଷାମ କେବେ ବି ହୋଇନି,
ନୁହେଁ ଆଜି ବି ତ ।
କେବେ ଭାବିନାହିଁ କାମନାର ଊର୍ଦ୍ଧ୍ୱେ ଉଠି
ନିରାଳମ୍ବେ ଘୁରୁଥିବି ଶୂନ୍ୟ ମଣ୍ଡଳରେ,
ସୂକ୍ଷ୍ମୁଁ ସୂକ୍ଷ୍ମତର
ମନନର ସୁଦ୍ଧା ନିତ୍ୟ ଅଗୋଚର
ଅନାମିକା ଧାମେ ।
ପାରିନି ତ ତେଜିବାରେ ତଥାପି କାମନା ।
ଅପରିଚିତା ଏ ଧରଣୀର ପ୍ରଥମ ପରଶ
ଯେବେ ମୁଁ ଲଭିଲି-କିସ କାହିଁ ଥିଲା ମୋ ଅଭାବ-
ଯେବେ କମ୍ପାଇଲି କାତର କ୍ରନ୍ଦନେ
ଛୋଟ ସେ ଅଙ୍ଗନ ଖଣ୍ଡ,
ଥାଇ ସୁଦ୍ଧା ଆଦ୍ୟ ସ୍ନେହ-ରସାପ୍ଲୁତ
ଜନନୀର ଭୟଭ୍ରାନ୍ତିହୀନ କୋଳାଶ୍ରୟ ତଳେ ।
କେବେ ସୁନାର ସଂସାର ମଣି ଥିଲି
ଶୈଶବର ଧୂଳିଘର ଯାହା,
ସେ ବି ଯାଇଅଛି ଭାଙ୍ଗି ବହୁ ଦିନୁଁ,
ସେଦିନର ସେ ଶିଶୁସ୍ୱପ୍ନ ସରି
କେମନ୍ତେ କହିବି ନ ଥିଲା ବୋଲି ମୋ
ସେଇ ଛୋଟ ପରିସରଟିକ
ଆକାଙ୍‌କ୍ଷାର ଚରମ ବିସ୍ତୃତି ।
ଦିନମାନ ଯାଏ,
ଦୃଷ୍ଟି କୋଣ ବଢ଼ଇ ଯେତିକି
ତୃଷା ବଢ଼େ ନିତି ନିତି,
ମରୁ ମରୀଚିକା ମାୟା ନୃତ୍ୟ ସମ
ଦିଗନ୍ତର ବିସ୍ତାରିତ ଚକ୍ରବାଳ ତେଇଁ
ପଳାଏ ଏ ନେତ୍ର ପ୍ରାନ୍ତୁଁ,
ତଥାପି ଘୁଞ୍ଚେ ନା ମୋର ପାଇବାର ତୃପ୍ତିହୀନ ଆଶା ।
ଉଦ୍ଦାମ ଯୌବନ ବନେ

ଫୁଟି ଉଠେ ସହସ୍ର କୁସୁମ,
କରିନି ସେ ଜୀବନକୁ କେତେ ମଡୁଆରା;
ଏକ ହୁଁ ଆରେକ ମନୋରଥ ମମ
ଚକାଇଛି ଚକ୍ର, ସାଗର ପ୍ରସାରୀ ରାଜପଥେ,
ଦୁର୍ନିବାର ଯେସନେ ମନ୍ମଥ ଦୁର୍ଦ୍ଦାନ୍ତ ।
ମୁଁ ଚାହିଁଛି ଯଶ, ଖ୍ୟାତି
ଧନ, ମାନ, ସମ୍ଭ୍ରମ ଗୌରବ;
ଚଲାପଥେ ଲୋଡି ସଙ୍ଗସୁଖ
ଦେଖିଛି ମୁଁ ବିରାଟ ଶୂନ୍ୟତା
ଘେରି ରହେ ମୋର ଚଉକତି,
ମୋ କାମନା ପୁଞ୍ଜେ
ଅଧିକୁଁ ଅଧିକେ କରି ଉଦ୍ଦୀପିତ ।
ଯାହା ମୁଁ ପାଇନି–
ଆନଠେଇଁ ଦେଖେଁ ପ୍ରାଚୁର୍ଯ୍ୟ – ସମ୍ପଦେ
ଭରପୂର, ଉଲ୍ଲାସ ଉଛଳ ।
କିବା ଦୋଷ ମୋର
ଲୋଡ଼ି ବୁଲିବାରେ ଅନୁଦ୍‌ବିଗ୍ନ ଜୀବନ ସ୍ୱାଦ
ଚାହିଁଛି ମାତ୍ରକ, କେବେ ହୋଇନି ମୁଁ ଈର୍ଷାକାତରିତ ।
ଦେବତାଏ ନରଯୋନି
ବରିଥାନ୍ତି ପରା
ଭୋଗିବା ମାନସେ ଏଇ ମଧୁମୟ
ମର୍ତ୍ତ୍ୟମଣ୍ଡଳର ଅମର୍ତ୍ତ୍ୟ ବିଭୂତି
ଯାହା ସୁର ଲୋକେ ଅଲଭ୍ୟ ସର୍ବଥା ।
ଆଉ ଏହି ଏଇ ଦେହ ବହି ଏଥି
ଅମର ହେଲେ ବି ଯଦି ମରଣ ନିଶ୍ଚିତ,
ତେବେ ସେଇ ଭୋଗ ସ୍ପୃହା ପାଇଁ
ହେଲି ବା ଭିକାରୀ–
ସେ କେବଳ ବହୁ ସଜ୍ଜନ ଶ୍ରେଣୀଙ୍କ
ସବୁଦିନେ ଆଚରିଲା ପନ୍ଥା ।

ସେଥି ନାହିଁ ଲାଜ, ଭୟ ବା ସଙ୍କୋଚ
ଅବା ଅପମାନ ତିଳେ—
କହନ୍ତି ଜ୍ଞାନୀଏ ।
ଯୋଗୀ ଯତିଙ୍କର କାମନା ବିକାର
ବିନା ଏକ ନାହିଁ ବୋଲି ଶୁଣିଛି ମୁଁ ଶାସ୍ତ୍ରେ;
ପରିତୋଷ, ମୋକ୍ଷ ଅଥବା ନିର୍ବାଣ
ତାଙ୍କ ପରି
ଏକଇ ଚରମ ଲକ୍ଷ୍ୟ ସିଦ୍ଧି ସାଧନାର;
ତପୋ ଧର୍ମ ପନ୍ଥା ତାଙ୍କ ପରମ ନିଷ୍କାମ
ବୋଲି ଯାହା ଜନନେତ୍ରେ ଦିଶେ ।
କେ କହିବ ତହିଁ ନାହିଁ ପରିତ୍ରାଣ କାମନାର ଛିଟା,
କାହିଁ ତେବେ କାମନା ବିନାଶ ?
ଦୁର୍ଲଭ ମାନବ ଜନ୍ମେ ମୁକ୍ତିମାର୍ଗ
ବଡ଼ଇ କଣ୍ଟକାକୀର୍ଣ୍ଣ, ଜାଣେ
ଆଉ ଜାଣେ ବୋଲି ମୁଁ ମୋ ଜୀବନର ଏଇ
ଛୋଟ ପରିସରଟିକ କରି ରଖିବାକୁ ସହଜ ସୁଗମ,
ନୋହୁ ପଛେ ଉତ୍ସବ ମୁଖର—
ଭୟ ଜାଗେ, ଅଳପ ମୁକୁଳା, ଗବାକ୍ଷ ସେ ପଟୁଁ
ନୈରାଶ୍ୟର ଛାୟା ମୂର୍ତ୍ତି ଉକିମାରେ
ଅନୁମତି ଅପେକ୍ଷା ନ ରଖି ।
ଅନ୍ତରେ ବାହାରେ ମୋର
ସ୍ତୂପାୟିତ ରାଶି ରାଶି ତୃଷ୍ଣା
ନାହିଁ ମୋର ଯାତନା ବାସନା ବୋଲି ଚମକ ପିଟିଲେ
ମୁଁ ସିନା ଢାଙ୍କିବି ମୋର ଆତ୍ମ ପ୍ରତାରଣା,
ଧରାବକ୍ଷେ କେଉଁ ତୀର୍ଥ ଜଳେ
କୂଟ କାପଟ୍ୟର ଅପରାଧ ଧୋଇ କରିବି ନିର୍ମଳ ।
ଜୀବନାନ୍ତେ
କିସ ଅଛି କିବା ନାହିଁ,
କେହି ମୋତେ ଦେଇ ନି ସନ୍ଦେଶ

ତଥାପି ତ ଲୋକାନ୍ତରେ ଲାଭ ଲୋଭ ମୋର
ଦିନେ ବି ହୋଇନି କ୍ଷୁଣ୍ଣ ।
ଅନ୍ତରର ନିଗୂଢ଼ ବାରତା ନିକଷପଟେ ଫେଇ
ଆଉ ଆପଣାରେ କରଇ ନିର୍ମଳ, ନିଷ୍କଳୁଷ,–
ସେଇ ତ ମୋ ପଙ୍କିଳ ପଲ୍ୱଲେ ଶୁଭ ଶତଦଳ
କାଳ କାଳକୁ ମୋ ସେହି
ପରମ ପାଥେୟ ।



॥ ୫ ॥

## ବିଜୟିନୀ

ଅନନ୍ତ ଯୌବନା, ଅୟି ଚିର ପଲ୍ଲବିନୀ,
ନୀରବିଛି ସତେ ତବ ନୃତ୍ୟଶୀଳା ପୟର ଶିଞ୍ଜିନୀ
କେଉଁ ଦିନୁ କେବେ ଚଳନ୍ତି ପ୍ରତିମା
ପାଲଟିଛି ପାଷାଣ ବିଗ୍ରହ; ଅରୁଣ ରଙ୍ଗିମା,
ଓଷ୍ଠାଧରେ ଅବା ଲେଖିରଖି ଥିଲ
କୋରକିତ କେତେ ରକ୍ତଜବା ।
ଫୁଟିସବୁ ଆସିଲାର କାଳେ ଯାଇଛି ଅଟକି
ଓଲଟ ଅଙ୍ଗେ ଆପଣାର ସରମତା ଲାଗି ।
ଆଉ ପୁଣି ବେନି କରପୁଟେ
ଚଞ୍ଚଳି ଉଠିଲା ପ୍ରାୟେ ଏଯେ ବାଜି ଉଠେ
ବାଜେଣି ବଳୟ; ସୁନ୍ଦରୀର କରାଙ୍ଗୁଳି ଆଘାତ ଉସ୍ତୁକ
ନାଦମୟ କରେ ନା କି ତାଳେ ତାଳେ ମୁରଜର ମୁଖ,
ଆଜି ଯାଏ ନିଶିଥିନୀ କୋଳେ
ଶୁଣେ ସେ ମୃଦଙ୍ଗ ଧ୍ୱନି ପଥିକ ନିରୋଳେ ।
ମୁଁ ଦେଖଇ ଏଥି ଅତି ସଂଗୋପନେ–
ଦେଖେଁ ଦେଖିବି ବା କିସ ? ଭାଳି ହୁଏ ମନେ
ଏକୁଁ ବଳି ନ ସବୁଣ୍ଣୁ ଦେଖୁଥିବି ଆନେ

ଶୋଭାର ଉନ୍ମେଷେ ରୂପାୟିତ ନୂତନ ଭିଆଣେ ।
ଅଙ୍ଗେ ଅଙ୍ଗେ ଫୁଟେ ପଦ୍ମ, ଶତଲୀଳା ପଦ୍ମ
ଏହିପରା ଲୀଳୋର୍ମିର ଆଦ୍ୟ-ଉପ-ଆଦ୍ୟତମ ସଦ୍ମ ।
ଏତେ ରୂପ ରୂପସୀ ଗୋ ସତେ
ଥାଏ ଛପି ଧରଣୀର ଛବିଳ ପଣନ୍ତେ ।
ତୁମେ କିଗୋ ଏଇ ରୂପରାଣି ଅନୁରାଗୀ
ରୂପବନେ କାଳ କାଳ ବସିଥିଲ ଜାଣି ?
ଆଜି ଯିବି ଭାଗ୍ୟ ସୁପ୍ରସନ୍ନେ
ମହାର୍ଘ ଏ ରୂପଭିକ୍ଷା ସଂପୂରଣେ
ତୁମେ ହେଲ ସିଦ୍ଧ ମନସ୍କାମ,
ମୂର୍ତ୍ତିମତୀ ଶୋଭାଙ୍ଗିନୀ ଲଳନା ଲଲାମ,
କିପାଇଁ ଆଡରି ବସ, ତେବେ ଦୀର୍ଘ ମୌନବ୍ରତ
ଶିଳାୟିତ ମୂର୍ତ୍ତି ଧରି ଯୁଗୋତ୍ତର ଯୋଗ ଧ୍ୟାନେ ରତ ।
ଆଜି ଏଥି ପୂଜାରୀ ମୁଁ ନ ଥାଉ ବା ପୂଜା ଉପଚାର
ନାହିଁ ସମାରୋହ ପଛେ ମୋ ଉପାସନାର,
ଭକ୍ତି, ପ୍ରୀତି, ଶ୍ରଦ୍ଧା ଅନୁରାଗେ
ଉପାସକ ମୁହିଁ, ଜାଣେ ପୁରୋଭାଗେ
ପୁଷ୍ପିତାର ପୂର୍ଣ୍ଣ ଶ୍ରୀ ସମ୍ଭାରେ
ଅଛ ତୁମେ, ଉଭା; କେତେ ଶତ ଧାରେ
ଜାଣ ନା କି ତୁମେ ଗଳି ପଡ଼େ କେତେ ମକରନ୍ଦ
କି ଘେନି ନୈବେଦ୍ୟ ଅର୍ପେ
କେଉଁ ସ୍ତୁତି ଗାଇ
ରଚି କେଉଁ ଗୀତି ଛନ୍ଦେ
ପଦାମ୍ବୁଜେ, ପଦାଙ୍ଗୁଳେ, ନଖପନ୍ତି ଅଗ୍ରେ
ପରିହରି, ନବବଧୂ, ବ୍ରୀଡ଼ା
କେଳି ରାଜହଂସୀ ଯେହ୍ନେ ଏଥି
ଭିଆଇଛି କ୍ରୀଡ଼ା ।
ରସାଣିଳା ପ୍ରାୟ ବେନି ଉରୁ ଗର୍ବ
ଘନ ଜଘନା ବୁଝେନା କେ କରଇ ଖର୍ବ ।
ଶ୍ରୋଣୀ ଯାଏ ଆଲମ୍ବିତ କାଞ୍ଚୀଦାମ ଭାର
ପାରିବ ତ ସହି ସରୁ କଟୀତଟ

ନିଜ ଅଙ୍ଗ ଭଙ୍ଗେ ନିଜେ ଅସମ୍ଭାଳ ।
ଅୟି ନିତମ୍ବିନୀ ! କଦମ୍ବ ସ୍ତବକ ଯୁଗ୍ମେ
ଯେହ୍ନେ ସ୍ତବକିନୀ,
ବାରବାର ଥରାଇଛ ପୃଥୁଳ ନିତମ୍ବ
ଲୋଡ଼ି ବୁଲି କାହା ପାଶେ ଆଦ୍ୟ ପରିରମ୍ଭ ।
ଆଲୋକ ଲାବଣ୍ୟ
ସୁବର୍ଣ୍ଣ ମୃଣାଳେ ଯାହା କରିଅଛି ଧନ୍ୟ
ଦେବସ୍ନାନେ ପବିତ୍ରିତ ମାନ ସରୋବରେ–
ଅନାୟାସେ ଜିଣିଯାଏ ଯାକୁ ଲାଳିତ୍ୟ ଲହରେ
ଶିରୀଷ ହୁଁ ସୁକୁମାର ତବ ଭୁଜ ବଲ୍ଲୀ
ସେ ଯେ ଏଥେ ପଡ଼ିଲାଣି ଢଳି
ଶୃଙ୍ଗାର ଶିଥିଳ ନିଶକତ ସମ,
ଅଧୋଭାଗେ ପୀନୋରଜ ଭାର ସହନେ ଅକ୍ଷମ ।
ନଗ୍ନ ଆଜି ଚରାଚର, ନଗ୍ନ ବସୁନ୍ଧରା
ଆଦି ଉଷା ବିବସନା, ରସାଳସୀ ନିଜେ ଆତ୍ମହରା ।
ସୁମରି ବସିଛି  ନ୍ୟ କି ନଗ୍ନା ଆଦିନାରୀ କେତେ ଶୋଭାଧରେ ।
ଅସଂବୃତ ବେଶୀ ତେଣୁ ଅତି ଅନାଦରେ
ଫିଙ୍ଗି ଦିଅ କାହିଁ ଦୂରେ କାହିଁ ପିନ୍ଧାବାସ;
ଅବନୀ ମଣ୍ଡଳେ ଏବା ପ୍ରଥମ ପ୍ରକାଶ
ଅନାବୃତ ତାରୁଣ୍ୟ ଗରିମା;
ନଗ୍ନ ସୌନ୍ଦର୍ଯ୍ୟର ଯେହ୍ନେ ନାହିଁ ପରିସୀମା
ଛାଏ ଛାଏ ସାଜି ନର୍ମ ସହଚରୀ
ଦଶଦିଗେ ଦଶ ଦିଗଙ୍ଗନା ସେଇ ତୁମ ପାଟ ପୀତାମ୍ବରୀ ।
କେ ନିନ୍ଦେ ତୁମକୁ ଦିଗମ୍ବରୀ ଅପଖ୍ୟାତି ଦେଇ
ଲାବଣ୍ୟ ମଞ୍ଜୁଳା ଆଗୋ ମନୋରମ ଦେହୀ ।
ଲୋକ ଦେଖା ଉପରାଣେ ତବ କିବା ପ୍ରୟୋଜନ
ଏଇତ କାମାକ୍ଷା ପୁରୀ କାମ୍ୟ ଏହି ପୁଣ୍ୟ ଅରଜନ ।
ନ ହେଲେ ମଦିର ସାର ଓଷ୍ଠାଧରେ ଧରେ ନାହିଁ ରାଗ
ହାର ବିନେ ପୟୋଧରେ କାହିଁ ଅନୁରାଗ–
ଏଇ ଯେ କବି ପ୍ରସିଦ୍ଧି

ଦିଏ ଏଥି ସତ୍ୟର ସନ୍ଧାନ ତୁମରି ସନ୍ନିଧି ।
ସୁନ୍ଦରୀର ସ୍ତନାଙ୍କୁର ସ୍ୱଭାବେ ଯା ନୟନର କାରା
ଶତଗୁଣେ ଆଦର ବଢ଼ାଏ ହେଲେ ମୁକ୍ତହାରା ।
ଆବେଶ ବିହ୍ୱଳେ
ନିମଜ୍ଜନ ଅଭିଳାଷ ଏଥି ଯୋଗୀର ସଫଳେ ।
ବ୍ରହ୍ମାଣ୍ଡେ ଏ ପରା ବ୍ରହ୍ମା ସର୍ଜନାର ଶ୍ରେଷ୍ଠ ଅବଦାନ;
ରୂପବତୀ କୁଳେ ତୁମେ ତୁମରି ନିଶାଣ !
କୁତୁକିନୀ, ତବ ସର୍ବାଙ୍ଗ ଆବରି
ଯେ ଭଙ୍ଗିମା, ଯେଉଁ ଲାସ୍ୟ ଜାଣି ରଖିଛ ଆହରି
ଦିଅ ଫେଡ଼ି ସେଥିଁ ଯେତେ ଗୋପ୍ୟ ଥିଲା ଭେଦ
ଭଲ ଲାଗେ କୁସୁମଧନୁର ଏଇସବୁ ଆମନ୍ତ୍ରନ ଖେଦ
କମ୍ବୁକଣ୍ଠୀ ରହିଛ ଅନାଇ
ଗ୍ରୀବାଭଙ୍ଗ କଉଶଳ ରଥାଙ୍ଗ-ବଧୂରେ ଦେବ ବା ଶିଖାଇ ।
ଦେଖେ ଶୁଣେ ମୁହିଁ ନ କହିଲା ଭାଷା,
ତିଳପୁଷ୍ପ ଭୃତିଜିତ କ୍ଷୁରଧାର ନାସା;
ସୁସଞ୍ଚ ସୁଭୃବ୍ରତଳେ ଅର୍ଦ୍ଧ ନିମୀଳନେ
ସୁଖ ସ୍ୱପ୍ନ ଯେହ୍ନେ ଢଳ ଢଳ ମଦିର ନୟନେ
ଏଥି ତୁମ ଏଇ ଜଳାପାଙ୍ଗେ
ଅଙ୍ଗ ସ୍ପୃହା । ଚୁମ୍ବନ କାମନା ଅନଙ୍ଗର ଘନ ଘନ ଜାଗେ ।
ଶରତର ତରୁଣିମ ଶୁଭ୍ର ଜ୍ୟୋସ୍ନା ରାଶି
ଅତର୍କିତେ ଅଳସ ଭାଙ୍ଗିଛି ଏଇ ମୁଖେ ଆସି
ଗଣ୍ଡଦେଶେ ଦୋଳାୟିତ କର୍ଣ୍ଣ ପୂରେ
ଦେଖିବାର ଶତତୃଷ୍ଣା କେବେ ନାହିଁ ପୂରେ
ଅଯତନ ପରିପାଟୀ ଚୂର୍ଣ୍ଣ କୁନ୍ତଳର
ଭାଲ ଦେଶେ ଝଳିଛି ସୁନ୍ଦର ।
ଘନ କେଶ ଗୁଚ୍ଛେ କିଏ ସେ ଚତୁରୀ
କବରୀ ରଚନେ ଖେଳାଇଛି ନିପୁଣ ଚାତୁରୀ;
କେଶ ନ୍ୟାସ ରୁଚି ସତେ ଚାରୁ ନୃତ୍ୟଛନ୍ଦ !
କେଶ ଗନ୍ଧେ ରୂପାୟିତ ଫୁଲଗଭା ଗନ୍ଧ ।
ଆଘ୍ରାଣ ଚତୁର ତେଣୁ ନେଇଛି ବା ବରି
ଏକଇ ଆଘ୍ରାଣେ ପୋହାଇବ ମୌନା ବିଭାବରୀ
ନାରୀ ! ତୁମେ କୁନ୍ତଳ ଗର୍ବିଣୀ

ରୂପବତୀ ଅହଂକାର ତବ ଏତକେ କି
　ଏବେ ବି ଯାଇନି ।
ପୁରୁଷର ସବୁ ମନୋରଥ, ସବୁ କାମନା ବାସନା
ତୁମ କବରୀ ସଂପୁଟେ ବନ୍ଦୀ ପଡ଼ି ହୁଏ ବାଟବଣା
ସୁନ୍ଦର ଏ ସୃଷ୍ଟି, ସୁନ୍ଦର ଏ ଧରା,
ସୁନ୍ଦର ପଣର ବିଜୟିନୀ ତୁମେ
　ଶୋକ ତାପହରା ।



॥ ୬ ॥

## ଭାବ ବାହୁନା

ମୁଖେ ନାହିଁ ଯଦି ଏକ ଭାଷା
ଫୁଟି ବି ତ ଫୁଟିଲାନି'
　ସେ ଦିନର ବଉଳିଲା ଆଶା,
ଶୁଭମୟ, ଗୋଧୂଳି ଲଗନେ,
ସ୍ୱର୍ଣ୍ଣବର୍ଣ୍ଣା ବାରୁଣୀ ଗଗନେ
ସଇଲାଣି ଫଗୁଣ ଉଲ୍ଲାସ
　ଚାଚେରୀ ଖେଳାଇ;
ଶିଥିଳିଲା ପରି ଲାଗେ
　ଖେଳାଲୋଳା ସମୀର ·ସଞ୍ଚାର;
ସାୟନ୍ତନ ଘନ ଦେହେ ମଉଳିଛି
　ଝଲକ ବିଭବ
ଆସନ୍ନ ସନ୍ଧ୍ୟାରେ କାହିଁ
　ବସନ୍ତର ଲୋଡ଼ିଲା ଉତ୍ସବ ?
କାନ୍ଦଇ କୁରରୀ ପରି ନିଷ୍ପ୍ରଭ ତାରୁଣ୍ୟ,
ଅସ୍ତାଚଳେ ବୁଡ଼ି ମରେ ସଞ୍ଚିଥିବା ପୁଣ୍ୟ ?
କାହିଁ ଗଙ୍ଗା, କାହିଁ ବା ଯମୁନା
କାହିଁ ସେ ପ୍ରୟାଗ ତୀର୍ଥ ବାସେ
　ଅନାଗତ ଭବିଷ୍ୟ ବାହୁନା !!!



॥ ୭ ॥

## ଦାରୁବ୍ରହ୍ମ

(ଅନୁବାଦ)

ଏକଇ ଭାରିଯା
ପ୍ରକୃତ ମୁଖରା,
ଆରେକ ଚଞ୍ଚଳା ଅତି
ପୁତ୍ର ମନମଥ
ଭୁବନ ବିଜୟୀ
ଦୁର୍ନିବାର ତାର ଗତି
ପନ୍ନଗ ଶୟନ
ରଚିବାକୁ ହେଲା
ବାହନଟି ପନ୍ନଗାରି
ଘର କଥା ନିଜ
ସୁମରି ସୁମରି
ଦାରୁ ହେଲେଣି ମୁରାରି ।

■■

॥ ୮ ॥

## ବାରିପଦା

ବାରିପଦା,
ମୋ ଚିର ନୂତନା,
କୈଶୋରର ସ୍ୱପ୍ନିଳ ମୁହୂର୍ତ୍ତମାନ
ଯହିଁ ହୋଇ ଉଠୁଥିଲା ମୋର
ଜୀବନ୍ତ ଓ ମୂର୍ତ୍ତିମନ୍ତ;
କିପରି ମୁଁ ତୋତେ
ଅତି ଆଧୁନିକା ନବୀନା ନାଆଁର ଲାଞ୍ଛନରେ
କରିବି ଆଖ୍ୟାତ—
ସଂକୁଚିତ ଲାଗେ ମୋତେ ଅତି ।

ଆଜି ତୋଠି ରଙ୍ଗୀନ ସୌଖୀନି
ଧାର ଅଣା ପ୍ରଜାପତି ଠାରୁ ବୋଲି ମାନିନେବି–
ଚାହେଁ ନା ମୋ ମନ, ଆସେ ନା ପ୍ରତୀତି ।
ତରୁଣ ବସନ୍ତ ଦିନେ
ତୋର ଏ ନଗରୀ ବାସ ଉଚ୍ଚାଟନା
କରିଥିଲା ମୋତେ ଯେମିତି ଉଦ୍‌ବୁଦ୍ଧ,
ହୋଇ ଉଠୁଥିଲି ମୁହିଁ
ସେମିତି ଉନ୍ମନା ।
ସବୁଦିନେ ଥିଲୁ ତୁହିଁ
ଗୈରିକ କଷା ବସନା, ଦୁକୂଳିନୀ,
ଅଥଚ ନିଃସ୍ପୃହଜାତ ସନ୍ୟାସିନୀ ।
ଆଜି ବି ତ ତୁହି ପ୍ରାଚୀନା ନିର୍ଝରା,
ଶୀର୍ଣ୍ଣ କଳେବରା ତୁ ଲୋ
ତୋର ଶୀର୍ଣ୍ଣ ସ୍ରୋତା 'ସରାଳୀ' 'ଝରାଳି'
'ଶଙ୍ଖଯୋଡ଼ା' ପରି ।
ଆଉ ତୋର ନଦନଦୀ 'ବଳଙ୍ଗ' 'ଚିପଟ'
ଅସର ନିର୍ଝର, ବଇଶାଖୀ ତପତୀର ତାପ ତୃଷାହର ।
ଖାଲ ଡିପ, ଉଚ୍ଚନୀଚ ଅବହେଳି
ସବୁ ଅବରୋଧ ଲଂଘି
ସମ ଦୃଷ୍ଟି ପାତେ
ଚଳାଇ ଥିଲୁ ଯା' ରଥଚକ୍ର
ଅୟି ଗିରି କିରୀଟିନୀ ।
ପ୍ରଚାରି ବୁଲେ ସେ ଆଜି ସୁଦ୍ଧା
ସେଇ ଗିରି-ବନ-ଦେଶ ସୌରାଜ୍ୟ ଗରିମା ।
ନ ଥିଲା ତ ଏଥି ଆଜିର ବ୍ୟସନ
ନବ ନବ ନୀତିବାଦ, - ବୈଷମ୍ୟ, ବିଭେଦ
ଧନୀ ଦରିଦ୍ରର ନୂଆ କରି ଟଣା
ସୀମାରେଖା ଥିଲା ନାହିଁ ଜଣା
ସେ ହେଲାଣି ହାୟ ! ସ୍ପଷ୍ଟ ଏତେ ସ୍ପଷ୍ଟତର ।

ଏଇ ନି କି ତେବେ
ଶୋଣିତ ସ୍ରୋତ ଅଢ଼ଳା ସୃଜନ ବିପ୍ଳବ !
ଗଲା କଥା, ଗଲା ପ୍ରଥା,
ପୁରାତନୀ ସ୍ମରଣା,
ସେ ଦିନର ଚମ୍ପା ନିଆଳୀ, ବକୁଳ,
ନାଗେଶ୍ୱର ଅନନ୍ତ ନାଗକେଶର
ଗନ୍ଧ ଅନ୍ଧ ମୁଚୁକୁନ୍ଦ ସ୍ୱର୍ଣ୍ଣାଙ୍ଗୀ କେତକୀ
ନିଜଗୁଣେ ସର୍ବେ ସୌରଭ ସଂକେତ
କରୁଥିଲେ କାହାରିକି
ଗନ୍ଧାମୋଦେ ଉଲ୍ଲାସ ଉଚ୍ଛନ୍ନ
କବି ପ୍ରଶସ୍ତି ସେ ସିନା
ଚାରଣର ମୂକ ବୀଣା ତାରେ ।
ଆଜି ବି ତ ରଥଯାତ ବିପୁଳ ଗହଣେ,
ଚଇତାଳୀ ଛଉନୃତ୍ୟ ନୈଶ ପରିବେଶେ ।
ଅଳସ ସନ୍ଧ୍ୟାର କ୍ଷୀଣାଲୋକ ତଳେ
ବନ୍ଧୁ ମିତ୍ର ମେଳେ,
ଗଳ ବିଲମ୍ବିତ ଗନ୍ଧଭରା ମଲ୍ଲୀମାଳେ ମାଳେ
ଚାଲିଛି ଚନ୍ଦନ ଚର୍ଚ୍ଚା;
ଏଡ଼ାଇବା ଲାଗି
ଅସହ ବୈଶାଖୀ ଗ୍ରୀଷ୍ମ ତାପଭୟ ।
କିଏ ଯଦି କହେ ଯାକୁ ସୌଖୀନର ରାଜସୀ ବିଳାସ
ହୁଏ ତ ତା' ଲିଭିନାହିଁ
ଅସହିଷ୍ଣୁ ଈର୍ଷାନଳ ଜ୍ୱାଳା;
ନତୁ ବା ସେ ଦେଖିନାହିଁ- ଦେଖି ଶିଖିନାହିଁ-
ମୁଗ୍ଧା ଚୈଳଙ୍ଗି ବଧୂର କେଶ ଦାମେ
ମୃଦୁବାସ ଯୂଥୀଗର୍ଭାସଜ୍ଜା ।
ଯେବର ଅଳକା ପୁରେ ବିଧୁରାଇ
ଏଇ ପରା କେଳି ପୁରୋଦ୍ୟାନ
ଏବର ମାଜଣ୍ଡ ।

କିଏ ବା ଜାଣେ ନା ।
ରସବତୀ ମାଲୁଣୀବାଳାର ମାଲ୍ୟ ବିରଚନା
କଳା କୁଶଳିକା ଅଙ୍ଗୁଳି ନର୍ତ୍ତନ
ରହିନି ନିହିତ
କେତେ କେତେ ତହିଁ
ଉଦ୍‌ଫୁଲ୍ଲ ତା ରାଶି ରାଶି ହାସ ସନେ ମିଶା
ଏ ଛନ୍ଦେ, ଛନ୍ଦର ଏ ଲାଳିତ୍ୟ-ବିହାରେ
କେବେ ଯଦି କିଏ
ଖୋଜିବୁଲେ ବ୍ୟସନର ଛିଟା
ହୁଏନି ତ ତାହା କୃତବିଦ୍ୟ କୃତିର ପୂଜନ ।
ପକ୍ଷାନ୍ତରେ ପ୍ରକଟାଏ ତା ନିଜର
ଅସହିଷ୍ଣୁ ଶଠାଚାରୀ ବୃତ୍ତି ।
ସେ ଦିନର ଏ ନଗରୀ ପରିମଳ
କେତେ ସିଗ୍ଧ, କେତେ ମନୋରମ,
ଆଲୋ ବାରିପଦା,
ଆଜି ବି ରହିଚି ଆଗକାର ପରି ।
ନୂତନର ଅନ୍ଧମୋହ ଜାଲେ
ହଜାଇ ବାସ ନା ଲୋ ତୋ ପୁରାତନୀ ଜୀବନର ଛନ୍ଦ ।
ଥିଲା ଏକ ରାଜା– ନା, ନା, ମହାରାଜା–
ଏ ହେଲାଣି ଏଇ ଗଲା ସେ ଦିନର
ଅଭୁଲା ବା ଭୁଲିଲା କାହାଣୀ,
କଥାଟିଏ କହୁଁ, କଥାଟିଏ କହୁଁ–
କଥାଣୀଟି କହିବାର ଆଦ୍ୟ ଉପକ୍ରମ,
ପ୍ରତ୍ୟୟ ଆସେ ନା ତନ୍ଦ୍ରାଭ ଶିଶୁର
ଆଇ ବୁଢ଼ୀ ମୁଖୁଁ ଶୁଣା
ରୋମାଞ୍ଚକ ଗାଥା
ରାଜ-ନନ୍ଦନର,
ଅଥବା ସେ ଆଉ କେଉଁ ରାଜନନ୍ଦିନୀର ।
ଦିନ ଥିଲା ଯେବେ ଏଇସବୁ କଥାସ୍ରୋତ

ଗଢ଼ି ରଖିଥିଲା ତୋ'ରି ମଧ୍ୟଯୁଗୀ ପରମ୍ପରା–
ଏ ରାଜ୍ୟର ଇତିହାସ,
ସୁଖ ବା ଦୁଃଖର, ମାନ ସମ୍ଭ୍ରମର
ଏଠି ଥିଲେ ଦିନେ
ଏଇ ରାଜକୁଳେ ରାଜେଶ୍ୱର
ଅବିରତ ଦାନ ବାରି ଧାରେ
ଯା' ରାଜ ପ୍ରାଙ୍ଗଣ ଥିଲା
ପିଚ୍ଛିଳ ଓ ମୁଖରିତ ।
ଆଉ ଏଥି ନା କି ସ୍ଫୁରି
ତମୋହର ପ୍ରଭାପୁଞ୍ଜ ପୁଞ୍ଜ
ଦୀପ୍ତିମନ୍ତ କରିଥିଲା ଉତ୍କଳ ଧରଣୀ ।
ସେ ସମ୍ଭ୍ରମ ହେଲା ଯଦି
ସାମନ୍ତ କୁଳ ଉଚ୍ଛେଦୀ
ମାତ୍ର ଏକ ଧ୍ୱନି,
ଖାଲି ସେ ଧ୍ୱନିରେ ଘଟୁ ତାର ଅବସାନ ।
ବିଶାଳ ଶିମିଳିପାଳ
ଅଦୂରେ ତୋ ଉଭା ପ୍ରତୀଚୀ ପ୍ରାଚୀର ଅସ୍ତାଚଳ ପରି
କେ ଜାଣି ବା
ଢ଼ାଙ୍କିଦିଏ ତୋରି ଚାରୁମୁଖ,
ରବି ଅସ୍ତଯିବା ଆଗୁଁ ଈଷତ୍ ଅନ୍ଧକାରେ ।
ହୁଏତ ବା ଶୈଳ ଆର ପାରେ
ଅଛି ସାୟନ୍ତନ ରଶ୍ମିଜାଳ
ସ୍ୱର୍ଣ୍ଣମୟ କରି
ଶ୍ୟାମ ଶସ୍ୟକ୍ଷେତ୍ର ଏବଂ ବନାନୀର ଶୀର୍ଷ
ଆଉ ଏଣେ ଏଥି ଏଇ ପାରେ
ମୃଦଙ୍ଗ ମନ୍ଦିରା, ସନ୍ଧ୍ୟାଳତୀ ଧୂପଘନ ଘଟା
ଶଙ୍ଖ ଘଣ୍ଟା ଧ୍ୱନି ।
ଆଉ ଅଛି ମୁରଜ ମୁଖର
ଦୂର କଂସାବତୀ ତଟୁଁ (୧)

*କଂସାବତୀ ବା କଂସେଇ ମେଦିନୀ ପୁରର ନଦୀ ବିଶେଷ

କେତେ କାଳୁଁ ଅଜାଣତେ
ଅନୁ ପ୍ରବେଶିଲା ଝୁମର ସଙ୍ଗୀତ ତାଳେ
ଝୁମର ନର୍ତ୍ତନ, ମହୁଲୀ ମଦିର ।
ବଲାଙ୍ଗୀ ସେ ପଟ ତଟ ପ୍ରାନ୍ତୁ
ଭାସି ଆସୁଥିବା ନୃତ୍ୟରତା ଭୂମିଜ ବାଳାର
ମଧୁର ନୂପୁର ନାଦ ।
ଏଇ ଲୋ ତୋର 'ଅସ୍ତିଆ' ଓ 'ଜାମବଣୀ',
ନୃତ୍ୟ ସିଦ୍ଧି ଅର୍ଥେ ପୂଜାପୂତ ଅସର ଆଖଡ଼ା
ସେ ଦିନର କବି କାହିଁ
ଗାଇ ନି ତ ସେଇ ଗୀତ
ସେଇ ସେ ଦିନର ବଂଶୀଧ୍ୱନି ପରି କାରୁଣ୍ୟ ରସାଳ ।
ନାହିଁ କବିବର କେହି
ବିଳପିବ କାହିଁ କେତେ ଦୂରେ
ଝୁରଇ 'ବଳଙ୍ଗ', 'ଶୋନ' 'ଗଙ୍ଗାହାର' ।
ସାରସ୍ୱତ ଖ୍ୟାତିର କାଙ୍ଗାଳ
କାହିଁ ବା ସେ ମେଘାସନ
'ସ୍ୱଭାବେ-ଗିରୀନ୍ଦ୍ର ହୋଇ' ଲଭି ନି ଆସନ
ଗିରି ସମାଜରେ ।
କେ ବୁଝିବ ଧାନର ଅନ୍ତର
ସଂବେଦନଶୀଳ ହୃଦୟ କେ ନୋହିଲେ ।
ଆଗେ ପୁଣ୍ୟବତୀ !
ତୋର ପୁଣ୍ୟ କୋଳେ
ଏଥି ବର୍ଷାନ୍ତକେ ଥରେ
ତ୍ରିବସ ବ୍ୟାପି ସମାହିତ ହୁଏ ରଥଯାତ୍ରା
ମହା ସମାରୋହେ,- ଆଷାଢ଼ର ସ୍ୱେଦବାରିସିକ୍ତ—
କଳେବରେ-ଇଏ ଯଥା ଦ୍ୱିତୀୟ ଶ୍ରୀକ୍ଷେତ୍ର
ଲୋକେ ଲୋକେ- ଲୋକାରଣ୍ୟ
ଭକ୍ତେ ମହା ଭକ୍ତିଭରେ
ଭୂତଳେ ଲୋଟନ୍ତି ପୁଣ୍ୟ ସଞ୍ଚୟନେ ।

'ଦେବତା ମୁଁ' କହି ହୁଏ ସରଣୀର ରେଣୁ,
ଆତ୍ମମନ୍ୟ ରଥ କହେ ଏ ପ୍ରଣତି ତା'ରି,
ରଥୋ ପରି ବିଗ୍ରହଂ ପ୍ରତିମା ଆତ୍ମମରୀ ପଣେ
ବୋଲାଇ ହୁଏ ସେ ସେଇ ଇ ଦେବତା
କାହିଁ ସେଇ ଅନ୍ତର୍ଯ୍ୟାମୀ
ଅନ୍ତରାଳୁଁ ହସି ଉଠୁଥାନ୍ତି,
ପରମ କୌତୁକେ ମୂଢ଼ପଣ ଦେଖି ।
    ମଧୁବନ ଉପକଣ୍ଠେ
ରାଣୀ ଉଦ୍ୟାନର ସହଚରୀ ପ୍ରାୟ
ସ୍ୱତଃ ସ୍ପୂର୍ତ୍ତ ସଦାନୀରା ବାରୁଣୀ ନିର୍ଝର
ଅବିରଳ ଢ଼ାଳି ଅଭିଷେକ ବାରି
ବିଷଜ୍ୱାଳା କରେ ନିବାରଣ
ସତ୍ୟ ଶିବ ନୀଳକଣ୍ଠଙ୍କର
ସୃଷ୍ଟିର ପ୍ରାକ୍ କାଳେ ଯିଏ
ସମୁଦ୍ର ମନ୍ଥନୁ ଉପଜାତ
    ଗରଳ ବିପାକୁଁ
ଉଦ୍ଧରିଲେ ବିଶ୍ୱ ବ୍ରହ୍ମାଣ୍ଡକୁ
ସୃଷ୍ଟିର କଲ୍ୟାଣେ ।
ନିତ୍ୟ ନିରାମୟ
    ଶ୍ରୀ ବାରୁଣୀଶ୍ୱର
ନିର୍ବିକାରେ ସେଇ ଦେବ ଦେବ
ଦିବସନ୍ତି ଏଥି ଜନନୀ ଗୋ
    ତୋରି ଉସଙ୍ଗେ ।
ନିଜେ ଭୋଳ, ଭୋଳ ଜନ ନାଥ
ଜାଣନ୍ତି ନି ତାଙ୍କରି ପ୍ରସାଦେ
ବାରୁଣୀର ଶୀତଳ ସଲିଳେ
ସମାଦି ବାରୁଣୀ ସ୍ନାନ
ମୁକ୍ତି ପନ୍ଥୀ କେତେ
ଲଭୁଛନ୍ତି ନିସ୍ତାର ସନ୍ଧାନ ।

ଆସିଥିଲା ଦିନେ ଅକସ୍ମାତ
ମହୋଦଧି କୂଳେ, ଉପକୂଳେ ଶତ୍ରୁବିଭୀଷିକା
ତେଣୁ ତୋର ପ୍ରତି ସଂରକ୍ଷଣେ
ତୋଳା ହେଲା ଯୋଜନାନ୍ତେ
ଜମ୍ବୀରା ତଟିନୀ ପୂର୍ବପ୍ରାନ୍ତ ଘେରି
ଶତ୍ରୁ ତୋପଧ୍ୱଂସୀ ବିମାନ ବନ୍ଦର-
ଦୂରାନ୍ତ ପ୍ରସାରୀ, ମହାନ, ବିରାଟ,
ଦେବଶୃଙ୍ଗ ଧାମେ,
ଅଦ୍ଭୁତ ଗୋଲକ ଧନ୍ଦା ଛନ୍ଦା ମାୟାଜାଲ ଅବା ।
ସତର୍କ ପ୍ରହରୀ ସମ ଥିଲେ ସତତ ସଜାଗ
ସୁଚତୁର ଆକାଶ ବାହିନୀ
ଆନ ପଟେ ବିନ୍ଦୁ ଭଣ୍ଡାରର
ସର୍ପିଳ ଗିରିସଂକଟ;
ତୋ ରକ୍ଷଣା ଭାର ସାଥେ
ଏ ଦେଶର ଦୁର୍ଗତ ବେଳାରେ
ରହିଥିଲେ ଜଗି ଅତି ସନ୍ତର୍ପଣେ
ସୁବିଶାଳ ଅନୀକିନୀ,
ଉନିଦ୍ର ଜାଗ୍ରତ ।
ଆଜି ନାହିଁ ଆଉ ଏଥି
ସେ ଦିନର ସଂଗ୍ରାମ ହକରା ।
ମନେ ହୁଏ ତେଣୁ
ଆଲୋ ବାରିପଦା,
ତୁ ହେଲୁଣି ସମୃଦ୍ଧିର ଦ୍ୱାରଦେଶେ
ପ୍ରଶସ୍ତ ତୋରଣ ।
ସେ ଦିନର ଦେଖା ଏବେ ହେଲାଣି ଅଦେଖା
ଯୁଗୋଉର ପରି ଆଜି ହେଲାଣି ମୋ ପ୍ରତେ ।
ନୂତନରେ କେବେ ମୋର
ନାହିଁ ଥିଲା ନାହିଁଛି ଅପ୍ରୀତି

ତଥାପି ତ ଜନନୀ ଲୋ ତୁହି ସେଇ ଚିରପୁରାତନୀ, ଚିର ପୂଜନୀୟା ।
ସେଇ ମୋର ପଛେ ଛାଡ଼ି ଆସିଲା ଦିନର, ଦରିଦ୍ର ଜନର,
ମହାଗଣ୍ଡି ଧନ, ଅମୂଲ୍ୟ ସଞ୍ଚାଳି ।
ହାୟରେ ମୋ ବିଧିଲିପି,
ନୈରାଶ୍ୟ ଜର୍ଜର ମୁହିଁ
ତୋ କୋଳେ ଯାପିବି ବୋଲି ଅନ୍ତିମ ଜୀବନ
ଆଶାୟୀ ମୁଁ ହେଲି ଯଦି,
ସବୁ ମୋର ମନୋରଥ ଚୂର୍ଣ୍ଣ ହେଲା ଆସି
ଶାଲ୍ମଳୀର ପଥରୋଧି ଶୈଳଶୃଙ୍ଗ ତୂଳେ
ପ୍ରୀତି, ଅନୁରାଗ, ମାନ, ରୋଷ, ଖେଦ ଅଭିମାନ,
କିଏ ପ୍ରିୟ ପ୍ରିୟବତୀ, ଚିହ୍ନା ଅଚିହ୍ନାର ସୋହାଗ ସମୂଳ,
ହସ ଖେଳ, ନର୍ମ ଅଭିଯାନ
ଲୋତୁଥିଲେ ଦୂରେ ଆଇ
ପ୍ରଭାତର ଶେଷ ସ୍ୱପ୍ନେ
କ୍ଷୀଣ ହାସ ରେଖା ଫୁଟି ମଉଳିଲା ପରି
ସବୁ ମିଶିଯାଏ ଶୂନ୍ୟେ ମହାଶୂନ୍ୟେ,
ଅନନ୍ତ ସେ ଗର୍ଭେ, ଗର୍ଭ ଅଭ୍ୟନ୍ତରେ ।



॥ ୯ ॥

## ଶରତ-ସ୍ୱର୍ଗେ

କେବେ ଶ୍ରାବଣ ମେଘର ଫାଙ୍କେ
ତୁମେ ଚାହିଁଥିଲ ଅରେ ବିଦେଶୀ;
ଆଜି ତାହାରି ଛବି ମୁଁ ଆଙ୍କେ
ଆଖି ଆଗେ ସେହି ରୂପ ନିବେଶି;
ଶ୍ରାବଣ ଯାଇଛି ବର୍ଷଣାତୁର
ମେଘ ଆଜି ଅବସନ୍ନ;
କ୍ଳାନ୍ତ ଧରଣୀ ତରଳ ମାରାଗ

ବର୍ଣ୍ଣ ବିଭବେ ଛିନ୍ନ;
ଆଜି ସକଳ ପ୍ରୟାସ ତୂଣୀର
ବ୍ୟର୍ଥ ହୁଏ ମୋ ନିଷ୍ଫଳେ ଯଥା ଗୁମରଇ
 ଏହି ମୁଦିର ।
ଖାଲି ଅବସାଦ ଭରା ପୁଲକେ
 ଚାହିଁ ମୁଗ୍ଧ ମୁଁ ଦିଗ ସେ ପାରେ
କାହା ଧାନ ଫୁଲମିଶା ଅଳକେ
ମୋର ଦୃଷ୍ଟି ଲଭଇ କାରାରେ;
ପରିଚିତ ବୋଲି ପ୍ରିୟ ସମ୍ଭାଷେ
 ମନ ମୋର ଧାଏଁ ତା ପାଶେ
କମ୍ର ମୁଖ ତା କୁନ୍ତଳେ ଛାଇ
 ଉଡ଼ିଯାଏ ସେ ତ ଆକାଶେ ।
ଚିର ତରୁଣ ଅଧରୁ ତାହାର
ଦରହାସେ ସାଥେ ଝରି ଝରି ପଡ଼େ
 ମୋ ଶିରେ ଶେଫାଳୀ ହଜାର
ଚାରୁ କାନ୍ତିର ସେ ଗୋ ଦାୟାଦ
 ମୁଁ ତ ନର ଏଇ ଧୂଳି ମାଟିର
ତାର ବର୍ଣ୍ଣ ବିଭବେ ପ୍ରାସାଦ
 ଦୁଃଖ ଦୈନ୍ୟେ ଭରା ମୋ କୁଟୀର
ପରଶ ମଣି ସେ ପରଶେ ତାହାର
 ଧରା ଉଲ୍ଲସେ ବୋଲି କି
ରୂପଧାରେ ମୋର ଅରୂପ ରୂପସେ
 ଧରା ଦେଇ ଯିବ ଖାଲି କି,
ଯଦି ମାନବ ମସୀରେ ମଳିନ
ହେବାରେ ତା ଭୟ ଲୋଡ଼େ ନା ମୁଁ ତାରେ
 କରିବାରେ ମସୀ ଅଧୀନ
ଆଜି କାହିଁଛି ସେ ବିଶ୍ୱ
 ସଜ ସ୍ୱପ୍ନ ଅରୁଣ ଦ୍ୟୋତକ;
ତାହା ସାଥେ ଆଜି ମୁଁରେ ନିଃସ୍ୱ

ସବୁ ହରାଇ ରଖିଛି ଲୋତକ;
ଯା କିଛି ଥିଲା ମୋ ସୌରଭମୟ
ସବୁତ ଲଭିଛି ସମାଧି,
ତଥାପି ଭ୍ରାନ୍ତି ବିଳାସୀର ଯାହା
ଏ ଜଗତ ଏଡ଼େ ବିବାଦୀ ।
ତେଣୁ ନିର୍ମଳ ଏଇ ଶରତେ
ଆଶାହତ ମୁହିଁ ଅଧପଥେ ଆସି
ଢୁଳାଇ ପଡେଁରେ ନିସତେ ।



॥ ୧୦ ॥

## କାଶୀତଳ ବାହିନୀ ଗଙ୍ଗା

ପଞ୍ଚକ ପୂର୍ଣ୍ଣିମା ପବିତ୍ର ପ୍ରତ୍ୟୁଷେ
ଗଙ୍ଗା ସ୍ନାନ ସାରି,
ନମି ଦେବାତ୍ମନେ ଶ୍ରୀଗଙ୍ଗା ଗୁରବେ
ଦୂରୁଁ, ବହୁ ଦୂରୁଁ
ଭକ୍ତି ପୂତ ଚିତ୍ତେ ପୂଜି ଆଶୁତୋଷ କାଶୀ ବିଶ୍ୱନାଥ
ରାଶି ରାଶି ପୁଣ୍ୟଧନ ଯେହୁ ବିତରନ୍ତି
ଅକାତରେ,
ସେଥି ଏକ ତରୁଣ ଦିବସେ
କେତେ କଲି ପୁଣ୍ୟ ଆହରଣ
ସେ ସନ୍ଦେଶ କେବେ ମୋତେ ଦେଇ ନାହିଁ କେହି ।
ସୁଗଭୀରା, ସ୍ନିଗ୍ଧ ସ୍ୱଚ୍ଛନୀରା,
ବିତଳ ଆଶ୍ଳେଷ ଶୋଭନା ଜାହ୍ନବୀ ।
ଶାନ୍ତ ସୁନିର୍ମଳ ଯେହ୍ନେ ଶରଦର ମେଘମୁକ୍ତ ନଭଃ ।
କାର୍ତ୍ତିକର ସେଇ ଏକ ହଜାଇଲା ନିଶି
ମୃଦୁ ସୁଶୀତଳା ।
ଶୁଭ୍ର ଅଭିସାର ସ୍ପୃହା

ସଫଳାଇ ଥିଲା ଶୁଚିସ୍ମିତା ପୌର୍ଣ୍ଣମାସୀ
ଯେହ୍ନେ ଜ୍ୟୋତ୍ସ୍ନା ଜାଲେ ।
ମନେ ପଡ଼େ ଆଜି
ଅଟ୍ଟାଳୀମାଳିନୀ ପ୍ରାଚୀନା ନଗରୀ, ପୁରାଣ ବିଶ୍ରୁତା,
କାନ୍ତିମତୀ ଆଦି ଉଷା ପରି,
ପୁଞ୍ଜୀକୃତ ଅନାଦି କାଳର ସଞ୍ଚିତ ସୁକୃତେ
ଦୀପ୍ତିମୟୀ ପୁଣ୍ୟା ବାରାଣସୀ,
ଯୋଜନାନ୍ତ ଯାଏ ଆପଣା ଶ୍ରୀଅଙ୍ଗ
ଢାଳି ରଖି ହସି ଉଠେ ଧନୀ
ନିରଳସ ସୁଧା ଧାରେ ଧାରେ ।
ତେଣେ ଆନ ତଟେ
ଶ୍ୟାମ ଶସ୍ୟ କ୍ଷେତ
ପ୍ରସାରିଛି ଦୂରୁଁ ଦୂରେ ଅସରା ବିସ୍ତାର ।
ମଧ୍ୟେ ଏ ବିପୁଳା
ବହମାନ ଜୀବନ ସ୍ରୋତର
ପୂର୍ବ ଦିଗ ରେଖା ଛୁଇଁ ଦେବନଦୀଧାରା ।
ଦେବ ସୀମନ୍ତିନୀଙ୍କ ଏ କଳନାଦୀ ଯେହ୍ନେ କାଞ୍ଚୀଦାମ ।
ଧୀରେ ଧୀରେ, ଆହୁରି ମନ୍ଥରେ
ଚଳାଅ କ୍ଷେପଣୀ ତୋର, ଆରେ ରେ ନାଉରୀ,
ଦେଖିବୁ, ଏ ଶୋଭା, ଏଡ଼େ ମନୋଲୋଭା ।
କେଉଁ ଶୋଭାମୟୀ ଧରେ
ଚିର କୌମୁଦୀ ଚର୍ଚ୍ଚିତ
କେଉଁ ଦ୍ୟାବା- ପୃଥିବୀ ମଣ୍ଡଳେ ?
ସ୍ଫୀତ ସୁନ୍ଦରିମା ଫେନ ପୁଞ୍ଜେ ଧବଳିତ
କ୍ଷୀରାବ୍ଧିର ଅଙ୍କେ ?
ନାହିଁ ଧୂଳିକଣା ନାହିଁ ମଳିନିମା
ପାପ ସ୍ପର୍ଶ ଘଟି ନାହିଁ ଲେଶେ ।
ଅଛି ସାମ ଗାନ ରମ୍ୟ

ତପୋବନ ପାଶେ ପାଶେ
ଦେବଭୂତି ଦେବେନ୍ଦ୍ର ବାଞ୍ଛିତ ।
ମେଣ୍ଟେ ନାହିଁ ଏଥି ତୃଷ୍ଣା ।
ଥାଉ ସବୁ ମୋର ଯେତେ ଯାହା ଅଛି ଯହିଁ
ଥାଉ ନା ସେ ସବୁ ଆଜି;
ଚାହେଁ ନା ଏ ଜ୍ୟୋସ୍ନାପ୍ଲୁତ ତରଙ୍ଗ ବିହାର
ଛାଡ଼ି ଦୂରେ, ନ କଲାକ ଯାଏ, ଆକଣ୍ଠ ତା ପାନ,
ଉପବାସେ ଫେରେ ମୁଁ ମୋ ଅନ୍ଧାରୀ କୂପକୁ ।
ନା ଆଜି ହେଉ ଏଥି ଏ ମୋ ଉନିଦ୍ର ରଜନୀ
ଦୀର୍ଘହୁଁ ସୁଦୀର୍ଘ ।
ନିମ୍ନେ ତରୀତଳେ
ଲଘୁ ପଦପାତେ ଅପସରୀଏ ଚାଲିଥିଲା ପରି,
ମନ୍ଥର ମୃଦୁଳ ବୀଚି ମାଳ ମାଳ
କ୍ଷେପଣୀ ତାଳନେ ନିର୍ମାଣି ରଖିଛି
ଶତ ମାଣିକ୍ୟ ମୁକୁର;
ଗୋଟିଏ ଚନ୍ଦ୍ରର କୋଟି ଚନ୍ଦ୍ରବିମ୍ବ ଝଳେ
ପ୍ରତିଫଳନରେ;
ଧରଣୀର ସଜ ସବୁଜିମା
ନିମଜ୍ଜାଇ ଦିଏ ନେଇ ନିଜ
କ୍ଷୀର ସିନ୍ଧୁ ସମ ମହାଧବଳେ ବିସ୍ତାରେ ।
କ୍ଷୀର ନୀର ମିଶିଯାଏ ଏକାକାରେ
ଆକାଶ ଅବନୀ ସୀମାରେଖା
ଏକୁଁ ଆରେକର ହୁଏ ନାହିଁ ବାରି ।
ନିଜେ ମୁଗ୍ଧ
ଚରାଚର ମାୟା ମହାବେଶେ
ଆତ୍ମହରା ସର୍ବେ ।
ଥାଉ ନାହିଁ ଆଜି ତିମିର ଗଞ୍ଜଣା

କୃଷ୍ଣା ଯାମିନୀର;
ପରାଭବ ଗ୍ଲାନି ମାନି ଲୋଡିଛି ଆଶ୍ରୟ
କେକିଶୀଳା ପ୍ରମଦାଙ୍କ ଦୀର୍ଘ କେଶ ପାଶେ ।
ଉର୍ଦ୍ଧ୍ୱେ ଶିରୋଦେଶେ
ବିରାଟ ବିତାନ ନକ୍ଷତ୍ର ଖଚିତ
ମେଲି ରହେ ଦିଗମୂଳ ଛୁଇଁ
ଅସପତ୍ନ ଶ୍ୱେତ ରାଜଛତ୍ର,
ନିର୍ମଳ ନିଶାଣ ଇଏ କିରଣ ମଞ୍ଜୁଳ
ଯେହ୍ନେ ସୁଧାଂଶୁର ।
ତ୍ରିଲୋକର ତ୍ରିତାପ ନାଶନେ ଆଗୋ ତ୍ରିପଥଗା,
ତୁମରେ ଦିଅନ୍ତି ସର୍ବୋଚ୍ଚ ସମ୍ମାନ
ଚନ୍ଦ୍ରମୌଳି ତାଙ୍କ ଶିରୋପରି ତୋଳି;
ତେଣୁ ଆଜି ତୁମେ ସରିତ କୁଳେଶ୍ୱରୀ,
ତବ ପୁଣ୍ୟୋଦକେ ଅଭିଷେକ ରଚିଯାନ୍ତି
ତବ ଶିରୋଭୂଷା ଆଜିର ଏ ସୁନ୍ଦର ଶଶୀର ।
ଅଭିଷେକ ?
ନୀରବେ ପାଳନ୍ତି ଯାହା ଦଶଦିଗପାଳ
ଜାଣନ୍ତିନି କେବେ କାହିଁ ତା ଉତ୍ପତ୍ତି
କେଉଁ ସଉନ୍ଦର୍ଯ୍ୟ ସାଗର ମନ୍ଥନୁଁ
ଜ୍ୟୋତ୍ସ୍ନା ପାୟୀ ଚକୋର ଜାଣେ ନା-
ଜାଣିବାର ନାହିଁ ଅବକାଶ ଅଥବା ଲାଳସା
ପ୍ରିୟା ମୁଖେ ମୁଖ ଦେଇ କରାଏ ସେ ପାନ
ଏ ସୁଧା ଧାରାର ନିର୍ମଳ ମଦିରା ।

ସ୍ତୁତି ?

ହେଲେ ନା କି ଫିଙ୍ଗିବାର
ଲଭୁଥାନ୍ତା ଜୀବନ୍ତ ନିସ୍ତାର-
କବି କଣ୍ଠବାଣୀ ଶୁଣୁଛି କିଏ ବା ।
ଏଥି କେତେ ରାଜକୁଳ,

କେତେ ଅରି, ଅରିନ୍ଦମ ରାଜ ରାଜେଶ୍ୱର
ଗଲେଣି ଉଭେଇ, ଏଇ ନଦୀ ବକ୍ଷେ
କୋଟି କୋଟି ଜନ ବୁଦ୍ ବୁଦର ସମ।
ଶୁଭେ ନା ଚାରଣ ଗୀତି,
ନିଦାରୁଣ ଇତିହାସ ହୋଇଛି କି ନାହିଁ
ଲିପିମାନେ ବିରଚିତ
ଜାଣେ ନାହିଁ କେହି,
ସ୍ମୃତି ସ୍ମେରା ଏ ତଟିନୀ
ହର୍ମ୍ୟ ଶିଖୁ ବାତାୟନ ମାର୍ଗୁ
ନିଶିଥିନୀ ବିହାର ରସିକ
ପ୍ରଣୟିନୀ ଆଶ୍ଲେଷ ବିଭୋର
ଦେଖି ବି ନ ଦେଖୁଥିବେ
ଆଜିର ଏ ଜ୍ୟୋତ୍ସ୍ନା ପ୍ରୀତିମୋଦେ
ଏ ତରଣୀ ସନେ ଆଉ
ସାଂଯାତ୍ରିକ ତରଣୀଚାରୀଙ୍କୁ
କେତେ ପରିମାଣେ
କରି ରଖୁଅଛି
ବିହ୍ୱଳିତ ମତି
ସ୍ମୃତି ?
ପାରେ ନି ଉଠାଇ ଥରେ ହେଲେ
ଓଲଟେ ଚଳାଇବ ତା ଉଜାଣିର ଗତି
ଜାହ୍ନବୀର ଶୁଭ୍ର ଜଳ ବେଣୀ ଆଉ
ଚନ୍ଦ୍ରିକା ଚନ୍ଦନ ଚର୍ଚ୍ଚା
ବାରୁଣୀ ସ୍ନାହାନ ଯୋଗ ଶୁଭ ଅବସରେ
କିଏ ବା ତାହେଁ ନା କହୁ ଏଥି
ରଚେ ଜଳକେଳି ପାଶୋରା ଦିନର
ଜାତିସ୍ମର ଗୋପବଧୂ ଯାହାରେ ସୁମରି
ଆଜିଯାଏ ଝୁରି ମରୁ ଥାଇ/
ସେଇ ଲାଗି ଅବା ଆଜି ବେଳେ ବେଳେ

ଏଇ ନିଶା କୋଳେ
କ୍ରନ୍ଦସୀର କରୁଣ କ୍ରନ୍ଦନେ
ଶୁଭୁଥିଲା ପରି ଲାଗେ
କ୍ଷୀଣରୁ କ୍ଷୀଣତର
କୂଳେ ଭାଜି ପଡ଼ିଲା କାରୁଣ୍ୟ ।
ବଂଶୀ ସ୍ୱନେ ଥାଏ ବୋଲି ବେଦନା ସଙ୍କେତ
ହେଲେହେଁ କାରୁଣ୍ୟ,
କିଏ ବା ଜାଣେନା ସିଏ ଏତେ ଶ୍ରୁତି ରସାୟନ
ଅଧ୍ୟୟନ, ଅଧ୍ୟାପନା, ଯଜନ, ଯାଜନ,
ଏହି ଯେଉଁ ଏ ପାଠର ନିତ୍ୟବ୍ରତ
ଏ ସବୁର କଳରୋଳେ
ଗୁରୁଗୃହ ବିଦ୍ୟାପୀଠ
ହେଉଥାଏ ଅବିରଳ ଯେ ମୁଖରିତ ।
ବାଣୀ ଆରାଧନା
ଅବଜ୍ଞାତ ହେଲାପରି ଜଣା ଅବା ଶୁଣା
ନାହିଁ ଦିନେ ଏଥି ।
ଲକ୍ଷ୍ମୀ ସରସ୍ୱତୀ
ଚିରନ୍ତନ ସପତ୍ନୀ ବିବାଦ
ମହାନନ୍ଦେ ନିବସନ୍ତି ଏଇ ତଟଦେଶେ
ଏକ ଆରେକର
ମହା ପରିପୂରକ ପରାୟେ
ସହ ଅବସ୍ଥାନେ ।
ଏଣେ ହେଉଥାନ୍ତି ଭୁଣ୍ଡ
ବହୁ ଶାସ୍ତ୍ର ବିଶାରଦ ବିଦୂଷ ମଣ୍ଡଳୀ
ଗହଣେ କେତେ ନା କେତେ
ବିଦୁଷୀ ତରୁଣୀ
ଜ୍ଞାନ ଗାରିମାରେ ପରା ବିଚାର ପ୍ରୟାସୀ
ବିମୂଢ଼ା ଜନନୀ ପ୍ରାୟେ ବିଷ୍ଣୁପଦୀ ତୁ ଲୋ

ଅବୋଧ ତନୟଙ୍କର ତର୍କ କୋଳାହଳ
ଶୁଣୁ ଆଉ ସ୍ଥିର କୁତୂହଳେ ।
ତେଣୁ ପରା ଅର୍ଥପୂର୍ଣ୍ଣା ଥିଲା ।
ଏ ନଗରୀ ବିଦ୍ୟାପୁରୀ ନାମେ ।
ଆଗୋ ମର୍ତ୍ତ୍ୟ ମନ୍ଦାକିନୀ
କେତେ ତଟପ୍ରାନ୍ତେ ତୋର କାହିଁଛି ଲୋ
ରୂପାଜୀବା ସାଧିକାର କଣ୍ଠେ କଣ୍ଠେ
କୂଜ ଉଚ୍ଛୁଳା ସାଧନା ରାଗ ସଙ୍ଗୀତର ।
ସେ ନିକି ଏ ଶୀତଭାନୁ କରେ
ଅଙ୍ଗରାଗ ରଚି ନୀରବିଛି
ଏଇ ମଧୁ-ଚନ୍ଦ୍ରିକା ଯାପନେ
ନିଶାଥର ଏମିତି ଏକାନ୍ତେ ?
ଠାବେ ଠାବେ ଘାଟବନ୍ଧା
ଦୂର ଶୈଳ ଖଣ୍ଡୁ ଅଣାହେଲା ମସୃଣ ପ୍ରସ୍ତରେ ।
କେତେ ସ୍ୱିନ୍ନ ଶ୍ରମ-ସମ୍ବଳର
ହୋଇ ବା ନ ଥିବ ଏଥି ପ୍ରାଣବିସର୍ଜନ, କେ କରିଛି ଲେଖା ।
ତେବେ ଶିଳ୍ପୀ ବିଶ୍ୱକର୍ମାଙ୍କର
କୀର୍ତ୍ତିରୂପୀ ଉଡିଛି କେତନ ।
ତଥାପି ଚିକ୍କଣ, ମାତ୍ର ଘାଟ ହୋଇନି ରକ୍ତିମ ।
କେତେ ରୂପବତୀଙ୍କର ଲାକ୍ଷାରସ ରଞ୍ଜିତ ପୟର
ଘଷା ହୁଏ ନିତି ନିଶି ପ୍ରଭାତିଲେ ଏଇ ଘାଟ ତଟେ;
ପଦାଘାତେ ତାଙ୍କ ଅଙ୍କୁରି ନାହିଁ ତ ଦିନେ ଅଶୋକ କଳିକା ।
ଆଉ ବିଶ୍ୱାସ ସମୂଳ ମୁକ୍ତି ପିଆସୀଙ୍କ ଏଇମୁକ୍ତି ମାର୍ଗ ।
ସମ୍ମୁଖେ ରହିଛି ଏ ଯେ ସୁନ୍ଦର ସଂସାର,
ଭରପୂର ବିଳାସ ଐଶ୍ୱର୍ଯ୍ୟେ, ଦେଖିବି ନ ଦେଖେ କେହି,
ସେଇ ଏକ ରାତିକର ରାସଲୀଳା-ଉଲ୍ଲୋଳ ଚଞ୍ଚଳ- ଚଟୁଳ ।
ରଚିଥିଲେ ଯାହା ଗୋପାଙ୍ଗନା ମେଳେ
ବିଦଗ୍ଧ ତରୁଣ ଶ୍ରୀକୃଷ୍ଣ ତରୁଣ ସୁନ୍ଦର

ଜୀବନ୍ତ ଯମୁନା ତଟ ବୃନ୍ଦାବନ ଧାମେ
ଯାଉ ସବୁ ତ ଗଲାଣି, ଥାଉ ମାତ୍ର ସ୍ମୃତି ।
ପାରିଧିକୁ ସେ ଉତ୍ସବ ବାର୍ତ୍ତାର ସନ୍ଧାନ
ଦେଇଥିବ ଭଗିନୀ ଯମୁନା ।
ରାତିକର ରାତିଟାଏ ବୋଲି
ପରିହରିବାରେ ସବୁ ଅଙ୍ଗ କ୍ଲାନ୍ତି
ସବୁ ଗ୍ଲାନି ସବୁ ଅବସାଦ
ନିସ୍ତବ୍ଧ ବିଶ୍ରାନ୍ତି
ହେଉ ସର୍ବ ଜ୍ୟୋତ୍ସ୍ନାପ୍ରିୟଙ୍କର
ପୂର୍ଣ୍ଣ ଉପଯୋଗ, ଶୀତଳ ବାହିନୀ ଗଙ୍ଗା ଶୀକର ପରଶେ ।
ଆସ ବନ୍ଧୁ- କହ ନାହିଁ କଥା—
ଦେଖ, ଭୋଗ ଅନିମେଷ ନୀରବ ମାଧୁରୀ ।
ଆମ ଯାତ୍ରା ପଥ ହେଉ
ଅସରନ୍ତି ସ୍ଥିର ଓ ନିଥର ।
ମୃଦୁ ମନ୍ଦ ପ୍ରବାହିନୀ ଗଙ୍ଗା—
ଏତ ନୁହେ ବେଗବତୀ ତରଙ୍ଗ ବିକ୍ଷୁବ୍ଧା
ଯାର ଆଦ୍ୟ ଅବତାର ପାତ
ଶିର ଦେଶେ ବହି ସମ୍ଭାଳିଲେ
ସର୍ବଂସହା ଧରଣୀ କି ଦେବୀଙ୍କି
ନୀଳକଣ୍ଠ ସେ ଦିନର ପରଳ ବିହ୍ୱଳ ।
ଲୋ ସ୍ୱର୍ଣ୍ଣଦୀ ।
ନିର୍ବିକଳ୍ପା ପ୍ରଶାନ୍ତ ମୂରତି,
ପୁଣ୍ୟ କାଶୀ ପାଠେ ଘେନ ମୋର ଅୟୁତ ପ୍ରଣତି ।
ପୂଜା ଆରାଧନା
ସ୍ତୋତ୍ର, ସ୍ତବ ପାଠ-ସବୁ ମୋର ଯାଇଛି ପାଶୋର
ସମ୍ବଳ ମୋ ଖାଲି
ଭୋଳା ମନ ଆତ୍ମ ନିବେଦନ ।
କାହିଁ କେତେ ଦୂରେ ଛାଡ଼ିଲିଣି
କ୍ଲାନ୍ତି ହରା, ଚନ୍ଦ୍ରିକା ଚୁମ୍ବିତା,

ସେ ଦିନର ଅନୂଢ଼ା ରଜନୀ ?
ଫେରିଛି ମୁଁ ବିଷୟ ଗହନ ଦାରୁଣ ସଂସାରେ ।
ଅଗ୍ରେ ମମ ସୁବିଶାଳ ପ୍ରସାରିଣୀ ଆର୍ଯ୍ୟାବର୍ତ୍ତ ଭୂମି,
ପୟସ୍ୱିନୀ ବକ୍ଷଧାରା ପୁଷ୍ଟ
ସ୍ୱର୍ଣ୍ଣଶସ୍ୟପ୍ରସୂ ବିମୁଗ୍ଧା ଜନନୀ ।
ଏ ବିଭବେ ଅଛି କିନା ମୋର ଅଧିକାର
ଜାଣେ ନା ମୁଁ ।
ବିଳପି ବସିଲେ ପରାଭବ ଆଜି
କେ କହିବ କାହିଁ ତାର ଅନ୍ତ ।

■■

## ।। ୧୧ ।।

## ପହଲି

ଜଳ କହେ ମାଟିଭାଣ୍ଡ ଅଛୁଆଁ ମୁଁ ତୋ ଲାଗି
ଭାଣ୍ଡ କହେ ତୋ ପରଶେ ହେଲି କୁଳ ତିଆଗୀ
ଚାଲୁଣି କହିଲା ଛୁଞ୍ଚୀ ମୁଣ୍ଡରେ ତୋ କଣା
ଛୁଞ୍ଚୀ କହେ ଛିଦ୍ର ତୋର କେ କରିଛି ଗଣା

ନ ମେଣ୍ଟିଲା ହାୟ ବିବାଦ,
ବୀଜବୃକ୍ଷୁଁ, କିଏ ଆଗ-
କିଏ ଦେବ ସଂବାଦ ।

ଯେଉଁ ତାଳ ଖଣ୍ଡ ଧଇଲି ଯତନେ
ସେ ତାଳ ପଡ଼ିଲା ଭାଙ୍ଗି
ଦେବତା ଚରଣ ସେବି ହେଲି ସିନା
ଚିର ଅପଯଶ-ଭାଗୀ ।

ଏଠୁ ଜଣେ ଗଲା ସିଧା ପୂର୍ବ ଦିଗେ
ଆନ ଗଲା ସିଧା ପଶ୍ଚିମ
ଓଲଟି ଫେରି ନି ଏକାଠି ଭେଟିଲେ
କିବା ଯାଦୁ ଏଠି ଅଛି ମ ?

■■

॥ ୧୨ ॥

## ଗଙ୍ଗାଗୀତି

ଆଗୋ ଗଙ୍ଗା
ଶାନ୍ତ ମଧୁର ସୌମ୍ୟା, ରମ୍ୟା, କ୍ୱଚିଦ୍ କୁଟିଳ ଭ୍ରଭଙ୍ଗା
  ଧାତ୍ରୀ ସ୍ୱରୂପିଣୀ ଗଙ୍ଗା,
କେବେ କେଉଁ ବେଶେ ଅବତରି ତୁଲୋ
  ଗଢ଼ିଲୁ ଭାରତ ବର୍ଷ
ସ୍ୱର୍ଣ୍ଣ-ଶସ୍ୟେ ପୂର୍ଣ୍ଣ କଲୁ ତୁ
ଉପୁଜିଲା ମହାହର୍ଷ ।
ନାହିଁ ସଙ୍କଟ, ଲଂଘିଛୁ ବାଧା
ହିମଗିରି କୋଳୁଁ ମହୋଦଧି ଯାଏ
  ସବୁରି ଆରାଧ୍ୟା,
ପୁଣ୍ୟ ସୁଧାଙ୍ଗିନୀ ଗଙ୍ଗା ॥
ରୁଦ୍ରାଣୀ ତୁଲୋ, ତୁଅନା ଦାରୁଣା କୋପନା
ପ୍ରଳୟ ପୟୋଧି ଜଳେ
କେ କଲାଣି ସନ୍ତରଣା,
ଅକରୁଣା କଲେ କଲ୍ୟାଣୀ ତୋତେ
କେ କହେ ଜନନୀ ଗଙ୍ଗା ॥



॥ ୧୩ ॥

## ରତ୍ନଧନ

ହଜାଇଛି ରତ୍ନ-ଧନ
ଶ୍ରେଷ୍ଠ ରତ୍ନ-ଧନ ମହୀମଣ୍ଡଳର
ସତେ ତେବେ ମୁହିଁ ଦୀନ ଅକିଞ୍ଚନ !
ହରାଇଛି, ହରାଇଛି;
ହରାଇ ପାଶୋରିବାକୁ କେବେ ତ ମୋ
ବଳି ନାହିଁ ମତି,
ମୁଁ କି ତେବେ ସତେ ଦୀନତମ ?

ପରମାତ୍ମୀୟ, ଶୁଭେଚ୍ଛୁ ମଣ୍ଡଳୀ ମଧ୍ୟେ
ନିଷ୍କପଟ କଲ୍ୟାଣ ଚିନ୍ତକ
କାହିଁ କେତେ ଦୂରେ,
କେଉଁ ପୁଣ୍ୟ ଧାମେ ଥାଇ
ବିତରି ବୁଲିଛ ତୁମ ଅକୁଣ୍ଠ ଆଶିଷ ?
ପୂଜ୍ୟତମ ହେ ପ୍ରିୟର ! ହେ ନମସ୍ୟ,
ଘେନ ମୋ ପ୍ରଣତି, ଆଜିର ଓ ସେଦିନର ।
ଜୀବନେ କି କେବେ ଦିନେ ପାରି ନି ନିବେଦି
ଅଧମ ଜନର ସ୍ୱରୋଚିତ
ଭକ୍ତିନମ୍ର ପୂଜନ ନୈବେଦ୍ୟ ! ରହିଯାଏ ଅନର୍ପିତ ଚିର ।
ମାୟାମୟ ସଂସାରର ଜୀବନ ଜଞ୍ଜାଳେ
ଲିପ୍ତ ଥିଲ ତୁମେ ଜାଣେ, ଜଣାକଥା
ଆନ ସଂସାରୀ ପ୍ରାୟେକ ।
କିନ୍ତୁ କିଏ ଜାଣେ
ତୁମେ ଥିଲ ଅସଂସାରୀ,
ଯଥା ପଙ୍କୋଦ୍ଭବ ପଦ୍ମ
ବିଷୟା ବାସନା ପାରି ନାହିଁ ଧରିରଖି
ଆସକ୍ତିର ବିଷମ ଧନ୍ଦାରେ
ଦିନେ ହେଲେ ଧନ୍ଦି ହେବାକୁ ତୁମକୁ ।
ଏମିତି ସନ୍ୟାସୀ ଥିଲ ତୁମେ ଅନାମୋଦୀ,
ଏ ଗହନ ବନେ, ଅପନ୍ତରା ଭୂମେ
ନାହିଁ ହୋଇ ଦିନେ
କଣ୍ଟକ କ୍ଷୋଭିତ ତୁମ ଅନାସକ୍ତି ଯୋଗ ।
ଜାଣିଥିଲି ନିର୍ଶ୍ଚେ ସୂକ୍ଷ୍ମଦର୍ଶୀ ପରି
ତରିବାର ସୂକ୍ଷ୍ମ ପନ୍ଥା । ଏ ଭବ ସାଗରୁଁ ।
ତରଙ୍ଗାକୁଳିତ ପ୍ରଳୟ ସଞ୍ଚାରେ
କ୍ଲାନ୍ତ ମାନବର
କାହିଁ ନିର୍ବିଶଙ୍କ ପରିତ୍ରାଣ ତରୀ ।
ସେଇ ମାୟାଜାଲ ନିର୍ବିଘ୍ନେ ଏଡାଇ

ତେଣୁ ପରା ନିଦେ଼ର୍ଶିଲ ମୋତେ
ଅନ୍ୟ ପ୍ରୟୋଜନେ ।
ନ ଥାଏଁ ମୁଁ ପାଶେ ବୋଲି
ତୁମ ସେଇ ଅନ୍ତିମ ବେଳାରେ ।
ଏତେ ସନ୍ନିକଟ ?
ତଥାପିତ ମାୟା, ମାୟା ସବୁଦିନେ,
ମାୟାର ବି– ସ୍ନେହ ଶ୍ରଦ୍ଧାର ବି – ମୋହ ଆକର୍ଷଣ ।
ଶୁଣିଛି ମୁଁ–
ଆଗ୍ରହ ଔତ୍ସୁକ୍ୟେ
ଚାହିଁ ବସିଥିଲ ମୋର ଫେରନ୍ତା ପଥକୁ ।
ତୃଷାକୁଳ କଣ୍ଠେ
ଅବୋଧ ଚାତକ ଚାହିଁ ରହିଥିଲା ପରି
ଜଳହୀନ ମେଘେ ।
ଆକୁଳ ପ୍ରତୀକ୍ଷା ତବ  କିଏ ଜାଣିଥିଲ
ହେବ ଏମିତି ନିଷ୍ଫଳା, ଆଉ
ମୁହିଁ ହେବି ଅପରାଧୀ ।
କେମିତି କହିବି କ୍ଷମା ଦେଇ ଗଲ ବୋଲି
ମୁଁ ତ ଆସିଲିନି;
ତୁମେ ମୁଦି ଦେଲ ବେନି ଆଖି;
ଅନନ୍ତ ଶୟନେ ନୈରାଶ୍ୟ ହାସିତ
ଓଷ୍ଠାଧର ପୁଟେ ଦେଖି ପାରିଲ ନି କିବା ଥିଲା ଲେଖା ।
କି ମାଗିବ ମୋତେ ତୁମେ
ଅବା କି ନେବାର ଥିଲା ମୋତେ ତୁମ,
ଦେବାଶିଷ ? ସବୁ ରହିଲା ଅକୁହା ।
ଜନ୍ମ ଜନ୍ମାନ୍ତର ଲାଗି, ସବୁଦିନ,
ରହିଲା ଅକୁହା, ଅଣ ଆବିଷ୍କୃତ
ବିସ୍ମୃତିର ଅତଳ ପାତାଳ ଗର୍ଭ-ଗର୍ଭାନ୍ତରେ ।

ସେ ଦିନ ତ ଗଲା;
ଛିନ୍ନ ହେଲା ଏକ ଜୀବନର ସୂତ୍ର
ସୂକ୍ଷ୍ମରୁ ସୂକ୍ଷ୍ମାତୀତ, ଅବାଙ୍ମାନସଗୋଚର
ଆଉ ମୁଁ ରହିଲି ଏଇ ଧରଣୀ କାମୁଡ଼ି;
ଚଉଦିଗୁଁ ଭ୍ରଷ୍ଟ ଲକ୍ଷ୍ୟ
ହୁଡ଼ୁଥିଲେ ପଥ ଅନ୍ଧ ପରି
ରଖିଗଲ ନାହିଁ ଜଣେ କାହାରିକି
ହାତ ଧରି କଢ଼ାଇ ନେବାକୁ
ଦିଗହରା ଦୁସ୍ତର ତିମିରେ ।
ନିର୍ଦ୍ଦେ ଭାଗ୍ୟ !
ନିନ୍ଦି ବା କି ହେବ
ସେ ତ ଭବିତବ୍ୟ ଲିପି ।
ଯହିଁ ଯାଅ, ଯହିଁ ଥାଅ,
ବଳେ ନା କି ମତି, ଜାଗେନା କି ସ୍ପୃହା
ହେ ପରମ ଯୋଗୀ ! ଚିର ବୈରାଗ୍ୟ ସାଧକ
ଦେଖିବାର ଜାଣିବାର ଲାଗି
କେମିତି ମୋ ଯାଏ ଦିନମାନ,
ଅବା ସବୁ ତୁମ ଆଶ୍ରିତ ଜନଙ୍କ
ସଭିଏଁ ଯେ ଚାହିଁ ବସି ରହି ଥାଉଁ
ଅଯାଚିତ, ଅକୁଣ୍ଠିତ, ପ୍ରବୀଣ ହାତର
ତୁମ ପ୍ରଶିକ୍ଷଣା ।

■■

॥ ୧୪ ॥

## ଇନ୍ଦୁ ବଧୂଷୁ

ଖୋଜି ବୁଲେଁ–
ଏଇ ଦୀପ୍ତିମ୍ଳାନ ଦିନେ
କେଉଁ ତୁମ ହାସ୍ୟୋଚ୍ଛଳ ପରିଚିତି
ପ୍ରଥମ ପ୍ରଭାତେ

ଆଦ୍ୟ ଅରୁଣିମା ପରି
କରି ରଖିଥିଲା ମୋତେ
ଆବେଶ ବିଭୋର ମଧୁରିମା ମୋହେ ।
ଆଶା ନିରାଶାର ତିକ୍ତ ତଣ୍ଡୁଳିତ ଉଦାସୀ ଜୀବନେ,
ନେତ୍ର ଅଗୋଚରୁଁ ସୋମଫୁଲ
ବାସ ବିତରିଲା ପରି, କଲ୍ୟାଣୀ ଗୋ,
ନିରାନନ୍ଦେ ମମ ଗୃହାଙ୍ଗନେ ଅଲକ୍ଷିତେ
ଭରି ଦେଇ ଯାଇଥିଲ ଯେ ଆନନ୍ଦ ସ୍ରୋତ,
ସେତ କେବେ ନୁହେ ଭୁଲିବାର;-
ସ୍ୱର୍ଣ୍ଣ ବର୍ଣ୍ଣେ ରହିଛି ଯା ଲେଖା
ଜାତିସ୍ମର ଅଲିଖିତ ଇତିହାସ ଅଙ୍କେ ।
ତୁମେ ଥିଲ ପରା ଏକ ସରଳା ବଧୂର
ଅନ୍ୟୋନ୍ୟସଙ୍ଗିନୀ,
ବେନି ଦେହେ ସଦା ଏକ ପ୍ରାଣ,
ଏକ ଏକାନ୍ତି ଜୀମନା;
ନ ଥିଲ ଏକୋଦରା,
ଥିଲ ପ୍ରୀତି ପ୍ରଣୟିନୀ ଏକ ଆରେକର,
ଅଭିନ୍ନହୃଦୟା ।
ଦେଖି ନାହିଁ, ତଥାପି ଦେଖିଛି,
ଆଜି ବି ଦେଖୁଛି ବୋଲି ମନେ ହୁଏ,
ସେଇ ମୋର ପରମ ପ୍ରତ୍ୟୟ ।
ତୁମ ବେନି ବାନ୍ଧବୀର
ଶୟନ, ଭୋଜନ, ସ୍ନାନ, ଅବା ସଙ୍ଗ ସଞ୍ଚରଣ,
ସବୁଥିଲା ତୁମ ପୂର୍ବାର୍ଜିତ ବିଧିଲିପି, କେତେ ମଧୁମୟ ।
ଆପଣାକୁ ଆନଠେଇଁ ଢ଼ାଳି
ହଜାଇ ଦେବାରେ ଆପଣାରେ ଯଥା କ୍ଷୀର ନୀର ।
ଥିଲା ଭାବିବାର, ତଥାପି ଭାବି ନି
କେମିତି ଏ ସଙ୍ଗ ସୌଖ୍ୟ ଅନୁରାଗ-ପାଣି ଗଳିବାର
ଯଦି ନାହିଁ ଥିଲା ବାଟ—

ସେ ଉଜିବ ଦିନେ କେବେ ସାଙ୍ଗ,
ଏମିତି ସହସା, ଏତେ ଅତର୍କିତେ ।
କେ ନ ଜାଣେ ତୁମେ ଦିହେଁ
ଥିଲ ସମଗାତ୍ରୀ, ଏକ ବୃନ୍ତେ ଫୁଟା ଦୁଇଟି କମଳ ।
ତେବେ ଗୋ କେମିତି ସେଇ ଶ୍ରଦ୍ଧା ସୋହାଗିନୀ
ଯାଏ ତୁମ ଛାଡ଼ି ଅଶଂସ ବାପ୍ତ
ବଳିଲା କିମିତି ଅବା ମତି ?
ଅଟଳା ଏ ଭାବପ୍ରୀତି ମାତ୍ର ଏକଇ ରାତିକେ
ହେବ ଅବସାନ– କିଏ ଥିଲା ଜାଣି
ପକ୍ୱଶାଳୀ ସ୍ୱୈରା ରାତିକର ସେଇ ଅପଘାତେ ?
ଲବଣୀ କୋମଳ ତୁମ
ହୃଦୟ ମନ୍ଦିର ଅୟି ମୌନାବତୀ,
ହେଲା ନାହିଁ କିପରି ବା ଚୂର୍ଣ୍ଣ, ଅବା ତରଳିତ ।
କେଉଁ ଦୁଃଖେ ଥିଲ ଅଭିଭୂତ,
ସେ ବେଳର ସେଇ
ତୁମ ଶୋକାର୍ତ୍ତ ମୁହୂର୍ତ୍ତେ ଅଶ୍ରୁଢ଼ାଳି
ନିମିଷକ ଲାଗି ହେଲେ, କେଉଁପରି
କରେଁ ମୁଁ ତର୍ପଣ ଦୁଃଖିନୀର, ତୁମ ପ୍ରିୟ ବାନ୍ଧବୀର,–
କାହିଁ କହିଲ ତ ନାହିଁ ।
ହଉ ଆଜି କୁହ କପଟ ନ ରଖି
ସବୁ ତୁମ ଦୁହିଁଙ୍କର ଗୋପନ ବାରତା
କେତେ ଏକ ଆନେକର
କହିଥିଲା, ଅବା ଶୁଣିଥିଲା କଥା, ଯେତେ କାନେ କାନେ ତୁମ ।
ଦିନ ଯାଏ ବିତି ନିଶବଦେ,
ସୁନାର ସଂସାର ଭାଙ୍ଗି ଯେ ଯାଇଛି
ଅତି ଅବିଶୋର ହେଉ ପଛେ
ବସେ ଯିବାକୁ ପାଶୋର । ଏ ଦୁର୍ଦ୍ଦିନେ
ତୁମେ ଅରକ୍ଷଜନର,
ଥାଇ ପଛେ ପଛେ ଅନ୍ତରାକୁ
ଦେବ ବାଳା ପରି

କେତେ କରିନା ଆୟସ
ଗଢ଼ାଇବ ମୋର ଭାଙ୍ଗିଗଲା ପୁରୁଣା ସଂସାର,
ସେଇ ବାହୁ ଛାୟା ତଳେ ଆଉ ସୁଦ୍ଧା
ମୁହିଁ ଯେହ୍ନେ ଥାଏଁ ପରେ ଅନାଶ୍ରିତ, ଏଇତ ଆଶ୍ରିତ ।
ମୁଁ ତ କେବେ ମାଗିଥିଲି ନାହିଁ
ତୁମ ପରିଚୟ; ତୁମେ କେବେ ଆସି
ଅଯାଚିତେ ଦେଇଗଲ ଯେଉଁ ପରିଚୟ
ସେ ତ ଖାଲି ପରିଚିତି ନୁହେ,
ସେଠି ଥିଲା କନ୍ୟକା ବଧୂର ସଂରକ୍ଷଣା ଭାର
ନା, ନା, ମୁଗ୍ଧା ଭଗିନୀର
ସଂରକ୍ଷଣା ରଖି ନିବନ୍ଧନ ।
ଜାଣିଥିଲ କି ଗୋ ଘୁଣାକ୍ଷରେ ଦିନେ
ସେଇ ହେବ ତୁମ ସେଇ ଗତାସୁ ସହୀର
ସ୍ମୃତି ପୂଜା ପୀଠ ।
ଜାହ୍ନବୀ ଯମୁନା ଏ ଯେ ଯୁଗଳ ପ୍ରବାହେ
ହସିଥିଲା ବେନି କୂଳ, ହସିଥିଲା ଧରା
ଶାଳିଧାନ୍ୟ ଶସ୍ୟ ମାଳେ ମାଳେ ।
ପୁଣି କାଳେ ଏକାଙ୍ଗିନୀ ଏକାଧାରେ
ଚଳାଇଲ ତୁମେ
ତୁମ ଏକଚକ୍ର ରଥ– ନା ସେ ନିଶ୍ଚକ୍ର ତରଣୀ,
ହସି ଖେଳି ଭବ ଜଳାର୍ଣ୍ଣବେ,
ଆଜିକାର ତୀର୍ଥଘାଟେ
ଦରଦୀ ହିଆର ସେ ତ ପୁଣ୍ୟ ସ୍ମରଣିକା,
ତୁମେ ତହିଁ
ଜାଗରୂକା, ଦିଗ ନିରୂପିକା ।
ଜନନୀଠୁଁ ବଳି ତୁମେ
ପ୍ରସାରି ବାଢ଼ିଛ ଯେତେ ଜନନୀର ସ୍ନେହ ସୁଧାଞ୍ଜଳି
ମାତୃହରା ଶୋକାତୁର ଶିରେ
ଆତ୍ମପର ନିର୍ବିଶେଷେ,

ଏତେ ସ୍ନେହ, ପୟସ୍ୱିନୀ ମମତାର
ଗୁପ୍ତ ଫଲଗୁ ଧାର,
କାର କହ କେଉଁ ମାତୃକାର
ବକ୍ଷ ଭରି ପଡ଼ିଛି ଉଚ୍ଛୁଳି ?
କିଏ କାହିଁ କେତେ ଦୂରେ, ସହସ୍ର ଯୋଜନାନ୍ତରେ,
ନଦୀ, ବନ ଗିରି ଶୃଙ୍ଗ ଲଂଘି ଅବହେଳେ
ବଢାଇ ଦେଇଛି
ଅସର କରୁଣାବାରି ମାତୃ ହୃଦୟର ?
କି ଦେଇ ପାରିବେ ଶୁଝି ଜନ୍ମ ଜନ୍ମାନ୍ତରେ
ଧୂଳି ଧୂସରିତ ସେଇ ଅବୋଧ ଶିଶୁଏ ।
ଦେବୀ ତୁମେ,
ତୁମେ ଭଗ୍ନୀ ସହୋଦର, ତୁମେ କୂଳବଧୂ, ତୁମେ ବି ଜନନୀ,
ହିଂସା ଦ୍ୱେଷ କଲୁଷିତ ଏଇ ମର୍ତ୍ତ୍ୟଭୂମେ
ତୁମେ ସ୍ୱର୍ଗାଦପି ଗରୀୟସୀ ।
ଗାଉଥିବି, ବସି ଭାବେଁ ତୁମରି ପ୍ରଶସ୍ତି ।
କିନ୍ତୁ ହାୟ, ଚଳାପଥ କ୍ଳାନ୍ତି ମୋ ଭୁଲିଯାଏଁ ସବୁ
ବାଷ୍ପାକୁଳ– କଣ୍ଠତଟେ ହଜିଯାଏ ଭାଷା ।
ଯାଉ, ତୁମେ ତ ସେ ସ୍ତବ ପ୍ରଶଂସାର
କେତେ ଊର୍ଦ୍ଧ୍ୱେ
ତୁମେ ଇ ଜାଣନା ।



॥ ୧୫ ॥

## କର୍ଣ୍ଣ

ହାତେ କରି ଆଣିଥିଲ ମୃତ୍ୟୁହୀନ ପ୍ରାଣ
ମରଣର ହାତେ ତାହା କରିଗଲ ଦାନ–
କବୀନ୍ଦ୍ରଙ୍କ ଏ ଭାରତୀ
କେବେ କେଉଁ ଦୁଃଖେ ଶୁଣିଥିଲା
    ଅଭାଗୀ ଧରତୀ,
ଅବା ଯେତେ ଭାବେ ମନେ ମନେ

ସେ ଦିନ ବି ଶୁଣିଥାନ୍ତି ସେ ବିଳାପ ତୁମରି ମରଣେ ।
　　ହେ ରାଧେୟ !
ଦାତା ପଣେ ସିନା ତୁମ ଖ୍ୟାତି ରଥେ
ଉଡିଲା କେତନ ଧରାଧୂଳି ଦେହୁଁ ସ୍ୱର୍ଲୋକ ପର୍ଯ୍ୟନ୍ତେ,
ସେଥେ ନାକି ଲାଗିଥାନ୍ତା ମ୍ଳାନି
ଲେଖା ଥିଲେ ସେଇ ଗ୍ରନ୍ଥେ ତୁମ ଇଚ୍ଛାଗତିର କାହାଣୀ ।
କେବେ କେଉଁ ଅନ୍ତଃପୁର କେଳି କୁତୂହଳେ
ଘଟିଥିଲା ମୁହୂର୍ତ୍ତର ଯେତିକ ସ୍ଖଳନ ଏଇ ଧରା ତଳେ,
ଜନନୀର ବକ୍ଷୁ ଝରି ସ୍ନେହ-ସୁଧାମୃତ
ପାରିଲା କି ଧୋଇ ତାହା ମାତୃକୋଳେ ତୁମେ ତ ଜାଣନା
ତୁମେ ଥିଲ ଜୀବନ୍ତ ନା ମୃତ ।
କିନ୍ତୁ ଧରଣୀରୁ ବଳି ଗରୀୟସୀ
ଥିଲେ ଏ ଜନନୀ ସୂତ କୁଳବଧୂ ସୁଚେତସୀ ।
ସେ ବି ପାରିନି ଛପାଇ ସେ ଦିନର କ୍ଷୁଦ୍ର ଏଇ ବହ୍ନିକଣ
ଲୁଚି ଥିଲେ ଶିଳାଖଣ୍ଡ ଦେହେ କରିପାରେ ବାଡବ ସୃଜନ ।
　　ସେ ଦିନର ଶିଶୁ ଚିତ୍ତ,
ସହଜାତ ପୌରୁଷର ଗୋପାୟିତ ଅଙ୍ଗୁଳି ଇଙ୍ଗିତ,
ଶିଖିଥିଲା ନା କି ଘୃଣା ଭରେ ପାଦେ ଠେଲିବାକୁ
　　ଅଭିଜାତ ଜାତ ଅହମିକା ।
ଅନାଗତ ଜୀବନର ପୂର୍ବ ସ୍ମରଣିକା ।
　　ସ୍ୱଭାବେ ତ ଥିଲ ତୁମେ ଅସହିଷ୍ଣୁ
　　ବାକ୍ୟେ ଅବା ମନେ,
ଅଥବା ଅନ୍ତରେ, ସର୍ବଂସହ ସଂହନନ
ଥିଲା କ୍ଷମ ଅପୂର୍ବ ସହନେ ।
ଦାନଧର୍ମେ, ଶୌର୍ଯ୍ୟ ବୀର୍ଯ୍ୟେ, ରୂପଗର୍ବେ
ଥିଲା ନାହିଁ କିଛି କାହାଠାରୁ ଊଣା ଲେଶେ ମାତ୍ର; ସେଇ ଦମ୍ଭେ
ପାରିଥିଲ ଯଦି ତୁଚ୍ଛ କରି ଅପର ଜନର
ରାଜକୁଳ ଜନ୍ମା ରାଜ ଅଭିମାନ, ସେଇ ତ ତୁମର
ହିମଗିରି ଶୃଙ୍ଗ ହୁଁ ଉନ୍ନତ ବିରାଟ ବଡ଼ିମା, ଆନଠେଇଁ

ଉପୁଜାଉ ଥିଲା ତୀବ୍ର ଦ୍ୱେଷାନଳ; – ସେହି
ଅହେତୁକୀ ଜ୍ୱଳନ ଜ୍ୱାଳାରେ
ତୁମେ ବି ତ ଗୁଣୀ ! ଟାଣି ହୋଇ
କରୁଥିଲ ଦଗ୍ଧ ଆପଣାକୁ କେଉଁ ଅବିଚାରେ ?
ନିଠୁରା ନିୟତି,
ସବୁଦିନେ କଠୋରା ସେ
ନିଜ ବଶାଧୀନ କରି ରଖିବାକୁ ଚାହୁଁଥିଲେ ପାଶେ
ସେ ହସଇ ଅଲକ୍ଷିତେ କ୍ରୂର ଅଟ୍ଟହାସ;
ନ ତୁ କରିଥାଆନ୍ତା କି ଭୂମିତଳ ଗ୍ରାସ
ତୁମରି ସେ ଜୟରଥ ଚକ୍ର ଅନ୍ତିମ ବେଳାରେ;
କିଏ କରେ ଜୟ ଶଙ୍ଖଧ୍ୱନି, କିଏ ମରେ ହାହାକାରେ ।
ପୁଣି ତୁମ ସମର ସାରଥି
ଥାଇ ସୁଦ୍ଧା ଶଲ୍ୟ ମଦ୍ର ଦେଶ ମହୀପତି
କା ସାହସେ ବଳାନ୍ତେ ମତିକି
ନିବର୍ତ୍ତାଇବାରେ ରଣରଙ୍ଗୁଁ ରଣରତ ଦୁର୍ଜୟ ରଥୀକି ?
କେବେ ଦିନେ ତରୁଣ ବୟସେ,
ତୁମ ଜାନୁ ଉପାଧାନେ ନିଦ୍ରାସୁଖାଳସେ
ରଚିଥିଲେ ସୁପ୍ତି ଗୁରୁଗୌରବ ଭାର୍ଗବ,
କାହିଁଥିଲା ବଜ୍ରକୀଟ, ଦଂଶନ ଯନ୍ତ୍ରଣା ସହନେ ସମ୍ଭବ
ହେଲା ଯଦି ଧୈର୍ଯ୍ୟ ଶାନ୍ତ ତୁମ ସନ୍ନିଧାନେ,
ସେ ବି ହେଲା ଅଭିଶାପ ତବ, ଅବିଧି ବିଧାନେ,
କଳୁଷିତ କଲ ବୋଲି ଶ୍ରୀଗୁରୁଙ୍କ ପୁଣ୍ୟପୂତ ଅଙ୍ଗ
ତୁମ ଶୋଣିତ କ୍ଷରଣେ, ଏ ବି ସେଇ ନିୟତିର କୁଟିଳ ଭ୍ରୂଭଙ୍ଗ ।
ମରଣ ବିପାକ କାଳେ ଘଟାଏ ସେ ସବୁ ଅଘଟନ,
ଶାପ ଭାରେ ଜ୍ଞାନବୁଦ୍ଧି ବିଲୋପନ
ଶବ୍ଦଭେଦୀ ମହା ମହା ଶର ନିକ୍ଷେପଣ,
(କାହାର ସେ ତ୍ରୁଟି ?) ତାହାର ବି ପୂର୍ଣ୍ଣ ବିସ୍ମରଣ ।
ସହଜାତ ମଣିମୟ କବଚ କୁଣ୍ଡଳ–
ବୀରର ଯା ଜୀବନ ସର୍ବସ୍ୱ ଦୁର୍ଲ୍ଲଭ ସମ୍ବଳ

ତୁମରେ ଯେ କରି ରଖିଥିଲା ଜାତି ଜଗଜ୍ଜୟୀ,
ଅଜେୟ ଯେସନ ସ୍ୱୟଂ କାଳାନ୍ତକ
  ନ ପାରିଲେ ସହି
ତାହା ନିଜେ ଦେବ-ରାଜ, ଦେବଧାମେ—
ଇତରେ କଥା ନାହିଁ— କି କହିବା କାହା' ବିଧି ବାମେ;
କ୍ଷୁଣ୍ଣ କରି କ୍ଷାତ୍ର ତେଜଭାନୁ କର୍ଣ୍ଣଙ୍କର
ବଢ଼ାଇଲେ ଯା'ର ସେକି ତେବେ ଦେବାଂଶୀ ପାର୍ଥର ?
ନ ମାନିଲେ ହେଉ ପଛେ ଯେତେ ଅପଖ୍ୟାତି
ଛଳ କଉଶଳ ଦେବ କୂଟ ପାତି
ତୁମ ଜୟବାଞ୍ଛା ସିନା କରି ଗଲେ ଖର୍ବ,
ବଢ଼ିଲା ଅଧିକତର ତୁମ ଶୌର୍ଯ୍ୟ ପୌରୁଷର ଗର୍ବ।
ମନେ ପଡ଼େ ଏକ ସୁପ୍ତା ନିଶିଥିନୀ;
ରହସ୍ୟର ଘନମାୟାଛନ୍ନ ସ୍ୱପ୍ନ ଭାଙ୍ଗି ବି ଭାଙ୍ଗି ନି;
ଅଭିଥାଡୀ ଜନନୀର ଅନୁତାପ ଦଗ୍ଧା
  ପ୍ରମାଦ କାହାଣୀ,
ଗୁନ୍ଥାଥିଲା ତହି ଅଲୋଡ଼ା ଶିଶୁର ଛିନ୍ନ ସୂତ୍ର ବାଣୀ,
ଶୁଣୁଥିଲ ତୁମେ କୋପରୁଷ୍ଟ ବିସ୍ମୟ ଚକିତେ।
ମରଣ ହୁଁ ବଳି ଲଜ୍ଜା ଅପବାଦ ସଂକୁଚିତ ଚିତ୍ତେ
ମାତୃ ହୃଦୟର ଅବାଞ୍ଛିତ ଆକୁଳ ଯାଚନା—
ଜ୍ୱାଳାମୟୀ ଅଙ୍ଗନିଭା ନିର୍ଦ୍ଦୟ କାମନା
''ଫେରି ଚାଲ ପୁତ୍ର ତୋର ଆପଣା ନିଳୟେ
ପଞ୍ଚ ପାଣ୍ଡବ ଅଗ୍ରଜ ଭୁଞ୍ଜ ନିରାମୟେ
ଅସପତ୍ନ ସସାଗରା ଧରା....।''
କେଜାଣି ବା ସେ ରାତ୍ରିର ଅନୁରାଗ କେତେ ଆତ୍ମହରା,
କେତେ ବା ଆବିଷ୍ଟ, କରି ନ ଥିବ ତୁମକୁ, ଆହେ ମତିମନ୍ତ,
ଛାଡ଼ି ସର୍ବ ପ୍ରଲୋଭନ, ମାଆର ସେ ପାଶୋରା ଉଦନ୍ତ
ଉଭରିଲ କୋମଳ ମଧୁର ପ୍ରବୋଧନା ବାଣୀ।
''ଯାଅ ମାତ, ଫେରିଯାଅ କହିବାରେ
  ହୃଦ ହୁଏ ହାଣି,

ଯାଅ ଫେରି ମାଗୋ ! ଦୁହିଁଙ୍କରୁ ଜଣେ
   କର୍ଣ୍ଣ ମରୁ, ଅବା ମରୁ ପାର୍ଥ,
ତୁମେ ରହିଥିବ ପଞ୍ଚ ପାଣ୍ଡବ ଜନନୀ ଏହାହିଁ ଯଥାର୍ଥ ।"
କେତେ କାହିଁ କେତେ ମନ୍ତ୍ରେ, କେତେ ଯେ ଲାଞ୍ଛନା,
ସହି ନାହିଁ ପୁଣି ଅବା କେତେ ନିର୍ଯ୍ୟାତନା—
ଦେବ ମାନବର କିମ୍ବା ଗୁରୁ ବ୍ରାହ୍ମଣର
ଅବା ମାନବର ଅନାୟର ଦୈବୀ ଘଟଣାର-
ଲିଭାଇଛ ଦେହ ମନେ, କରି ନା ନିଉନ
ମର ଲୋକେ ଶୌର୍ଯ୍ୟଧନ
   ଅବା ତାର ସାଧନ ନୈପୁଣ୍ୟ ।



॥ ୧୬ ॥

## କରଞ୍ଜିଆ *

କରଞ୍ଜିଆ, ଆଲୋ କବି ପ୍ରେୟସୀ,
ଦେବାତ୍ମନ ଦେବନଦୀ କଣ୍ଠେ ଚିର ଶ୍ରେୟସୀ,
ଦୂର୍ବାଦଳେ, ଶସ୍ୟଗୁଚ୍ଛେ ଦିନୁଁ ଦିନେ ହରିତ
କଙ୍କରିଲ ବୋଲିବାର ମଣେ ମୁଁ ଅବିହିତା
କରଞ୍ଜ ମଞ୍ଜୁଳ ଘଞ୍ଚ ବନରାଜି- ସୁନୀଳା
ନମସ୍ୟ ସେ କରଞ୍ଜିଆ ନାମ ବିହିଲା ।
ଠାବେ ଠାବେ ଆମ୍ରକୁଞ୍ଜ ଭରତିଆ କୂଜିତ
ନଦୀ ଗ୍ରାମେ ଉପକଣ୍ଠେ ଶୀତଛାୟା ସେବିତ
ହେମାଙ୍ଗିନୀ ଜନପଦ-ବଧୂ ଅଙ୍ଗ ମାର୍ଜନା,
ସରେ ନା, ତୁଟେ ନା ଯହିଁ ଟଟବଟ ଅର୍ଚ୍ଚନା,
ଭାସିଗଲେ ଯାଉପଛେ ଭୁଲା ଜଳକଳସୀ

* କବି ମାୟାଧରଙ୍କ ଭାବୀପତ୍ନୀ ହେମଲତାଙ୍କ ବାଲ୍ୟକାଳ କଟିଥିଲା କରଞ୍ଜିଆରେ । ତୁହିଁକୁ କେନ୍ଦ୍ର କରି କବି ଏକାଧିକ କବିତା ଲେଖିଥିଲେ । ତାହାହିଁ ଏ କବିତାର ଉପଜୀବ୍ୟ କହିଲେ ଅତ୍ୟୁକ୍ତି ହେବନି । କବିଙ୍କ 'କଙ୍କରିଲ କରଞ୍ଜିଆ' ଅବଶ୍ୟ ଠିକ୍ ହେଲାପରି ମନେ ହେଉନି ।

ରୂପସୀଙ୍କ ଅବିରୋଧ ଏକାନ୍ତ ଏ ସରସୀ
ନିବିଡ ଆଶ୍ଳେଷେ ଛନ୍ଦା ସହକାର କାନନ
ସଂକ୍ରମି କରିଛି ବେଢ଼ା ତୁଠ ଯାଏ ରଚନ ।
ପଞ୍ଚାପ୍ସର ସବୁଁ ବଳି କେତେ ପୁଣ୍ୟ ପୁଷ୍କର
ଧରିଛି ତୋ ଅଙ୍ଗେ ତୀର୍ଥ ପୁଣ୍ୟକାମୀ ଜନର ।
ବସନ୍ତ ବିଳାସ ଏଥି ନାହିଁ ଯାର ବିରତି
ପ୍ରିୟ ଆଲିଙ୍ଗନ ଦିଏ ଉଲ୍ଲସାଇ ଧରତୀ
ମନେ ପଡ଼ିଯାଏ ମୋର ଶୈଶବର କାହାଣୀ
ଚୂତ ବନ ଶାଖେ ଶାଖେ କାହିଁ କେତେ ଉଡାଣି,
ଚିତ୍ତ ଆକୁଳିତ କରା କୁହୁ କଣ୍ଠ ପିକର
ଅନୁଚିକୀର୍ଷା ବାଉଳା ଶିଶୁଏ ନିରନ୍ତର
ଖୋଜିବୁଲୁଁ, ନାହିଁ କ୍ଳାନ୍ତି, ଅବସାଦ ମାତ୍ରକେ
ଅନ୍ତରେ ଯା କୁହୁଧ୍ୱନି ନୀରବେ କି ଦିନକେ ।
ନିରଳସ ଜୀବନର କାହିଁ ଗଲା ସେଦିନ
କାହିଁ ବା ସେ ବିଭାଭାସ, ସବୁ ଦିଶେ ମଳିନ ।
ନୀଳିମାରେ ଏ ଯେ ଦିଶେ ନବ ନୀଳ ନୀରଦ
ଏ ଶିମିଳି ପାଳ ବୁଝେ କବି ହୃଦ ଦରଦ ।
ମହାକାଶ ଚୁମ୍ବି ଯାଏ କାହିଁ ସୀମାରେଖା ତା'
କେଉଁ ଗୁଣେ ଗୁଣୀ ତାକୁ କରି ନାହିଁ ବିଧାତା ।
ଆବୋରି ରଖିଛି ତୋତେ ଗିରି ଦୁର୍ଗ ସମାନ
କେତେ ଗିରି ନଦୀ ଝର ବଢ଼ାଇଛି ତା' ମାନ ।
ଘନ ଘନ ଚମକିଲେ ବିଜୁଳି ଯା ଶିଖରେ
ମଣି କିରୀଟିନୀ ଖ୍ୟାତି ଦିଗନ୍ତେ ତୋ ପ୍ରସରେ,
ତେଣୁ ନାକି କବିପ୍ରିୟା କରଞ୍ଜିଆ ତୁହି ଲୋ
ଆନ କିବା ଲୋଡ଼ା ଏତୋ ନୀଳ ଚକ୍ର ଶଇଳ ।
ଏଣେ ଦେଖୁଁ ନ ଦେଖୁଁଣୁ ଟାଣି ହୁଏ ତେଣିକି
କାଞ୍ଚନ, ଚମ୍ପା, ଅଶୋକ ସୁଶୋଭିତ ବେଣୀକି ।
ରୋମାଞ୍ଚ ଘେରିଲା ପ୍ରାୟ ନବନୀତ ଅଙ୍ଗକୁ
ଫୁଟିଲେ କଦମ୍ବ ବନେ କେ ଧରିବ ଦମ୍ଭକୁ ।

ଘରେ, ବନପ୍ରାନ୍ତେ, ପଥେ ଶିବ ପ୍ରିୟ ଶ୍ରୀଫଳ
ଆଶୁତୋଷ ତୋଷିବାରେ କାମୀଜନ ସମ୍ବଳ ।
ଅଦୂରେ ଲମ୍ବି ଯାଇଛି ଘନ ଶାଳ ବନାନୀ
ଶ୍ୟାମଳିମା ବିସ୍ତାର ତା କେତେ ଦୂର କେଜାଣି ।
ପଲ୍ଲବ ପାଟଳ ରୁଚି ପାଲଟିଲେ ଫଗୁଣେ
ଥୟ ଧରି କେ ରହିବ ଘର କୋଣେ ମଉନେ
କୁସୁମ ସମ୍ଭାରେ ବନେ ଶୁଭ୍ରାୟିତ ସୁଷମା
ଶରତର ପୌର୍ଣ୍ଣମାସୀ ହେଲେ ହେବ ଉପମା;
କ୍ଷୀର ସିନ୍ଧୁ ଊର୍ମିମାଳା ଫେନପୁଞ୍ଜେ ଧବଳା
ସଞ୍ଚରିଛି କାନନେ ବା ପୁଣ୍ୟରାଶି ନିର୍ମଳା ।
ମଳୟ ଗନ୍ଧ ବିହ୍ୱଳ ଭୁଲିଯାଏ କୁରଙ୍ଗ
ଆପଣା କସ୍ତୂରୀବାସ, ପ୍ରିୟାସଙ୍ଗ ପ୍ରସଙ୍ଗ ।
ସୁଖଭୋଳ ନରନାରୀ ହେଉ ପଛେ କ୍ଷଣିକ
ଦୋଳ ମହୋତ୍ସବ ସୁଖ, ସୁଖ ଆଶୁଁ ଅଧିକ ।
ସର୍ଜିଲା କେ ଫଗୁଖେଳ ମହୀ ହେଲା ଲୋହିତ
ଯମୁନା ଉଜାଣି ବହେ ତାଲୁ ରେ ତୋ ବୋଇତ ।
ଅତୀତର ଗୋପାଙ୍ଗନା ମାତି ଉଠେ ସଘନେ
ଚାଚେରୀ ଚର୍ଚ୍ଚା ବିଧାନେ ଏଇ ଲୀଳା ଅଙ୍ଗନେ ।
ଆଲୋ ଚିର ପରିଚିତା କହ ଦେଖି କହ ନି
ଅଜ୍ଞାତ ଗୁପତବାସ ଏତେ ଦିବା ରଜନୀ
କେଉଁ ସୁଖେ ସମ୍ଭବିଲା ? ଟେକି ଅବଗୁଣ୍ଠନ
କିଏ ସେ ଘଟାଇ ଦେଲା ପ୍ରିୟାମୁଖ ଦର୍ଶନ ?
ଦରଦୀ କବିର କରେ ଥିଲା ବୋଲି ଲେଖନୀ,
ରସାପ୍ଳୁତା କବିତାରେ ଭସାଇଲା ଅବନୀ
ଯେଣୁ ଏଇ ପଥଘାସେ କିଶୋରିକା ଚରଣେ
କେତେ ପଦ୍ମ ଫୁଟାଇ ନି ନବବଧୂ ବରଣେ ।
କବିବନ୍ଧୁ ହୃଦ ରକ୍ତେ ଯେ ରଚିଲା ଅଳତା
ମନୋରଥ ବାନ୍ଧି ନେଲା କୁନ୍ତଳର ଦୀର୍ଘତା ।

ଆଲୋ କବି ପ୍ରିୟା ତୁହି ପ୍ରିୟବତୀ ସେ ଦିନୁଁ
ପୁଣ୍ୟ ସ୍ମୃତି ତୀର୍ଥ ପୀଠ ନବୀନା ତୁ ନବୀନୁଁ ।



॥ ୧୭ ॥

## ବ୍ୟର୍ଥ - ବସନ୍ତ

ଅତୀତ ବସନ୍ତ, ଏକ ବ୍ୟର୍ଥ ସ୍ୱପ୍ନ,
କୁଳବତୀ ଆଶା ଦିଏ ଯେତେ ଶତ ଶତ
ଦୀପାଲୋକ ଜାଳି,
ନିଶିଖ ସେ ହଜିଯାଏ ନିରାଶାର ତପୋମୟ ବ୍ୟୋମେ ।
ସିକତିଳ ବେଳାଭୂମେ ଅନାଗତ ମହାଜନଙ୍କର
ପଦଚିହ୍ନ ଅନୁସରିବାର
ସେ ଦିନର ଅଭିଳାଷ- ଏକ ପରେ ଆଉ ଏକ—
ସାଗର ତରଙ୍ଗ ପରି ଧାଇଁ ଆସୁଥିଲେ,
ଜାଣେ ନା କିମିତି ସେ ବି ହୁଏ ନିମିଷେ ନିଶବ୍ଦ ।
ତଟପ୍ରାନ୍ତେ ଶିବା ଦେହେ ଅକାରଣେ ପିଟି ହେଲେ ଶିର
ଖୋଜି ମିଳେନା ପଦାଙ୍କ
ଯାଇ ଥାଏ ନିଭି କୂଳ ଭଙ୍ଗା ଢ଼େଉର ଧୂଆରେ
ଅଥବା ଏ ବାଲୁଚାରୀ କୃଷ୍ଣସାର ମୋହୀ
ଅବିଶ୍ରାନ୍ତ ଶିକର ସେବିତ ସାଗର ବାୟୁରେ ।
କିଏ ହୁଏ ଏଥି ଅଗ୍ରଦୂତ ?
କେଉଁ ଶୁକ୍ତି କେତେ ମୁକ୍ତାଧରେ,
କେଉଁ ବାରିଧର ଅକଳିତ ତଳେ—
ରହିଲେ ଅନାବିଷ୍କୃତ,
କିଏ ହୁଏ ସନ୍ତାପିତ ?
ବରୁଣ ଭଣ୍ଡାରେ କମଳିନୀଙ୍କର ଧନରାଶି
ସେ ତ ଦିନେ ବା ଅଦିନେ ଅକ୍ଷୟ, ଅବ୍ୟୟ ।
କାହିଁ କେ ସ୍ୱୈରାଚାରିଣୀ

ମୋତି ଫିଙ୍ଗି ଅତି ଅନାଦରେ
ମଣ୍ଡିବୁଲେ ଗୁଞ୍ଜମାଳେ ଆପଣା କବରୀ ।
କାଞ୍ଚନ ବି ମାଗି ବୁଲେ ତୁଳ
ପରିମାଣେ ତୀନା ସାଥେ; ଏଇ ତ ବିସ୍ମୟ,
କିଏ ସେ କହିବ କାହା ଲାଗି
କେଉଁ ଅର୍ବାଚୀନ
ଅନୁଭବେ ଏ ବିଷମ ବ୍ୟଥା ?
ମନୋରଥ ମୋର ମେଲିଯାଏ ଦିଗନ୍ତକୁ,
ଦେଖେଁ ମତ୍ସ୍ୟକନ୍ୟା ଏକାକିନୀ
ରଚେ ଜଳକ୍ରୀଡ଼ା,
ତରଙ୍ଗେ ତରଙ୍ଗେ, ପ୍ରତିଟି ଉଲ୍ଲାସେ,
ଢ଼ଳ ଢ଼ଳ ଢ଼ଳି ତନୁଲତା
ବିତରଇ ଶଙ୍ଖ ଶୁଭ୍ର କାନ୍ତି,
ଜଳାଦ୍ର କୁନ୍ତଳ ଦାମ
ରବି ରଶ୍ମି ଖୋଳି ଶୁଖାଇବା କାଳେ
ଊର୍ଦ୍ଧ୍ୱେ ଉଡ଼ି
ନୀଳାକାଶେ କରେ ନୀଳତର ।
ହାରେ ମୂଢ଼ !
ଏ ସ୍ୱପ୍ନ ବି ଯାଏ ଭାଙ୍ଗି
ଏକଇ ମୁହୂର୍ତ୍ତେ;
ଛିନ୍ନ ପାଲ ତରୀ ତୋର
ପରିତ୍ୟକ୍ତ ପରି ପଡ଼ି ରହେ କେ ପତାରେ, ଘୋର ପରିଭବେ,
ବସନ୍ତ ଯାଇଛି ଚାଲି...
ହେ ବସନ୍ତ ! ତୁମ ଅସ୍ଫୁଟ ଗୁଞ୍ଜନେ
ତୁମ ମଳୟ ମରୁତ ମୃଦୁମନ୍ଦ ଶିହରଣେ,
ଉଷା କନ୍ୟା ଜବାଧରେ,
ଅବା ଶତ ସ୍ୱର୍ଣ୍ଣରାଗେ ଝଳି ଉଠ ।
ବାରୁଣୀ କପୋଳେ,
କାହିଁ ରଖିଥାଅ ଏତେ ମଦିର ଆବେଶ,

କେତେ ଜାଗରଣ ନିଦ୍ରାଭ୍ରାନ୍ତି ଲେପି
କ୍ଲାନ୍ତି ଘେରା ନୟନେ ମୋ,
ଚଖାଅ କି ଅର୍ଥେ, ବନ୍ଧୁ,
ଦୀର୍ଘ ସୁପ୍ତି ସୁଖ ।
ନିଦ୍ରାଭଙ୍ଗେ ଦେଖେ ହାୟ ବିସ୍ମୟ ଚକିତେ
ତୁମେ କେତେ ଦୂର ପ୍ରତ୍ୟାଗତ ।
ନବମଲ୍ଲୀ ମଉଳିଛି,
ଉଡୁନାହିଁ ଉପବନେ ଚିତ୍ର ପ୍ରଜାପତି,
କେତେ ଦୁଃଖେ କୋକିଳାର ସ୍ୱରେ ନାହିଁ କଣ୍ଠ ।
ସ୍ୱପ୍ନ ପୁରେ ନାହିଁ ଯଦି ଆଉ ମେଳା ମହୋତ୍ସବ ।
ଲୋଡେ ନା ମୁଁ ଏ ବାସ୍ତବ
ଥାଉ ସୁପ୍ତି କୋଳେ ମୋର
ସ୍ୱପ୍ନିଳ ବିଭବ ।



॥ ୧୮ ॥

## ଚତୁର୍ଦ୍ଦଶୀ

ଆସ ତୁମେ ଏକାକିନୀ ଫେରିଯାଅ ପୁଣି ଏକାକିନୀ
ନିଃସଙ୍ଗ ଏ ଘାଟମାୟା ସତେ କି ନି ତୁମକୁ ଲାଗିନି
ତୁମେ ଆସ, ଫୁଟିଉଠେ କେତେ କେତେ ପଥେ ଶତଦଳ,
ପାଦର ଅଳତା ଦାଗେ ତୁଠ ଶିଳା ତରଳ, ଚଞ୍ଚଳ ।
ଛୋଟ ଛୋଟ ଲହରୀ ଏ କେତେମନ୍ତେ ଯାଏ ମାଙ୍ଗ ଭାଙ୍ଗି
ତୁମ୍ଭି ଯାନ୍ତି ସେ ଚରଣ ନିତି ନିତ୍ୟ ସ୍ପର୍ଶ ଅନୁରାଗୀ,
ଏକ ଯାଏ ଆନ ଆସେ, କେବେ କେହି ଭଜି ନି ବିଷାଦ,
ସଭିଙ୍କର ଏକ ଲକ୍ଷ୍ୟ ଚାଖିବାରେ ପାଦ ମଧୁ ସ୍ୱାଦ ।
ଆଲିଙ୍ଗନ ମାଗେ ତୁମ ଏ ସରସୀ ନିଜେ କୁତୁକିନୀ
ଆବକ୍ଷ ମଜ୍ଜନେ ପ୍ରୀତି ଲାଲିମାରେ ନାରୀଶ୍ୱର ଜିଣି ।
ଲାଜ ଭୟେ ସିନ୍ଦୂରିମ ସମୃଣାଳ ନଳିନୀ ସୁନ୍ଦରୀ

ଢ଼଼ଳି ପଡ଼େ ଅନାୟରେ ଥରି ଉଠେ ଏ ସଲିଳ ସରି ।
ଏତେ କ୍ଷୀଣଜୀବୀ ପ୍ରୀତି, ପ୍ରୀତି ତୃଷ୍ଣା କାହିଁ ତାର ସୀମା ?
ଥାଉ ସେ ଅପରିଚିତା, ବଢ଼ିଛି ତ ପାଠ ସୁନ୍ଦରିମା ।



॥ ୧୯ ॥

## ଚତୁର୍ଦ୍ଦଶୀ

(ସନେଟ୍)

ଖରସ୍ରୋତା କନ୍ୟା ତୋର ଅବାରିତ ଗତି
ଖଣ୍ଡ ଖଣ୍ଡ ଶିଳା ଶେଯେ ଚଞ୍ଚଳ, ଚପଳ
କାହିଁ ବା ପ୍ରସାରେ ତାର ଅବିଚଳ ମତି
କାଚ ଧାର ପରି ସ୍ୱଚ୍ଛ ଦିଶଇ ବିତଳ ।
ଜାଗର ଯାମିନୀ ଶେଷେ ସ୍ନାନରତା ଦିନେ
କୂଳ ଉଚ୍ଛୁଳାଇ ଥିଲା ହାସ୍ୟ କଳରୋଳେ
ସହଚରୀ କହେ ରୀତି ହେଲାଣି ତୋ ଭିନେ
ଓଟାରି ପଣନ୍ତ ମୋର ରଖିଲୁଣି କୋଳେ ।
ତୁଠେ ତା ନିଆଳୀ ଫୁଟେ, ମୃଦୁ ଗନ୍ଧାମୋଦ
ମୁରୁଛି ପାରେ ନା ମୁଗ୍ଧା ଜନପଦ ବଧୂ
କାନ୍ତଗତ ପ୍ରାଣେ ତାର ପରମ ପ୍ରବୋଧ
ହସିଦେଲେ ସଜନୀ ତା ମଣେ ପଦ୍ମମଧୁ
ଅନୁରାଗୀ ଋଷ୍ୟଶୃଙ୍ଗେ ବନଦେଶୁଁ ଅଣାଇବା ଲାଗି
ନଦୀଦେହେ ନ ସରୁଣୁ ଚରୀସଙ୍ଗ ଉଠେ ବର୍ଷା ଜାଗି ।



॥ ୨୦ ॥

## ଅଦିନର ଆମ୍ର

ରାଜେନ୍ଦ୍ର ଦୁଲଣୀ, କିଶୋର ବୟସୀ
ଏ ବୟସେ ଏତେ କୁଳ ଅହମିକା
ଅନ୍ତରୀକ୍ଷୁଁ ଅନ୍ତରୀକ୍ଷେ

ଉଡି ବୁଲୁଥିଲା, କି ସମ୍ଭ ଆଧାରିତା ଥିଲା
ଜାଣି ନ ଥିଲି କି ଦିନକର ଲାଗି
ପାଞ୍ଚାଳ ପ୍ରସାଦ ଚୂଳେ ଦ୍ରୁପଦ ରାଜାଙ୍କ ?
କେତେ ରଥଚକ୍ର ରାଜପଥେ
ପଦାତିକ ପଥିକର ପଦତଳେ
କେତେ ଧୂଳି ଦେହେ ଲୋଟି ପଡ଼େ,
କହିବାରେ ତାହା ନ ଥିଲା କି କେହି ପାଶେ ପାଶେ
ନର୍ମ ସହଚରୀ ଅବା ତତ୍ତ୍ୱ ଦରଶିକା ?
ସ୍ୱୟଂବର ସଭାତଳେ କାହା ଦର୍ପ ଫୁଲାଇବା ଲାଗି,
ଆଉ କାହା ନଭଶ୍ଚୁମ୍ବୀ ଦର୍ପର ଗୁମାନ
ସେଇ ସ୍ୱୟମ୍ବର ଖମ୍ବ ନିମ୍ନେ ଶିର ପିଟି
        ଘୋର ହଟହଟା
ହେବାର ମୂଢ଼ତା ଦେଖାଇବା ପାଇଁ ?
ରଖିଥିଲେ ପଣ ରାଜା ଅଶ୍ରୁତ, ଅପୂର୍ବ, ଅତି ଅସମ୍ଭାବ୍ୟ
ଶତ ରାଜା ଓ ରାଜନ୍ୟ ଶତ ଶତ ରାଜପୁତ୍ର
କିରୀଟ କୁଣ୍ଡଳେ, ମହାର୍ଘ ବାସ ଭୂଷଣେ
ରୂପ ମଦ ଝଲସାଇ ଆସିଥିଲେ
ଭାଗ୍ୟ ବଳୁଁ ବଡ କରି ଆପଣା ଦମ୍ଭକୁ ।
ଓହରି ଗଲେ ସେ ଏଇ ପଣ-ପରୀକ୍ଷା ପ୍ରୟାସୁଁ ।
ଶୌର୍ଯ୍ୟବନ୍ତ, ରୂପେ ଶୌର୍ଯ୍ୟେ ଜିଣି ନବଭାନୁ
ଆନ ଗର୍ବ ଅସହିଷ୍ଣୁ କର୍ଣ୍ଣ ନ ପାରିଲେ ସହି
ଅହେତୁକୀ ଅବମାନ;
ଆସନ୍ତେ ସେ ଲାଖ ବିନ୍ଧି ରଖାଇବେ
ବୀର କୁଳାଙ୍କୁର କୁଳେ ତେଜୋଦୀପ୍ତ ଖ୍ୟାତି
ପାଞ୍ଚାଳ ନନ୍ଦିନୀ, କାହିଁ ଥିଲା ତୁମ କଣ୍ଠ ତଟେ
ଅସ୍ଫୁଟ ଏ ତେଜୋମୟୀ ବାଣୀ
ସଭାଙ୍ଗନେ କୋଳାହଳ ଶମାଇ କ୍ଷଣିକେ
ଯାଦୁକରୀ ପ୍ରାୟ, ନିଃସ୍ୱରିଲା–
'ମୁଁ ରାଜତନୟା, ପାରିବି ନି ଅର୍ପି
ବରମାଲ୍ୟ ଅର୍ବାଚୀନ ସୂତପୁତ୍ର ଗଳେ ।'

ସ୍ତବ୍ଧ ମହାସିନ୍ଧୁ ତଟେ ତୁମ ଜୟ ଘୋଷ
ଘୂର୍ଣ୍ଣମାନ ସ୍ୱୟଂବର ଚକ୍ର ପ୍ରକଟିଲା ସିନା
ନିଷ୍କରୁଣ ସ୍ୱରେ, ତୁମେ ତ ବୁଝିଲ ନାହିଁ ବାଳା
କି ଦାରୁଣ ମର୍ମାନ୍ତିକା ଶେଳ ନେଇ
ତିଳ ତିଳ ବିଦାରିଣ କରିଗଲ ଏକ ନୁହେ
ସବୁ ତରୁଣଜନର ଜର୍ଜରିତ ହିଆ
ଆମରଣ ଭୋଗାଇଲ ଜ୍ୱାଳା
ବୃହୃକୀଟ ଦଂଶନରୁ ବଳି,
କେ କହିବ ମରଣାନ୍ତେ ଉପଶମ ତାର
ଘଟି ପାରିଛି କି ନାହିଁ ।
ଯାଉ, ସେ ତ ଗଲା ।
ତୁମେ ହେଲ ପଞ୍ଚ ପାଣ୍ଡବ ଗୃହିଣୀ ।
କୁରୁସଭା ତଳେ ଥାଉଁ ଗୁରୁ, ଗୁରୁଜନେ
ପାଣ୍ଡବ ବଧୂର ଅଙ୍ଗ ବିବସନ କାଳେ
ସୂତ କୁଳ ଜାତ ରାଧାନନ୍ଦର ଅଧରେବି ଥରେ
ଉଠିଲା କି ନାହିଁ ବିଦ୍ରୁପ କୋପିତ ଉପହାସ ରେଖା,
ସ୍ମରି ସେ କ୍ରୂର ପ୍ରତ୍ୟାଖ୍ୟାନ
ସେ ଦିନର କୁଳଗର୍ବିଣୀର, ଯିଏ ଆଜି
ପଞ୍ଚପତି ପୂଜ୍ୟା,
ପଞ୍ଚକନ୍ୟା ସନେ ଏକ ପ୍ରାତଃ ବରଣୀୟା ।

* * * * *

ବନବାସ ମହାକ୍ଲେଶ
କରୁ ଯେତେ ସନ୍ତାପିତ ପୁଷ୍ପ ସୁକୁମାର ଶ୍ରୀ ଅଙ୍ଗକୁ,
ଅବା ତା ତହୁଁ କୋମଳ ତୁମ ଅନ୍ତର ତଳକୁ-
ଦେଇଥିଲ ବାଡ଼ି ତୁମେ ବନେ; ତିମିରିତପ୍ରାୟ ନିର୍ଜନ ଅରଣ୍ୟେ,
ଏକାନ୍ତ ଅଲଭ୍ୟ ରାଜୋଚିତ ଚର୍ଯ୍ୟା ।
ସେତିକରେତ ପଞ୍ଚଭ୍ରାତା ଭୋଗୁଥିଲେ
ସ୍ୱର୍ଗାଦପି ବଳି ସୁଖସ୍ୱାଦ
ଘୋର ଅଗମ୍ୟ ବନସ୍ତେ ଗହନ କାନ୍ତାରେ ।

ତୁମ ଫୁଲ ଉପବନୁ ଦିନେ
ହସିଥିଲା ଅଦୃଶ୍ୟ ନିୟତି ।
ପାଇଥିଲ କି ନା, ନାହିଁ ତାର ଅଙ୍ଗୁଳି ଇଙ୍ଗିତ
ତୁମ ଉନ୍ମୁକ୍ତ କବରୀ ଭାରେ,
ରହିଥିଲା, ଯାହା ଅସଂହୃତ, କିଏ ଜାଣେ କେତେ ଦିନ ଯାଏ
ସୂଚାଇ ଦେବାକୁ ଦ୍ୱିତୀୟ ପାଣ୍ଡବ ପଣ ପ୍ରତିଶ୍ରୁତି ।
ବିଧି ବିଡ଼ମ୍ବନା, କେ କହେ କାହାକୁ ।
ନିଘଞ୍ଚ ସେ ମହାରଣ୍ୟେ,
ଅନଙ୍ଗୁଳି ସ୍ପର୍ଶ ଉଚ୍ଚ ଚୂତ ତରୁଶିଖେ,
ମୂର୍ତ୍ତିମନ୍ତ ପ୍ରଲୋଭନ ପରି,
ପକ୍ୱ କାନ୍ତି ରମ୍ୟ ମାତ୍ର ଏକ ଅଦିନର ଆମ୍ର,
ଲୋଭାଇଲା ସୁଚେତସୀ ଯାଜ୍ଞସେନୀ ଚିତ୍ତେ ।
ଯୁଧିଷ୍ଠିର ଧର୍ମରାଜ, ପରଦୁଃଖକାତର ସ୍ୱଭାବେ,
ରହିଲେ ବ୍ୟଥାକ୍ତ,
ପୂରାଇ ନ ପାରୁଁ ବଧୂ ଅଭିଳାଷ ।
ଗଦାଘାତେ ଚୂରି ପାରନ୍ତି ଯେ ଶୈଳ ଖଣ୍ଡମାନ
ଗଦାଶ୍ରୟୀ, ଭୀମ ହେଲେ ଅସଫଳ କାମ,
ଟିକିଏ ଟଳାଇବାରେ ସୁବିଶାଳ ତରୁ ।
ବ୍ୟର୍ଥ ହେଲା ତ୍ରିଭୁବନଜୟୀ
ପାର୍ଥଙ୍କ ବି ମହାଧନୁର୍ଦ୍ଧର ପଣ ।
ଉର୍ଦ୍ଧ୍ୱେ ଥାଇ ଫଳଗୋଟି ହସିଦିଏ ଅଦିନର ହସ
ଯେହ୍ନେ ଭାଗ୍ୟ ଲିପି । ନିରସ୍ତ ନକୁଳ
ତ୍ରିକାଳ ଦରଶୀ କନିଷ୍ଠ ପାଣ୍ଡବ ଖୋଜି ପାଇଲେ ନି
ଏଥି ଅଛି କି ଉପାୟ ।
ଏକ କଣ୍ଠେ ଏକ ସ୍ୱରେ କଲେ ସର୍ବେ
ସୁମରଣା ଅଦିନ ବାନ୍ଧବ ଦୀନବନ୍ଧୁ ଦ୍ୱାରକା ପତିଙ୍କି ।
ପାଣ୍ଡବଙ୍କ ସୁମରଣା, କୃଷ୍ଣାଙ୍କ କାମନା
ଭାବଗ୍ରାହୀ ଶ୍ରୀକୃଷ୍ଣଙ୍କ କଲା ଚିତ୍ତ ବିଚଳିତ ।
କାମଚାରୀ ଚିନ୍ତିଲା ମାତ୍ରକେ, ଇଚ୍ଛା ଗତି ପ୍ରକାଶିଲେ ଆସି,

ରଙ୍ଗାଧରେ ଭୁବନ ମୋହନ ହସ ବିଶେ ଅନୁପମ
'ଜାଣିଛି ମୁଁ' ଭାଷିଲେ ସେ,
ଅଦିନର ଆମ୍ର ପାଇଁ ବଳିଛି ଶରଧା ତୁମ,
ଆଗୋ ପାଣ୍ଡୁ କୁଳ ବଧୂ
ଅଦିନର ଫଳ ଲୋଡେ ବିଚାରଣା ଅଦିନ ଦିନର
ଆସ ସର୍ବେ, ନିଜ ନିଜ ଗୋପନୀୟତମ
ଅଭିଳାଷ କର ପ୍ରକାଶନ ନିଷ୍କପଟ ଚିତ୍ତେ
ତମିସ୍ର ଗହ୍ୱରୁଁ ସତ୍ୟ ସତ୍ତା ଉଦ୍ଧରିଲା ପରି ।
ଏ ଅଦିନର ଫଳ ହେଉ ସତର୍କ ପ୍ରହରୀ ।
ଧର୍ମ ସଂସ୍ଥାପନା ଧର୍ମ ତନୟଙ୍କ
ଭୀମଙ୍କ ଦ୍ରୌପଦୀ- ବେଣୀ ସଂହରଣା ଆଉ
ମାନ ଗୋବିନ୍ଦର ମାନୀ ଉରୁଭଙ୍ଗ ଅହର୍ନିଶି ଚିନ୍ତା
ଅର୍ଜୁନର ଏକାନ୍ତ କାମନା
ଦର୍ପ ଦମ୍ଭ ବିଭଞ୍ଜନ ରଣାଙ୍ଗନେ କୋପନ କର୍ଣ୍ଣର;
ବେନିମାଦ୍ରୀ ସୁତ କହୁ ନ କହୁଣୁ
ଆପଣାର ଗୋପନ ଚିନ୍ତନ
ପକ୍ୱ ଫଳ ଗୋଟି ଶିଖୁଁ ଆସିଲା ଓହ୍ଲାଇ
ଅଧ ପଥ ଯାଏ, ତହିଁ ରହିଲା ଅଟକି ।
ନତମୁଖୀ ଦ୍ରୌପଦୀଙ୍କ ଲଜ୍ଜାନମ୍ର ମୁଖେ
ଜିଜ୍ଞାସୁ ନୟନ ରଖୁଁ ମାୟାଧର,
ଉତ୍ତରିଲେ କୃଷ୍ଣା–
''ମୋର ଅଭିଳାଷ ଜାଣ ନା କି ତୁମେ,
ଆହେ ମନଚୋର, ଗୋପାଙ୍ଗନାଙ୍କର,
ମୋର ପଞ୍ଚପତି କୁରୁକୁଳ ନାଶି
ଅସପତ୍ନ କରୁଥାନ୍ତୁ ରାଜୈଶ୍ୱର୍ଯ୍ୟ ଭୋଗ
ସୁପ୍ରସାରୀ ରାଜଛତ୍ର ମେଲି କୁରୁଧ୍ୱଂସ ସ୍ତୂପେ ।
ବିଡମ୍ବନା ?
ଆଚମ୍ବିତେ ଉଠିଯାଏ ଅନାୟତ୍ତ ଫଳ ପୁଣି ଶିଖାଗ୍ରକୁ ।
କପଟ କଳ ଗୋ ଧନୀ,

ସତ୍ୟର ଚୂତ ଏ, ସତ୍ୟ ପଥୁଁ ଚ୍ୟୁତି
ସତ୍ୟ ସନ୍ଧାନୀଙ୍କି ନୁହେ ତ ବିହିତ ।
ରୋଗୀ ମୁଖେ ଶୁଷ୍କ ହାସ୍ୟ ରେଖାସରି
ବିବର୍ଣ୍ଣ ଦିଶିଲା ଦର୍ପିତାଙ୍କ ବଦନମଣ୍ଡଳ
ନିଃସରିଲା ନାହିଁ କଥା କାହା ମୁଖୁଁ
ନିସ୍ତବ୍ଧ କାନନ ଶୁଭିଲା ନି ଝିଙ୍କାରୀ ଝଙ୍କାର
ପତତ୍ରୀଏ ପତ୍ର ଗହଳିରେ ଲୁଚି ରହିଲେ ନିରୋଳେ
ରୋଷକଷାୟିତ ଭୀମ
ବେନି ନେତ୍ରୁ ସ୍ଫୁରିଲା ସ୍ଫୁଲିଙ୍ଗ
ଲାଜ ଭୟ, ଅପବାଦ ଲାଞ୍ଛନା ନ ମାନି
ଭାଷିଲେ ସୁଦେଷ୍ଣା—
"ଅନ୍ତର୍ଯ୍ୟାମୀ, କହିଲି ତ ମୁହିଁ,
ତୁମକୁ କା ଅନ୍ତର୍ଗତ କଥା ରହିଛି ଅଛପା,
କିବା ଇଚ୍ଛା ତବ ଆହେ ଇଚ୍ଛାମୟ,
ଦେଇ ନ ଜାଣିଛ କେତେ ଲଜ୍ଜା ଅପମାନ,
ଗୋପଦାଣ୍ଡୁ ମଥୁରା ନଗରୀ ଯାଏ କେତେ ରମଣୀ ହରଣେ ।
ଜାଣ ମୋର ମନୋଗତ ସବୁ ଭାବତକ ।
ତଥାପି ହେ ଯଦି ଇଚ୍ଛା ବଳେ ଶୁଣିବାରେ
ଶୁଣ, ଶୁଣୁ ଏ ଜଗତ;—
ଶୁଣିଲା ଦିନୁଁ ମୁଁ ଲୋକ ମୁଖୁଁ
ଅତି ଅସ୍ପଷ୍ଟ କଣ୍ଠର ମଉନୀ ବାରତା,
କର୍ଣ୍ଣ, ଭ୍ରାନ୍ତମତି ମାତା କୁନ୍ତୀଙ୍କର
ସରିତ ସ୍ରୋତେ ବିସର୍ଜି ଭୁଲିଲା ଆତ୍ମଜ
ପାଞ୍ଚ ଭାଇ ପାଣ୍ଡବଙ୍କ ପୂଜାର୍ହ ଅଗ୍ରଜ
ଭାଳି ବସେଁ କେତେ ନିଃସଙ୍ଗ ଏକାନ୍ତେ—
କିବା ଅପରାଧ ଏଇ ପୌରୁଷ ଧର୍ମୀଙ୍କ,
ଜନନୀର ହୃଦ ମନ୍ଦିର ରହି ଯାଏ କିଳା,
ପାଣ୍ଡବ, ବଧୂର- ମୁଗ୍ଧା ରମଣୀର
ନିର୍ବାକ ଗୁମାନ ଭାଙ୍ଗି ଦେଇଯାଏ

କାତରିତା ମୁହିଁ ଯାଜ୍ଞସେନୀ ।
ନାରୀର ଗୋପନ ମନ ବେଳେ ବେଳେ
କେଉଁ ରୂପ ପରିଗ୍ରହି କେଉଁ ଆଚରଣ
କରି ବସେ ବୁଝୁଥିବ ତୁମେ, ଅନ୍ତରଦର୍ଶୀ
ପାଣ୍ଡବ ବାନ୍ଧବ
ସେହି ସୁପୁରୁଷ ପାଣ୍ଡବ ଅଗ୍ରଣୀ
ଯାକୁ ଦିନେ ସୂତ ପୁତ୍ର ବୋଲି
କରିଥିଲି ନିର୍ମମେ ପ୍ରତ୍ୟାଖ୍ୟା,
ତାକୁ ତାଙ୍କ ଯୋଗ୍ୟାସନେ ପତି ରୂପେ
ପାରିଲେ ବସାଇ, ତେବେ ମୋର ଅନାଚରଣର
କରିଥାନ୍ତି ଯୋଗ୍ୟ ପ୍ରତିକାର ।
କ୍ଷମ ଅପରାଧ ।''
ଏତିକିରେ ତରୁଣିଙ୍ଖୁ
ପଡ଼ି ଭୂମିତଳେ ଲୋଟିଲା ସେ
ଅଦିନର ଆମ୍ର ।
ଶୋଣିତ୍ରୁ ରକ୍ତାଭ ଦିଶେ ମୁଖଛବି ଦୃପ୍ତା ଦ୍ରୌପଦୀଙ୍କ ।



॥ ୧ ॥

# ଶାରଦ ସ୍ପର୍ଶ

କେବେ ଶ୍ରାବଣ ମେଘର ଫାଙ୍କେ
ତୁମେ ଚାହିଁଥିଲ ଥରେ ବିଦେଶୀ,
ଆଜି ତାହାରି ଛବି ମୁଁ ଆଙ୍କେ
ଆଖି ଆଗେ ସେଇ ରୂପ ନିବେଶି,
ଶ୍ରାବଣ ଯାଇଛି ବର୍ଷଣାତୁର
ମେଘ ଆଜି ଅବସନ୍ନ
କ୍ଳାନ୍ତ ଧରଣୀ ତରଳ ମାରାଗ
ବର୍ଣ୍ଣ ବିଭବେ ଛନ୍ନ;
ଆଜି ସକଳ ପ୍ରୟାସ ତୂଳିର
ବ୍ୟର୍ଥ ହୁଏ ମୋ ନିଷ୍ଫଳେ ଯଥା
ଗୁମରଇ ଏଇ ମୁଦିର ।
ଖାଲି ଅବସାଦ ଭରା ପୁଲକେ
ଚାହିଁ ମୁଗ୍ଧ ମୁଁ ଦୂର ସେ ପାରେ
କାହା ଧାନ ଫୁଲ ମିଶା ଅଳକେ
ମୋର ଦୃଷ୍ଟି ଲଭଇ କାରାରେ;
ପରିଚିତ ବୋଲି ପ୍ରିୟ ସମ୍ଭାଷେ
ମନ ମୋର ଧାଏଁ ତା ପାଶେ
କମ୍ର ମୁଖ ତା କୁନ୍ତଳେ ଛାଇ
ଉଡିଯାଏ ସେ ତ ଆକାଶେ ।
ଚିର ତରୁଣ ଅଧରୁ ତାହାର
ଦରହାସ ସାଥେ ଝରି ଝରିପଡ଼େ
ମୋ ଶିରେ ଶେଫାଳୀ ହଜାର ।
ଚାରୁ କାନ୍ତିର ସେ ଗୋ ଦାୟାଦ
ମୁହିଁ ନର ଏଇ ଧୂଳି ମାଟିର
ତାର ବର୍ଣ୍ଣ ବିଭବେ ପ୍ରାସାଦ

ଦୁଃଖ ଦୈନ୍ୟେ ଭରା ମୋ କୁଟୀର ।
ପରଶ ମଣି ସେ ପରଶେ ତାହାର
ଧରା ଉଲ୍ଲସେ ବୋଲିକି
ରୂପାଧାରେ ଏଥି ଅରୂପ ରୂପୀ ସେ
ଧରା ଦେଇ ଯିବ ଖାଲି କି
ଯଦି ମାନବ ମସୀରେ ମଳିନ
ହେବାରେ ତା ଭୟ ଲୋଡ଼େନା ମୁଁ ତାରେ
କରିବାକୁ ମସୀ ଅଧୀନ ।
ଆଉ ଅଛି କି ସଖୀ ସେ ବିଶ୍ୱ
ସଜ ସ୍ୱପ୍ନ ଅରୁଣ ଦ୍ୟୋତକ
ତାହା ସାଥେ ଆଜି ମୁଁ ରେ ନିଃସ୍ୱ
ସବୁ ହରାଇ ରଖିଛି ଲୋତକ,
ଯା କିଛି ଥିଲା ମୋ ସୌରଭମୟ
ସବୁ ତ ଲଭିଛି ସମାଧି
ତଥାପି ଭ୍ରାନ୍ତି ବିଳାସୀର ଯାହା
ଏ ଜଗତ ଏତେ ବିବାଦୀ ।
ତେଣୁ ନିର୍ମଳ ଏଇ ଶରତେ
ଆଶାହତ ମୁହିଁ ଅଧପଥେ ଆସି
ଡୁଳାଇ ପଡେ ରେ ନିସତେ ।

(କବିତାଟି ପ୍ରକାଶ ପାଇଥିଲା 'ଭଞ୍ଜ ପ୍ରଦୀପରେ । ବହୁବର୍ଷର ବ୍ୟବଧାନ ହେଲେ ବି ଲୁପ୍ତପ୍ରାୟ ଏ କବିତାଟି ଲୋକ ଲୋଚନକୁ ଆସିବାର ଗୌରବ ଅର୍ଜନ କରିଛି । ''ଗୋପ ଗୌରବ''ର କବି ଶ୍ରଦ୍ଧେୟ ବୃନ୍ଦାବନ ଦାସଙ୍କ କଣ୍ଠତଟର ସୌଜନ୍ୟରୁ ।)



॥ ୨ ॥

## ଦୀପ ଲିଭି ନି

ପ୍ରାୟ ଲିଭି ଆସୁଥିବା ଦୀପ
ସେ ବି ଜଳି ଉଠିବାକୁ ଚାହେଁ

ବହୁ ପଛେ ଛାଡ଼ି ଅଇଲାର
ଦିନ ଗୁଡ଼ିକର
ଉଜ୍ଜ୍ୱଳିମା ପରି,
ଆପଣାର ଛାଏ ।
ହୃଦଭରା କେତେ ପ୍ରୀତି ଅନୁରାଗ ଢ଼ାଳି
ଜଳାଇ ଯେ ରଖିଗଲା ପ୍ରଥମ ପ୍ରଦୀପ ।
ଯିଏ ହେଉ,
ଅନ୍ତରାଳେ ଆଉ ସେଇ ସେ ମାୟାବୀ
ସେଇ ଯାଦୁକର,
କେତେ ନା ବିସ୍ମୟ, କେତେ ବା ଚମକ
ଘଟାଇନି ଜାଣେ ନା ମୁଁ । ବୁଝିବି ହୁଏ ନା
ଜାଣିବି ବୋଲି ବି ଧନ୍ଦି ହେଲେ
ପ୍ରବୃତ୍ତି ମୋ ଭୀରୁ ପାଦ ଚାଳି ।
ଆଗେଇ ପାରେ ନା—।
ଗୋଟାଏ ଶିଖାର କେତେ ଅଣୁମୟ ତଳେ
ସହସ୍ର ସହସ୍ର କେତେ ପରମାଣୁ
ରହିଅଛି ଛବି,
ଏବେ ବି ସେ ଅନାବିଷ୍କୃତ ।
ଆଗୋ ମୋର ପ୍ରିୟଭାଷୀ ! ଆଗୋ ସତ୍ୟଭାଷୀ ।
କାହିଁ ରଖିଥାଅ ତୁମ,
ବଂଶୀଟିର ମାତ୍ର ସାତଗୋଟି ରନ୍ଧ୍ରେ,
ସପ୍ତସ୍ୱର ଉତୁରାଇ,
ଏମିତି ମଧୁର, ଏମିତି ବା ନିଷ୍କରୁଣ, ଗୋ କପଟୀ,
ସପ୍ତକୋଟି ମାୟାଜାଲ ଏ ମାଟିର ଲାଗି ।
ପାଣିରୁ ପାତଳ ଏଇ କୁହେଳିକା ସନ୍ତରଣ ମାର୍ଗେ;
ଅରୁନ୍ଧତୀ କ୍ଷୀଣଦୃଶ୍ୟ ।
ସପ୍ତର୍ଷିମଣ୍ଡଳେ ଅଦୃଶ୍ୟ ଘଟିଲେ କେବେ
ମରଜନ୍ମା ନିଜ ଆଶୁଭାଗ୍ୟ ଲିପି ଗଣି
ଆତଙ୍କିତ ହେଲେ

ଆଉ କାହାରି ବା ଅଛି କିଛି ବୋଲିବାରେ ?
ଅସ୍ତାଚଳ ଚୂଳେ, କିମ୍ବା ଆର ପାରେ
ବୁଡ଼ି ବୁଡ଼ି ନାହିଁ ଭାନୁ ।
ତାର ଶେଷ ଶୀର୍ଣ୍ଣ ରଶ୍ମିଟିକୁ
ଆସିଥାଏ ଅବା ଏଇ ଶିଖାଗ୍ନି ସନ୍ଦେଶ ।
ନିର୍ବାଣର ପୂର୍ବରାଗ ଏଣୁ ଏତେ ସୁନ୍ଦରିମ ପରା ।
ଶିଶୁର ସ୍ୱପନ ସ୍ମେର
ମନ୍ଦ ମନ୍ଦ ହାସର ସୂଚନା ପରି ଅବା
ଏଇ ଖାଲି କେବଳ ତୃପ୍ତିର
ରହସ୍ୟଅା କୂଟ ?
କାଳୀ ବାଢେଣୀ ମିଥୁନ
ବାସ ବାହୁଡ଼ା ତା ଚେତାବନୀ
ଆପଣେ ନିଃସରି ଯାଏ
ଶଙ୍କାକୁଳା ପଥିକ ବଧୂର
ଉପାଗତ ସନ୍ଧ୍ୟାରାରେ
ଅତିମିତି ଡରକୁଳା କାନେ ।
ଯେଣେ ଦେଖେଁ, ସେଇ ଏକ କଥା
ଠିକ୍ ସେଇ ପରି,
ଛାୟା ଘେରା ଆଲୋକର
ବିଦାୟୀ କାରୁଣ୍ୟ ସାଥେ
ରହସ୍ୟ ସମ୍ପାତ ।
ଦେଖେଁ ଦେଉଳ ବାହାରେ,
କାଦମ୍ବିନୀ ବକ୍ଷୁଁ ପ୍ରତିଫଳି ଝରି ପଡୁଥିଲା ପରି ଲାଗେ
ସ୍ତିମିତ କିରଣ,
ଅଥଚ ଟିକିଏ ସେ ପାଖେ ବେଢ଼ା ମଧ୍ୟେ
ସେଇ ଭିତର ଅଙ୍ଗନେ ।
ଯହିଁ ପାଷାଣ ଦେବତା
ଛାଡ଼ି ଯାଇଛି ତା କୁସୁମ ଦେବ-ଚର୍ଚ୍ଚିତ ଆସ୍ଥାନ ।
ଏତେ ଟିକ ତମସା କାଳିମା

ଘନାଇ ଆସିଲା ପରି ଘେରିଯାଏ
ମୋର ଚଉଦ ବ୍ରହ୍ମାଣ୍ଡ;
ତେବେ ବି ତ ଜଳେ ଦୀପ
ବଡ଼ କ୍ଷୀଣ, ବଡ଼ ଶୀର୍ଣ୍ଣ
କ୍ୱା ଅଛି ତା'ର ଦୀପ୍ତିର ପ୍ଳାବନ ଶ୍ଳାଘା
ନା ବା ତିମିରିତ ନିଃସର ବିସ୍ମୃତି ।



॥ ୩ ॥

## ମରଣରେ

ବଞ୍ଚିବାର ଅଧିକାର ଦର୍ପ
ଥିଲା କି ନା କେବେ,
ଆଜି ତାହା ଚୂର୍ଣ୍ଣ କରିବାର ଗୋଧୂଳି ଲଗ୍ନଟି
ଫେରି ଉଁକି ମାରି ଚାହିଁଲା ବେଳକୁ
ମୁହିଁ ପଡ଼ି ରହେ ମାତ୍ର ଜୀର୍ଣ୍ଣ ବାସ;
ତୁ ଯା'ର ପରିହାର ଲାଗି
ଏମିତିକା କୃତ ସଂକଳ୍ପ ଯେ
ଅଭିମାନୀ ମିନତି ମୋ ଯେତେ ଯାହା ଥାଏ,
ସବୁ ଲୋଟି ଯାଏ ଏଇ ଧୂସର ଧୂଳିରେ ।
ବାହୁନା ବିଳାପ ଏତେ ନିକି ମୋର
ଏତେ ନିରର୍ଥକ ଏବର ଦିନେ ବି ।
ପ୍ରାଣୀ ପରା, ଏକ ଘଟ ଛାଡ଼ି
ଅନ୍ୟ ଘଟ କରେ ପରିଗ୍ରହ ।
ନିର୍ଜୀବ ବାଲିର ଅବା
ସଲିଳ ସିଞ୍ଚିଲା ଆର୍ଦ୍ର ମୃତ୍ତିକାର ଧମନୀରେ
ଜୀବନ୍ୟାସ ଦେଇ ଉଜ୍ଜୀବିତ କଲାବେଳେ-
ମାନେ– ଏଇ ଘଟ ପରିବର୍ତ୍ତନର
ବ୍ରାହ୍ମ ମୁହୂର୍ତ୍ତରେ,
ସେ ଯେଉଁ ଆଦି ସଞ୍ଚାର ।

ବିଦ୍ୟୁତର ସେଇ ପ୍ରଥମ ସ୍ଫୁରଣ,
ସେଇ ଆଦ୍ୟ ଅନୁଭୂତି,
ଇଡ଼ାର, ପିଙ୍ଗଳା, ଅବା ସୁଷୁମ୍ନାର,
କେଉଁ ସୁନ୍ଦରିମା ପଥ ବାହି
ଗତି କରେ ।
କେତେ ସରୁ କେତେ ସୂକ୍ଷ୍ମ ଧାରେ ।
ତାହା ମୋତେ ଦେଲୁନି ଚଖାଇ ।
ମରଣରେ ତେବେ ତୋତେ କେମନ୍ତେ କହିବି
ଅନିତ୍ୟ ଅଳୀକ ଧାମେ
ତୁହି ଏକା ସତ୍ୟବ୍ରତ ବୋଲି ।
ମର ସଂସାରେ ବି ଅମର ସୃଜିଛି ଧାମ
ବିଚିତ୍ର ଏ ଲୀଳା;
ତହୁ ବଳି ଆହୁରି ବିଚିତ୍ର—
ଏଠି ସଦା ସତ୍ୟବାକ୍ ମୁଖେ
ମୃତ୍ୟୁ ବାହୁନା ରଚାନ୍ତି ଅମର ପୁତ୍ରର ।
କାୟକଷ୍ଟ ପିତୃ ପିତାଙ୍କର
ଆଶୁ ମୃତ୍ୟୁ ବିହିବାର ଅର୍ଥେ
ନ ଗଣନ୍ତି ଖେଦ ଜଣେ ହେଲେ କେହି ।
'ବକେ ବସିଥିଲା ଧ୍ରୁବ ଉପରେ' ପରି
ମୁଁ ଆଜି ଏକା, ନିହାତି ଇ ଏକା ।
ମରଣରେ,
ତୁଳାଦଣ୍ଡ ଖଣ୍ଡି ତୋର
ବୁଲିଯାଏ ସିନା ମୋର ଖଣ୍ଡ ଦୂରେ,
ଅଙ୍ଗ ସାରା ମୋର ବୋଲି ହୋଇଯାଏ
ଜଡ଼ିମା ବିକାର;
କିନ୍ତୁ କାହିଁ ଦେହାନ୍ତିକା
କାହିଁ ବା ନିର୍ବାଣ,
କେ ଦେବ ଉତ୍ତର ।

■■

॥ ୪ ॥

# କୁନ୍ତୀର ବିପାକ

କୁମାରୀ ଜୀବନର ଏକ ନିଷ୍ପାପ ମୁହୂର୍ତ୍ତେ
କେବେ ଦିନେ ଜାଗିଥିଲା
ନିଛକ ସେ ଏକ କୌତୂହଳ ସ୍ପୃହା,
କ୍ଷୁଦ୍ର ବହ୍ନିକଣା ଦାବାନଳ ସୃଜି
ଖାଣ୍ଡବ ବନକୁ କରିଯିବ ଭସ୍ମସାର
ଦିନେ ହେଲେ ଉଦ୍‌ଭଟ କଳ୍ପନା
ଆସି ନି ମନକୁ ।
ବର୍ଷାକୁଳ ଦିନମାନଙ୍କର
ପରିଚର୍ଯ୍ୟା ନିଷ୍ଠା ଦେଖି
ଯୋଗସିଦ୍ଧ ଯତି ତପୋଧନ
ବର ସିନା ଦେଇ ଗଲେ ମୋତେ ତୋଷ ଚିତ୍ତେ,
ସେ ବି ଦିନେ ଠିଆ ହେବ କୁଳମାନ ନାଶି
ଅବଳା ବାଳାର ବୋଲାଏ ଯା
କୌମାର୍ଯ୍ୟ ଗାରିମା ଏକଇ ନିମିଷେ
ଚୂରମାର୍ ଓ ଭୂମିସାତ୍ କରି ।
ଏତେ ନିଦାରୁଣ ସେଇ ଲଜ୍ଜା
ଆଜି ମୁଖେ ଆଣିବାରେ ଜନ୍ମେ ମହାତ୍ରାସ ।
ଏ କୃନ୍ତନ ଜ୍ୱାଳା ଆହୁରି ବିଷମ,
ବିଷମୁଁ ବିଷମତର ।
ବଡ଼ ଆଚମ୍ବିତ ଫାଳ ଫାଳ ଫାଟି ଯାଇ ନି ଏ ହୃଦ ।
ଅଥବା ବିଦାରି ଯାଇ ନି ଏଇ ଧରା ତଳ
ଗ୍ରାସିବାରେ ହତଭାଗିନୀ କି ।
ମୁଁ ସିନା ଜାଣିଛି ନାହିଁ କେତେ ତଳ ସେ ଗହନ,
କିସ ତାର ମର୍ମ ।
ମନାସି ବସିଲି ଯାରେ କିଏ ସେ ଦେବତା ?

ସେ କି କେବେ ସତେ
ତ୍ରୁଟି ସଂଜ୍ଞ ନାହିଁଥିଲେ ନିଜେ
ଅବା ଅବିବେକୀ, ଅଥବା ନିଷ୍ଠୁର,
ପରିମାପି ବସିଥିଲେ କିଶୋରୀ ଅଧରାମୃତେ
କେତେ ପୁଣ୍ୟ ଧରେ ।
ମହା ତେଜ ପୁଞ୍ଜେ ଅନ୍ଧକରି ମୋତେ—
ମୋର ଶିଶୁ ଜାଗୃତିକୁ
ଥୋଇ ଦେଇ ଗଲେ ଶୂନ୍ୟ ଗର୍ଭ କୋଷେ
ଆଦିତ୍ୟର ମହାଦ୍ୟୁତି ବିଭା ।
କେତେ ମୂଢ଼ ଏ ସଂସାର
ଏଥି କୋଟି କୋଟି ତରୀ
କାଣ୍ଡାରି ନ ଥିଲା ପରି ଚଳେ
ଅନିଶ୍ଚିତ ଲକ୍ଷ୍ୟେ;
ସମ୍ମୁଖେ ଯା ତମୋମୟ ମହାଘନ ରାତ୍ରି ।
ଏମିତି କ୍ଷଣେ
ଏମିତିକା ଏକ ହୀନଭ୍ରମ
ଯଦି ମୋତେ ଟାଣି ନେଇଯାଏ
ହୀନ ଜନମା ହୁଁ ହୀନ ମହାଗ୍ଲାନି ବିପାକକୁ,
କହ, କେ ନିନ୍ଦିବ ଭାଗ୍ୟଲିପି ବୋଲି
ମୋର କେଉଁ ଅଦୃଷ୍ଟକୁ ।
କେହି ଜାଣିଲେନି
କେବେ କେଉଁ ଉଦୟ ଅଚଳେ
ଦେଖା ଦେଲା
ନବୋଦିତ ପରି ଅରୁଣାଭା, ହାୟ ।
ଜଗାଇ ପାରିଲା ନାହିଁ ଏତେ ଟିକ ସ୍ନେହଧାର
ଜନନୀର ଛିନ୍ନ ଅନ୍ତସ୍ତଳେ
କାରୁଣ୍ୟର ଆଦ୍ୟ ସ୍ବର ଏକ ।
ଅଶାନ୍ତ ମୋ ଗୋପନ କୋହର
ରୂପରେଖ ଦେଖିବାକୁ

ଥିଲେ ନାହିଁ କେହି ଜଣେ ହେଲେ ଅନ୍ତରଂଗ ମୋର ।
ମୁଁ ବା କେଉଁ ଦମ୍ଭ ନେଇ ଏକାକିନୀ
ଯୁଝିଥାନ୍ତି ନିୟତିର ସନେ
କୁଟିଳା ତା ଗତିପଥ ରୋଧିବା ପାଇଁ କି ।
ଦେଲ ନି ତା
ନାଇଁ ତ ସେ ଦିନ,
ମହାଭାରତର ମହାଗ୍ରନ୍ଥ ମହାକାବ୍ୟ
ଲେଖା ହୋଇଥାନ୍ତା ନିଶ୍ଚେ
ଅନ୍ୟେକ ପ୍ରକାରେ—
ଅନ୍ୟ ଏକ ମନୋରମ ଛାନ୍ଦେ ।



॥ ୫ ॥

## ଅଶୋକ

ସେ ଦିନର ଛୋଟ ସେଇ ନବାଙ୍କୁର
ସ୍ତବକେ ସ୍ତବକେ
ସାରା ତରୁ ଛାଇ ଆଜି
ମେଲାଇ ଦେଲାଣି ରଙ୍ଗର ତରଙ୍ଗ,
ତୋରା ସ୍ୱର୍ଣ ଆଜି ବି ତା
ସୁମରି ବୁଲେଁ ମୁଁ
କାନେ କାନେ କେତେ କହି ଯାଇଥିଲା
ଫୁଟି ନ ଫୁଟିଲା ପରି ପ୍ରଣୟ ସନ୍ଦେଶ ।
କେଜାଣି ମୁଁ ସେଥିଲାଗି ଅବା
ନିଜ ଯାଏ ହୋଇ ଉଠେ ସରମ ପାଟଳ,
ଯେହ୍ନେ ନବ ବିବାହିତା ବଧୂ ।
ଆଉ ପାରି ନି ପାଶୋରି ସେଇ
ଅଙ୍କୁରୋଦ୍‌ଗମ ଶୁଭ ମଧୁଲଗ୍ନ
ଯେବେ ଚାରୁହାସୀ ସୁନ୍ଦରୀ ଏ

ଦେଇ ଯାଇଥିଲେ ଏଇ
କିଶୋରୀର ଅଙ୍କେ ମୃଦୁ ପଦାଘାତ,
ରଙ୍କ ପରି ଯା ଲାଗି ମୁଁ
ନିତି ଝୁରୁ ଥାଏଁ –
ସେଇ ପ୍ରଥମ ସ୍ଫୁରଣ,–
ରୋମାଞ୍ଚର ସେଇ ପ୍ରଥମ ସ୍ଫୁଟନ ।
କୁଚ କୋରକର ଉଦ୍ଧତ ବେଭାର
ଆଉ ନିତମ୍ବ ବିମ୍ବର
ଗୁରୁଭାରେ ମଦ ଗର୍ବିଣୀର
ଯିଏ ରସାଳସା ଧରଣୀ କି
ବାଧିବ ବୋଲି ବା
ମତି ପରି ଚଞ୍ଚଳ ଗତି କି
କରିଥାନ୍ତି ଗର୍ଭାଳସୀ
ଠଉଁ ବି ଆଳସୀ,
ସେଇ ଲଘୁ ସ୍ପର୍ଶ ଶିହରଣ
ହେଇ ରହିଛି ମୋ
କାମନାର ଅନନ୍ତ ଆସକ୍ତି ।
ଦିନକର ଲାଗି କେବେ ମୋର
ମାନ ସରୋବର ପରି ଶୁଦ୍ଧ ନିର୍ମଳ ଚିତ୍ତକୁ
ଛୁଇଁ ନାହିଁ ଶୋକର କାଳିମା;
ନିସର୍ଗିକା କଣ୍ଠ ଦେଶେ
ତେଣୁ ମୁଁ ଅଶୋକା,
ଅଫୁଟନ୍ତ ଅଶୋକ ମଞ୍ଜରୀ ।



॥ ୬ ॥

## ପୁଷ୍ପ ଓ ନାରୀ

ଚମକ କଳିରେ ସିନା ତୁମେ ଦେଲ
ତୁମ କରାଙ୍ଗୁଳି ଦର୍ପ
କେତେ ଅଳତାର ସନେ

କେତେ ହରିଦ୍ରା ମିଶ୍ରଣ
ଲେପନେ ସଂମାର୍ଜି
ତନୁ ତାର କଲ ଶ୍ରୀଳ ଶୋଭାବନ୍ତ–
ଏବଂ ନବନୀତୁଁ ବଳି ସୁକୁମାର ।
ଏ ସୁନ୍ଦର କେ ରଚିଲା ?
କାହାର ଏ ଅବଦାନ,
ତାହାର ନା ତୁମଠେଇଁ ତାର ?
ଆଗୋ ନାରୀ କହ ସତ କରି
ସତ କରି କହ ନି ନା ଥରେ ।
ନାଗେଶ୍ୱର ଆଜି ଉଲ୍ଲସିତ,
ସୌରଭ ମଦିର;
ସେଇ ସ୍ୱର୍ଣ୍ଣ କାନ୍ତି;
ସେଠି ବି ବିକୀରେ ତୁମ ବିଭାର ମାଧୁରୀ
ବିଭ୍ରାନ୍ତିର ମୋହ ଜାଗେ
ଗଭୀର ଆବେଶେ,
ଯା' ପାଖେ ମାନିଛି ହାର ଅନାୟାସେ
କଳ୍ପନାର ସୀମିତ ଆଗ୍ରହ ।
ଉଷା ଜ୍ୟୋତି ସ୍ରୋତେ
ଶ୍ରୀଅଙ୍ଗ ପଖାଳି ଯିଏ
ଅଞ୍ଜଳି ଅର୍ପିଲା ନେଇ
ଫୁଲରେଣୁ ଭାରେ ଆପଣାକୁ
ଦେବତାର ପୂଜାବେଦୀ ତଳେ
ବୈଶାଖର ଖର ରୌଦ୍ର ତାପ
ତାକୁ କି ପାରିବ ବିରତାଇ ବାରେ
ଏକ ନିଷ୍ଠ ଉପାସନା ବ୍ରତୁଁ ।
ଏଇ ନିଷ୍ଠା ଶିଖାଇଛ ତୁମେ ନି କି ତାକୁ ?

ଆଗୋ ଶ୍ରେୟସ୍ୱିନୀ ।
ପଦ୍ମ ପୁଷ୍ପୁଁ ନେଇ କେଉଁ କେଉଁ ଉପାଦାନେ

ଗଢ଼ି ଥିଲା ବିହି
ତୁମ ପରି କୋମଳାଙ୍ଗୀ ଫୁଲ ପ୍ରତିମାକୁ
ଆଗୋ ପଦ୍ମଗନ୍ଧା !
ତେଣୁ ଅବା 'ପଦ୍ମିନୀ' ନାମରେ ତୁମ
ତୋଳା ହେଲା ଖ୍ୟାତି
ସୁଧୀଜନଙ୍କର ବିମୁଗ୍ଧ ସମାଜେ ।
ତୁମ ବେନିଙ୍କର ସୃଜନ ରହସ୍ୟ—
ତ୍ରିକୂଟର ସନ୍ଧି— ଆଜି ବି ଭେଦି ପାରନି
ଜ୍ଞାନ ଗରିମାର ଆବିଷ୍କାର ସ୍ପୃହା ।
ତୁଲ୍ୟମାନ ତୁମ ଏତେଇ ନିକଟତମ ।

ଯୂଥୀ ଦାମ
ତୁମ କବରୀର ସୌନ୍ଦର୍ଯ୍ୟ ବୈଭବ
ବଢ଼ାଏ ନା, ତୁମେ ଦିଅ
ସୁଶୁଭ୍ର ତନ୍ୱୀକି ଗୌରବର ଶୀର୍ଷାସନ ଗୋଟି,
ଏ'ର ବିଚାରଣା ଏବ ଯାଏ ଚାଲେ,
ଏ ସଂଶୟ ଏବ ଯାଏ ହେଲାନି ନିର୍ଣ୍ଣୀତ ।
ତିଳ ପୁଷ୍ପ, ରକ୍ତଜବା ଉତ୍ପଳ ନୀଳିମା
ଆଗୋ ନାରୀ ତୁମ ଘେନି ଛଏ କବି ପ୍ରିୟ ।
ଧବଳ ମାଳତୀ ଶୀର୍ଣ୍ଣ ଦେହୀ କାମିନୀ ନିଆଳୀ
କୁନ୍ଦ ଓ କେତକୀ,
ଯେତେ ଯହିଁ ଥାନ୍ତି ଶୋଭାଧର
ସୁଷମା ସୃଷ୍ଟିର,
ଯାହା ମାତ୍ର ଅନ୍ୟତମ ସେରା ଆଉ ଶ୍ରେଷ୍ଠ,
ସଭିଏଁ ନିଅନ୍ତି ବାଛି ବାଛି ଆପଣା ଆସ୍ଥାନ,
ମଲ୍ଲୀ ହାସମୟୀ, ଆଗୋ ମତ୍ତକାମୀ
ସାଧବ ବଧୂର ଲାଳିତିମାନିନ୍ଦୀ
ଅନବଦ୍ୟ ତୁମ ସୁକୁମାର ଅଙ୍କେ ।
ପ୍ରାଣେ ଯେତେ ସୁନ୍ଦରିମା ତୃଷ୍ଣା

ମୋର ବୋଲି ବୋଲେ ମୁହିଁ
ସେତେ,

କମଳିନୀ କୋଳେ ଅନ୍ଧ ଅଳି
ବନ୍ଦୀ ହେଲା ପରି ।
ବଢ଼ି ବୁଲେ ଶାଙ୍କୁଳି ବନ୍ଧନେ
ବାନ୍ଧି ହେବା ମାୟା ।

■■

॥ ୭ ॥

## ନିଷିଦ୍ଧ ଅନିଷଦ୍ଧ ବା–

ନିଷିଦ୍ଧ ସେ ଫଳଟିର ମଧୁର ସ୍ୱାଦନ
ବିଜ୍ଞ ଜନେ କହୁଥାନ୍ତି, ସେ ଏକ ମହାର୍ଘ
ଅଭିଜ୍ଞତା,
ଯାର ଅନ୍ୟ ନାମ ବିରାଟ ସ୍ଖଳନ
ଘଟୁନି ତା ନର ଭାଗ୍ୟ ପଟେ ।
ଏକାନ୍ତେ ମୁଁ ନିଜ ଯାଏ ଗୁଣି ହୁଏ–
ଉଷା ମୁଖେ ହସି ଉଠେ ରବି–
ରକ୍ତାଂଶୁକ ହାସ –
ପଙ୍କଜିନୀ ମର୍ମ ଯାଏ ଖେଳିଯାଏ ଲାଜ ଅରୁଣିମା
ବିଧି ବିଧାନର ଚିରନ୍ତନୀ ଲୀଳା ।
କେ କହେ ଏତେ ବଡ଼ ଲୀଳାର ମାଧୁର୍ଯ୍ୟ
ଲୁଚି ରହେ କାଳିମାର ଛିଟା–
ଛାୟା ଦାଗ–
ଏତେ ହେଁ ଅନିଭା ।
ଜନନୀର ଗର୍ଭାଶୟେ
ଜୀବନ୍ୟାସ ଯାଏ ଥିଲା ପରି
ଯେଉଁ ମାଟି ପିଣ୍ଡ ନିର୍ବିକଳ୍ପେ ଚରିବୁଲେ,
ସେଇ ନିଷକୁଷ ପରମ ବିଭୂତି

ମୃତ୍ତିକାର ସ୍ପର୍ଶ ବାଜିଲା ମାତ୍ରକେ
ହୋଇଯିବ ଏମିତି ଥାବିଲ–
ମାନିବାରେ ଲଜ୍ଜେ ମହା ଦ୍ୱିଧା ।
ପୁଣି ଶୁଣେଁ ବିବୁଧଙ୍କ ସୁଭାଷିତ ବାଣୀ–
ମରତର ଆନନ୍ଦ ଉଲ୍ଲାସ ସ୍ୱର୍ଗପୁରେ ସୁଦ୍ଧା
ମିଳେ ନି ବୋଲି ତ
ନରଦେହ ପରିଗ୍ରହି ଅମରେ ଲୋଡ଼ନ୍ତି
ମର ସନ୍ତାନର ସୁଖ ଆସ୍ୱାଦନ ସ୍ପୃହା ।
ଏଠି ଯେଉଁ ନିଗୂଢ଼ ରହସ୍ୟ
ସୁନ୍ଦର ଏ ସୃଜନର,
ତୁମେ ଯଦି କର ଏଥି ପାପର ଆରୋପ
ବିପୁଳ ଏ ବ୍ରହ୍ମାଣ୍ଡର ସ୍ଥିତି
କେଉଁ ଦିନୁଁ ଲଭିଥାନ୍ତା ପ୍ରଳୟ ପ୍ଳାବନେ
ଏତେ ନାରଖାର
ତୁମକୁ ନା ମୋତେ
ନାହିଁ ଥାନ୍ତା ଚିନ୍ତନ ପାଇଁ କି ଅବସର ତିଳେ ।

ଜାଣେ ନା ମୁଁ କେବେ ଦିନେ
ଥିଲା ମୋର ଧନ ଅହଂକାର
ଜନ ଅବା ଯୌବନ ବଡିମା;
ଏଠି ଯେଉଁ ଜୀବନର ମହା ଅନ୍ତଃସ୍ରୋତ
ନିରାଲମ୍ବେ ବହି ଚାଲେ,
ସେଥି, କ୍ଷୁଦ୍ର ମୋର ଜଳବିନ୍ଦୁ ଟିକ ହିଁ ମାତ୍ରକ
ମୋର ଅବଦାନ ବୋଲି
ଯଦି ବା ଉପୁଜି ଥାଏ ଅହମିକା କେବେ,
କେଉଁ ନାମେ ତାକୁ ତୁମେ
କରିବ ଆଖ୍ୟାତ ଜାଣେ ନା ।
ଏ ମର୍ତ୍ତ୍ୟେ ମୋ ଅଧିବାସ
କେଇ ଦଣ୍ଡ, ଦିନ ଦୁଇଟି ବା

ଅଥବା କାଳକ୍ଷେପୀ ରୂପୀ
ଗ୍ରାମ ଉପକଣ୍ଠେ ବଟ ବୃକ୍ଷ
ପ୍ରସାରି ଥାଇ ତା ଦୀର୍ଘ ଅବସ୍ଥିତି,
ଦେବତାର ସେଇ ଅନୁଗ୍ରହ ଅଥବା ନିଗ୍ରହ
କିଛି ନ ବିଚାରି ମୁହିଁ
ଦେଇ ଅଛି ମେଲି ମୋର ଯାତ୍ରାପଥ ।
ଅଗ୍ରତେ ମୋ
ହରିତାଳୀ
ଉଜ୍ଜ୍ୱଳ ଏ ମାର୍ଗ ।
ନିକ୍ଷିପ୍ତ ବା ଅନିକ୍ଷିପ୍ତ ସବୁ ମୋ ସମାନ ।

■■

॥ ୮ ॥

## ଈର୍ଷା ନା ଉପହାସ ?

ପ୍ରଚୁର ବୋଲାଏ ଯାହା ଆନର ଆଖିକି
ଜାଣେ ନା ମୁଁ କେଉଁ ଅର୍ଥେ
ଲଭିଛି ଏ ଆଖ୍ୟା
କାହିଁ ଧନ କାହିଁ ମାନ,
ଯୌବନ ସମ୍ଭ୍ରମ କେବେ ଥିଲା କିବା ନାହିଁ,
ଅବା କେଉଁ ଗୌରବ ଗାରିମା ନେଇ
ଥିଲି ମୁଁ ଆଚ୍ଛନ୍ନ କେବେ
ଆସେ ନା ସ୍ମରଣେ ।
ପ୍ରଚୁରେ ଯା ଅଧିକାର
ସେ ବି ଯଦି ଅସୂୟାର ଚକ୍ରେ ପେଷି ହୁଏ,
ଆଉ କରେ ଅନଳ ଉଦ୍‌ଗାର,
ସେଇ ହେବ ସିନା ସବୁ ମୋ ଦୈନ୍ୟର
ନିର୍ବିଘ୍ନ ସଂହାର;
ସେଇ ତ ମୋ ଲୋଡା ଏକାନ୍ତର କାମ୍ୟ ।
ହେଲେ ମୁଁ ଦେଖେଁ ମୋ ଚଉକତି

ଘେରି ରହିଥିବା ଦୈନ୍ୟ ଦୁର୍ଦ୍ଦଶାର ନିର୍ମମ ବେଷ୍ଟନୀ
ସ୍ତୂପୀକୃତ ମାନବୀୟ ଛାୟାର କବଳୁ
ନିଷ୍କୃତି ବା ମୁକ୍ତି ।
ଖୋଜି ବୁଲେଁ ଯେତେ
କାହିଁ ଦିନେ ବି ତ ମିଳେନା
ନିଷ୍କୃତି ବା ମୁକ୍ତି ।
ଏଣେ ଯା ଦେଖେ ମୁଁ
ଦାଣ୍ଡ ଦୁଆର ସେ ପଟେ
ଭିଖାରୀର ଭିକ୍ଷା ଥାଳ ଗୋଟି
ଯେତେ ତହିଁ ରହିଛି ନିହିତ
ସୁଖ ସନ୍ତୋଷର ଅସର ସ୍ଫୁରଣ
ସିଏ ବି ମୋ ଲାଗି
ଅଧିକରେ ସ୍ପୃହଣୀୟ୍ ବୋଲି
ପାରେ ନାହିଁ କାହାକୁ ବୁଝାଇ ।
କିଏ ବା କହିବ
ଈର୍ଷା ଆଉ ଉପହାସ
ବେନି ମଧ୍ୟେ କିଏ ବେଶୀ ଭୟଙ୍କର ।



॥ ୯ ॥

## ଅନୁଷ୍ଟା

ସବୁ ରାତି ପରି ଅଦିନର ରାତି
ଆସିଲା ଓ ଗଲା ମଧ୍ୟ ପାହି ।
କଅଁଳି ପ୍ରଭାତୋତ୍ସବ
କ୍ଷଣପ୍ରଭା ଭଳି ଝଲି ଉଠି
ପଲକ ପଡ଼ିନି କେଉଁ ଶୂନ୍ୟ ଗର୍ଭେ
ସେ ବି ଗଲା ଛପି;
କିସ ସିଏ କ୍ଷୀଣସଂଜ୍ଞ—
ଏଇ ପ୍ରଭାତୀର ଶୀତଳ ପରଶ ଦିଏ

ଧରା ନାହିଁ ଦିଏ,
ବରଂ ସର୍ବୋପରି ବଢ଼ାଇ ବଢ଼ାଇ ଯାଏ
ନିରନ୍ତରୀ ଅନ୍ତର୍ଦାହୀ ଜ୍ୱାଳା ।
ଉତ୍ତୁଙ୍ଗ ଶିଖର ଦେଶୁଁ
ନିରିମାଖୀ କେତେ ଜନ ପ୍ରାଣୀ
ପଡ଼ୁ ପଡ଼ୁ ଅଧପଥୁଁ
ଦେଖି ଦେଖୁଛନ୍ତି ଅକସ୍ମାତ
କାହିଁ କିଛି ନାହିଁ ।
ସ୍ଥିତି ବୋଲି ଯା ଥିଲା ସେ ସବୁ
ଗଲାଣି ଉଭାଇ ।
ତେବେ—
ଅଛି ଦୁଇ ହାତ
ମାତ୍ର ନିଗଡ଼ ଶିକଳେ ବନ୍ଧା ପଡ଼ିଛି ନିବିଡ଼େ ।
ମଶକ ଦଂଶନକୁ ବି ଏଡାଇବା ଲାଗି,
ହାୟ ପାଉନାହିଁ ବଳ,
ଆପଣାର ନିର୍ବୀର୍ଯ୍ୟ ପଣକୁ
ଘନ ଘନ ମାଡୁଥାଇ ଚିଡ଼ି
ନିଜକୁ ଧିକ୍କାରି ।
ଏଇ ହାତେ ଥିଲା ଦିନେ ଶକ୍ତି,
ଧରାଧାମେ ଜୈତ୍ର ଯାତ୍ରା ଲାଗି
ନାହିଁ ଆଉ ଚିନାଏକ ମାଟି ବୋଲି
ଅନୁଶୋଚି ବାହାସ୍ଫୋଟ ମାରିବାକୁ
କ୍ଷଣେ ଅବସର ।
କାହିଁ ସେ ଅଜାତଶତ୍ରୁ
ଯାର ଦର୍ପସ୍ଫୀତ ଶିର
ଭୂତଳ ଧୂଳିରେ ଲୋଟାଇ ବା ଅର୍ଥେ
ଲୋଡ଼ା ହେବ ପୁଣି ଅସି ସଞ୍ଚାଳନ ।

ଧରା ସରା ମଣି,

ଅହମିକା ଭରେ ବିଶାଳ ଯେ ବକ୍ଷ
ଫୁଲି ଉଠି ଉଡ଼ିବାକୁ ଚାହୁଁଥିଲା
ଭୂମଣ୍ଡଳ ଠଉଁ ଅନ୍ତରୀକ୍ଷଯାଏ
ଆଜି ସେଇ ଏକଛତ୍ର ପଣ
ପଡ଼ିଛି ଝିମାଇଁ,
ଜଣାଇ ହୁଏ ନା
ଶୀତାନ୍ତର ଜୀର୍ଣ୍ଣ ପତ୍ର ନିମ୍ନମୁଖୀ ଲକ୍ଷ୍ୟେଁ,
ଜଣେ ହେଲେ ନାହିଁ କେହି ଆହା କହିବାକୁ !!

ଏହି ନିକି ଭାଗ୍ୟ ବିପର୍ଯ୍ୟୟ !
ଚକ୍ରନେମୀ ଗଡ଼ିଯାଏ ତଳୁ ବିତଳକୁ
ଶକ୍ତି ବା ସାମର୍ଥ୍ୟ ନାହିଁ
ଏଡାଇବ ଅନ୍ତହୀନ ପତନ ପର୍ଯ୍ୟାୟ ।
ପଳ ପଳ କୃନ୍ତନର ମହା ଦାଉ ଯହିଁ
ଜୀବନକୁ କରିଯାଏ
ଭାରାକ୍ରାନ୍ତ ଅତିହିଁ ଦୁର୍ବହ ।
ଉସବ ବ୍ୟସନ ଥିଲା ଯାହା ଦିନେ
ଦେଉଛି ନିକ୍ଷେପି ବହୁ କାଳୁ
ଲାଜାଞ୍ଜଳି ପରି
ସର୍ବଭୁକ୍ ହୋମାଗ୍ନି ଗର୍ଭକୁ ।
କାହିଁ ଦିନେ
ପାଇଲି ନି ଶାନ୍ତି ବାତନର ମର୍ମ ।
ନ ହେଲା ବା ରାଜଦ୍ୱାରେ,
ଶ୍ମଶାନର ଶୀତଳ ଶୟନେ
କେ ଅଛି ବାନ୍ଧବ
ପାଖୁଶେ ମୋ ବସି
କରତଳ ସ୍ପର୍ଶେ
ବାହୁନି ବାହୁନି
ଭାଇ ପଟେ ଜଗାଇବ ଉଷ୍ମା ।



॥ ୧୦ ॥

## ପୁନରାବର୍ତ୍ତନ

(୧୯୭୫ ଅଗଷ୍ଟ ୧୮-୧୯ର ପ୍ରଳୟଙ୍କରୀ ବର୍ଷାକୁ ଲକ୍ଷ୍ୟ କରି)

ଶ୍ରାବଣ ଆସିକି ବାହୁଡ଼ି ଗଲାଣି
ଧାରା ଶ୍ରାବଣ ତ ଥିଲା ନି
ଲଗାଣ ବରଷା ଚାହିଁ ବସି ସବୁ
ଆଖି ପାଣି ତକ ମଲାଣି ।
xxxxxxxxxx
ଭୋଦୁଅ ଅଇଲା, ଚକିତେ ଘୋଟିଲା
ମାଳ ମାଳ ମେଘ ଆକାଶେ
ରାତିକ ମୁଷଳ ଧାରେ ଧରଣୀର
ଛାତି କମ୍ପି ଉଠେ ତରାସେ ।
ସକାଳ ବା ସଞ୍ଜ ବାରିହୁଏ ନାହିଁ
ଅମା ନିଶି ଜିଣି ଗହନ
ଘେରି ରହେ ଆଜି ଅସରା ତିମିର
ଲୟ ଅବା ଧାତା ସୃଜନ ।
ମହାସିନ୍ଧୁ ଯେତେ ଜଳରାଶି ତାର
ଗର୍ଭେ ରଖିଥିଲା ସମାଦି
କେଉଁ ବାଦ ସାଧି ମହୀମଣ୍ଡଳର
ଶିରେ ଦିଏ ସବୁ ଅଜାଡ଼ି ।
ଗୁରୁ ଗୁରୁ ଘୋଷେ ଉଛନ୍ନ ବରଷା
ନିଶି କର୍ଣ୍ଣେ ଶୁଭେ ଭୈରବୀ
ଛନକା ଆତୁର ନୟନ ପଲ୍ଲକେ
ତନ୍ଦ୍ରିମା ପାରେ ନି ସମ୍ଭବି ।
କାଲି ଥିଲା ଯାହା ଆତପ ସନ୍ତୁଳା
ନ ଥିଲା ଭିଜିବା ଇଙ୍ଗିତ

ନିଶାନ୍ତେ ହେଲାଣି ଜଳାର୍ଣ୍ଣବମୟ
ଭଉଁରୀ ଆବର୍ତ୍ତେ କୁପିତ ।
ସତେ ଏ ଧାରାର ଉପଶମ ନାହିଁ
ବାସ, ବିଲ, ବନ ପ୍ରାନ୍ତର
ଉଜାଡ଼ିବା ଲାଗି ସୁଅ ପଡ଼େ ଆଜି
ଖରୁଁ ଖରତର, ପ୍ରଖର
ନାହିଁ ଥଳକୂଳ, କିନାରା ନିଶାଣ
କେ ଦିଏ କାହାର ସନ୍ଧାନ
କି' ଦଶା ହେଲାଣି ନଦୀ ମାତୃକାର
କେ କହେ କେ ଶୁଣେ ବ୍ୟାଖ୍ୟାନ ।
ତୃଣ କେରିକରେ ବୁଡ଼ିଲା ଲୋକର
ଆଶ୍ରା- ବୋଲୁଥାନ୍ତି ସଂସାରେ
ଅହି ପୃଷ୍ଠେ ବି ସେ ଆତଙ୍କ ଗଣେ ନା
ସ୍ରୋତର ଦାରୁଣ ପ୍ରହାରେ ।
ପ୍ରଳୟର ଆଦି ସୂଚନା ଏ ନା କି
ନାହିଁ ଭୟ, ଭୀତି ସଞ୍ଚାର
କାହିଁ ସ୍ଥିତି ଲୟ ବାଛ ବିଚରଣା
ଏଇ ବା ଅନ୍ତିମ ସଂହାର ।
ଅଭିଶାପ ରୂପୀ ଆଦି ଇତିହାସ
ଫେରି ଆସେ ଅବା ମରତେ
କେ କହେ ଏ ନୁହେ, ନୀହାରିକା ସୃଷ୍ଟି
ଚେତନା ବି ହଜେ ନିସତେ ।



॥ ୧୧ ॥

## ମହାନଦୀ

ତୁମେ ନିମ୍ନଗା
ତଳ ମାଳ ରାଇଜର କେତେ ତଳ ଯାଏ

ତୁମ ସଞ୍ଚରଣ ତୁମେଇ ଜାଣନା କହିବି ହୁଏ ନା ।
ମହୋଦଧିର ମାଳ ମାଳ କେତେ ଯେ ଭ୍ରୁକୁଟୀ
କେଜାଣି କେମିତି
ଗର୍ଭାଳସୀ ଦେଖି ତୁମକୁ ବା
ଭାବି ଥିଲା ଶାନ୍ତ, ସ୍ନିଗ୍ଧ ।
ବିଷଦନ୍ତ ହୀନ ପରି ନମ୍ର ଓ ଉଦାର ।
ତୁମକୁ ହୁଏ ତ ଦେଇଯିବା ଲାଗି
ଅନାବିଳ ସୌଭାଗ୍ୟର ପ୍ରଭାତୀ ଆସ୍ୱାଦ-
ଆଦ୍ୟ ପ୍ରସ୍ତୁତିର–
ଦୀର୍ଘ ପଥଶ୍ରାନ୍ତ ଆଉ ଅନୁକ୍ଷଣ ପ୍ରତୀକ୍ଷାର
ପୂର୍ଣ୍ଣାହୁତି ଅନ୍ତେ ।
ଦୂର ଦୂରାନ୍ତରୁ କେତେ ଗିରିଦରୀ ଭେଦି
ତୁମେ ଯା ଆସିଲ, ଆସିଲ ଭଲଇ ତ କଲ;
ନିର୍ମମ କଠିନ କେତେ ଯେ ପାଷାଣ ହିଆ
ହୋଇ ନାହିଁ ଚୂର୍ଣ୍ଣ ବିଚୂର୍ଣ୍ଣିତ
ତୁମ ପଥପ୍ରାନ୍ତେ ଚନ୍ଦନ ପଙ୍କହୁଁ ବଳି
ତାର ଦିନଲିପି ରଖିଛ କି କେବେ,
ନା ସେ ଭାର ଦେଇଛ ନିର୍ବିକାରେ ଅର୍ପି
ଚିତ୍ରଗୁପ୍ତ ପାଞ୍ଜିକାର ହାତେ ?
ଶୈଳ ସଙ୍କଟାଳି ଅବରୋଧ ଯେତେ
ଉଦ୍‌ଭିନ୍ନ ଯୌବନା ତବ ପାଦତଳେ
ନିବେଦିଛି ପ୍ରଣତି ପ୍ରସରା ।
ତୁମ ଜଳ ଦୁର୍ଗ, ଏକାନ୍ତ ଦୁର୍ଗମ, ସପ୍ତାଧିକ କ୍ରୋଶ ପରିବ୍ୟାପ୍ତି;
ଜଳ ଦେବୀଙ୍କର କେଳି ସନ୍ତରଣ ସ୍ପୃହା
ଏଥି କେବେ ଲଭିନାହିଁ ତୃପ୍ତି,
ଯେହ୍ନେ ନିରନ୍ତରୀ ।
ବେଳି ପାର୍ଶ୍ୱେ ବାହୁ ବନ୍ଧେ ଛନ୍ଦାଛନ୍ଦି
କେଉଁ ଯୁଗୁଁ ଛିଡ଼ା ପାଷାଣ ପ୍ରାଚୀର ବଜ୍ର ସମ ଦୃଢ଼
ଆତ୍ମ ଅହଙ୍କାରେ ସଦା ଊର୍ଦ୍ଧ୍ୱମୁଖୀ

ଅରୁଣଙ୍କ ରଥ ଅଶ୍ୱ ଗତି
ଏ ଗିରି ଶିଖରେ ଶିଥିଳିତ ହେଉଁ
ଜଳ ଆସ୍ତରଣେ,
ଅବତରେ ଗୋଧୂଳି ସ୍ନିଗ୍ଧିମା
ଦିବା ଦ୍ୱିପ୍ରହରେ ।
ଭଙ୍ଗା ଗଢ଼ା ତୁମରି ଭିଆଣ,
ଇତିହାସ ବିରଚି ଯାଇଛି ତୁମ ଖିଆଲୀ ପ୍ରବୃତ୍ତି ।
ପୁଣି କାହା ପ୍ରରୋଚନେ
ଏକ ପରା ବିଦ୍ୟା
ଗର୍ଭାଶୟେ ଭରି ଅପରାର ପୁଷ୍ଟି ସାଧିବାରେ
ଲଗାଇ ଯାଇଛ ନୀହାରିକାମୟ ଲୀଳାର କୁହୁକ
ମାୟା ପରି ଅବୋଧ ନିରତ ।
ଏମିତି କେତେ ନା କେତେ
ଜଣା ଅଜଣାର କୌତୁକ ସବୁକୁ ନେଇ
ସଞ୍ଚ ରଖି ଥାଅ ଆପଣାର ନିଭୃତ ଗନ୍ତା ଘରେ
ସେଇ ପୁଞ୍ଜୀକୃତ ଉତ୍ପାଦିକା ଶକ୍ତି
ମାତୃ ଅଭିମାନିନୀର ଦର୍ପେ
ଟାଳି ଦେଲ ମହାବାରିଧିର
ପ୍ରସାରିତ ନୀଳୋର୍ମି ଉଚ୍ଛଳ
ବାହୁଛାୟା ତଳେ– ଗତାଶଙ୍କ କାଳାନ୍ତକଯାଏ ।
ଯା ଘେନି ତ୍ରିପଥଗା ବୋଲି
ଗୌରବାଧିକ୍ୟର ତୁମ ନ ଥିଲେ ନ ଥାଉ
ତୁମେ ହେଲ ତ୍ରିକୋଣୀ ଏ ଭୂଭାଗର
ଜାତ ବିଧାୟିନୀ, ପରମ ପୂଜ୍ୟା ପ୍ରହୃଷ୍ଟା ଜନନୀ ।
କରେ ତୁମ ଶ୍ୟାମ ଶସ୍ୟଗୁଚ୍ଛ
ନ ମାଗୁଣୁ କରିଯାଏ ବ୍ୟଜନ ଚାଳନା
ଧାନ କ୍ଷେତେ କ୍ଷେତେ,
ଢେଉ ଖେଳି ବୁଲେ ବେଳାଭୂମି ଯାଏ,
ତମାଳ ତାଳୀ ବନର

କବି ମନ ମନୋହାରୀ ନୀଳିମ ଲାବଣ୍ୟ ।
ତୁମ ଦୀର୍ଘ କୁନ୍ତଳ ଗଭୀର
ଶିରୀ ଚୋରି କରି ଆଣିଥିବା ଆଉ
ଉଡ଼ାଇଛି ଯାହା ତୁମ କୀର୍ତ୍ତିଧ୍ୱଜା
ନୀଳାକାଶ ଛୁଇଁ ।
ଯଶ କାଙ୍ଗାଳିନୀ
କେବେ ତୁମେ ହୋଇ ରହିଥିଲ ବୋଲି
ନ ନିନ୍ଦିବେ ତୁମ ଜାତ ଶତ୍ରୁ—
ତୁମେ ତ ଅଜାତ ଶତ୍ରୁ ସବୁଦିନେ—
ତଥାପି ସେ କ୍ଷୁଦ୍ର ସିପ୍ରା ସ୍ରୋତ
ଯଦି ବିଖ୍ୟାତ ଜଗତେ,
ଆଉ ମହାନଦୀ ହୋଇ ତୁମ ନାମ ଯଦି
ରହିଯାଏ ଗୁପ୍ତ,
ତୁମେ ଦିନେ ତୁମ ଆଖି କରିନାହଁ
ଈର୍ଷା କଟୁ ଲୋତକେ କୁପିତ ।
ତଥାପି ନୀରବ ରହି ପାରି ନାହିଁ
ଚାରଣର ବୀଣା ।
କେବେ ଯଦି ସିଏ ଗାଇ ଉଠିଥିଲା
ଏଇ ନଦୀ ବକ୍ଷେ
ନର୍ମ ସହଚର ମେଳେ ଜ୍ୟୋସ୍ନା ପୁଲକିତ
ନୌବିହାର ଗୀତି,
ସେଇଠେଇଁ ସେଇ ବୀଣା ପରେ
ଅକସ୍ମାତ ଶୁଣିବାକୁ ହେଲା ।
ଅନ୍ୟ ଏକ ଭୈରବୀ ରାଗର
ତାଣ୍ଡବ ସ୍ଫୁରଣ-
ଦୁରନ୍ତ ଉତ୍କଳ ପରିପନ୍ଥୀ ପାଇଁ
ଯୁଗକେ ବା କେବେ କାହିଁ କେତେ ଯୁଗେ
ଉର୍ଜ୍ଜସ୍ୱଳ କେଶରୀର ମହାରୁଦ୍ର ମୂର୍ତ୍ତି
ଫୁଟି ଉଠି ପ୍ରଳୟ ସଙ୍କାଶ

ସର୍ଜି ଯାଇଥିବା ମହାଧ୍ୱଂସ ଲୀଳା—
ସେଭ ଦିନ ଗୋ ମହାତଟିନୀ ରୋଷକଷାୟିନୀ,
'ମହାନଦୀ' ନାମ ତବ
ଥିବ ନାହିଁ ଗୋପ୍ୟ ଅବା ଗୁପ୍ତ
ପର ଖ୍ୟାତି ଅସହନ
ଜଗତ ସମକ୍ଷେ ।



॥ ୧ ॥

# ଆଶାୟୀ

ମୋ ଦିନ କିମିତି ଯାଏ
　　ବୁଝି ମୁଁ ପାରେ ନା
ରାଗରଞ୍ଜ ପ୍ରଦୋଷ ବି ଆସେ
　　କ୍ଷୀଣାଲୋକ ଧାର କ୍ରମେ ମିଳାଇ ଯାଏ କିମିତି
　　ଘେରି ଆସୁଥିବା ସାନ୍ଧ୍ୟ ଅନ୍ଧକାରେ ।
　　ଭକ୍ତିମତୀ କୁଳବଧୂ ଯେଉଁ ପ୍ରଦୀପ ଜଳାନ୍ତି
ଗଳବସ୍ତ୍ରେ, ତାକୁ ଉପହାସ କରି
ଗୋଟିକ ପରେ ଗୋଟିଏ ହୋଇ ଜଳି ଉଠେ
ଶତ ଶତ ସହସ୍ର ବା କୋଟି କୋଟି ତାରା
ଅଗଣିତ, ଅସରନ୍ତି— ଅତନ୍ଦ୍ରିତ ଅତୀନ୍ଦ୍ରିୟ
ମହାଯୋଗୀ ସମ ।
　　କାହିଁ ତାଙ୍କଠି ତ ନାହିଁ କ୍ଳାନ୍ତି
ମୁଁ କି ତେବେ ସତେ ଏଡ଼େ ହେଁ ଅଶକ୍ତ ?
ଅଶାନ୍ତ ହିଆରେ ମୋର କିସ ଏ ଚମକ ।
ପରିଶ୍ରାନ୍ତ ଶିଶୁ ପରି
　　ଢୁଳାଇ ପଡେ ମୁଁ
ଅର୍ଦ୍ଧଜାଗରିତ ତନ୍ଦ୍ରାବେଶେ, ସୁପ୍ତି ଆସେ ନାହିଁ
କିମାଶ୍ଚର୍ଯ୍ୟ ହାୟ ।
　　ଦୂରେ କେତେ ଦୂରେ ହରିତାଳିକାର
ରାଜବର୍ତ୍ମ ପଡ଼ିଛି ଏହି ଯେ
ମୋ ଲାଗି ତ ନୁହେ— କାହା ଆଗମନ ଇଚ୍ଛି
　　ବିଛା ଶୁଭ୍ର ଫେନାୟିତ ତୂଳୀ ତଳ୍ପ
ପହଣ୍ଡି ବିଜେ କାହାର ସମାରୋହ ପାଇଁ
ଆଦୁଁ ପ୍ରାତ ଯାଏ ସାରା ସାରଣୀଟି
　　ଏଣେ ଜ୍ୟୋତ୍ସ୍ନା-ପାୟୀ
ଚକୋରୀର ଆତ୍ମହରା ବିଭୋରିତା,
ଆକୁଳିତ କରେ ଦୂରାନ୍ତରୀ

ମୌନାମୟୀ କ୍ରନ୍ଦସୀ ବଧୂକୁ ।
ଏତେ ଅଛି ଦେଖିବାର
ଉପଭୋଗ ଲାଗି କେତେ ଅବା ନାହିଁ
ଚଉଦିଗ ଭରି ରାଶି ରାଶି
ଉପଚାର ! କାହିଁ କାହିଁରେ ତ ମୁହିଁ
ପାଇଲନି ତିଳେ ହେଲେ ସ୍ୱସ୍ତି !
ସେ କି ତେବେ କେହି ଉଦାସୀନ ଆନ ଜନପାଇଁ ?
ମୋହ ପାଇଁ କେବଳ ଏ ମରୁମରୀଚିକା !
ମୋ ଆଖି ଆଗରୁ
ନାଚି ନାଚି ଚାଲି ଯାଉଥିବ
ଆଖି ତଳେ ଥାଇ ମଧ
ଦୂରୁଁ ଦୂର, ଆହୁରି ଦୂରକୁ ?
ତାହାରି ଝଲକ,
ଅଲଭ୍ୟ ଯେସନ ମାୟା;
ଅଥବା ଏ ଇନ୍ଦ୍ରଜାଲ
ଶୂନ୍ୟଦେହୀ ଖାଲି ନିରାଶାର !!!
ହେ ମୋର ପରମ ଦେବତା ମୋ, ଶିରେ
ଢାଳି ଦେବା ଲାଗି
ଯାଲି ଯେଉଁ ତବ ପରିପୂର୍ଣ୍ଣ ଆଶିଷ କଳସ
ହାତ ତୋଳି ଧରିଥିଲ, ତହୁଁ ତେବେ
କଣିକାଏ ପାଇବା ଲାଗିକି
ନାହିଁ ମୋର ପୂର୍ବ ତପୋଭାଗ୍ୟ ?
ବହୁ ବହୁ ନୈରାଶ୍ୟରେ ଜର୍ଜରିତ ମୁହିଁ
ତଥାପି ଆଶାୟୀ ନିରନ୍ତର ।
ତୁମରି ଜ୍ୟୋତିରାଲୋକ,
ଆଗୋ କାରୁଣିକ
ଦେଖାଇବ ବୋଲି ମୋତେ ପଥ
ଘନ ଘୋର ନିବିଡ଼ ତିମିରେ ।

■■

॥ ୨ ॥

# ମୋ ଗାଆଁ

ଏଇ ମୋ ଜନମ ମାଟି
ଏଥି୍ ମୋର ପ୍ରଥମ ଧରଣୀ ସ୍ପର୍ଶେ
ହସାଇ ମୁଁ ପାରିଥିଲି ସମଗ୍ର ଗାଆଁକି
ଦିଗହରା ଆତ୍ମହରା ମୋର ସେଇ
ରୋଦନର ରୋଳେ ।
କେତେ ଯୁଗ ଗଲା ପରି
ସେ ଦିନଠୁଁ ଲାଗେ ମୋତେ; ଆଜି
ସବୁ ଯେହ୍ନେ ମୋର ଚଉକତି
ପଡ଼ି ରହେ ଶିଥିଳ ଓ ଘୋର ବିଶୃଙ୍ଖଳ
ମୋତିମାଳା ଯାହା ଏକ ସୂତ୍ରେ
ଥିଲା ଗୁନ୍ଥା ଅବିଚ୍ଛିନ୍ନ ଏକକ ପ୍ରାୟେକ
ଗ୍ରନ୍ଥନର ସେ ନୈପୁଣ୍ୟ ସେ ସୂଚୀ କୌଶଳ
ଛିନ୍ନ ବିପର୍ଯ୍ୟସ୍ତ ।
ସବୁମୋତି ଟକ ଗୋଟି ଗୋଟି
ଇତସ୍ତତଃ,
ପଡ଼ିଛି ନିର୍ମମ ଅନାଦର ଆଉ ଅବଜ୍ଞାରେ ।
ସଖା ସହୋଦର ସମ
ମୋ ପ୍ରତିବେଶୀ ଏ, ସମ୍ପଦେ ବିପଦେ
ଆସି ମୋତେ ଅଯାଚିତେ ଦେଇଥିଲେ ବାଢ
ଯେଉଁ ସାହଚର୍ଯ୍ୟ, ଯେତେକ ମମତା,
ସେ ସବୁର ମାୟାସ୍ୱର୍ଗ ହଜିଯାଏ
ଆଜି ଦିନ ଅବସାନେ ।
ଲୋଡ଼ିଲେ ପାଏ ନା ଖୋଜି ବିସ୍ମୃତି ଗର୍ଭରୁଁ ।
ଆଉ ଯେ ମୋ ଥିଲେ ଅଭିନ୍ନାଙ୍ଗ
ଏକଇ ଜଠରୁ ଜାତ, ସେ ବି ହୁଅନ୍ତି ଉଦ୍ଦଣ୍ଡ.

ଭଗାରିଠୁଁ ବଳି ଯଥା । ଅବା ଯିଏ
ଏକୋଦର ଏକ ଅନ୍ନ ଭୋକ୍ତୀ
ସିଏ ଛାୟା ସୁଦ୍ଧା ଏଡାଇ ଯାଆନ୍ତି
ଯେହ୍ନେ ସେ ଛାୟାରେ ମୋର
ଅଛି ମହାଘୋର ବ୍ୟାଧି ସଂକ୍ରମଣ ।
ଆଜି ମୁଁ ଦେଖୁଛି ଆସି
ଏଇ ମୋର ମାଟି ମାଆ କୋଳେ,
ମୋର ବୋଲି ଯାହା, କାଲି କି ତା ନୁହେ
ମୋର ବୋଲିବାରେ ପୁଣି ।
କେଇଟା ଦିନରେ ଦେଖୁଛି ମୁଁ
ମୋର ଚଳାପଥଟିକ
ସବୁଦିନ ପାଇଁ ହେଲାଣି ସେ
        ପର କରଗତ
ଏଇ କି ସତେ ମୋ ଗାଆଁ ?
ସତେ ତେବେ ମୁହିଁ ନିଃସ୍ୱ ଅନାୟତ୍ତ !!
ପରମ ପବିତ୍ର ବୋଲି ଏଇ ଗାଆଁରେ ମୋ
        ଥିଲା ଦିନେ ପୁଣ୍ୟ ପୀଠ ଯାହା,
ପୁଣ୍ୟ ପିପାସୀଏ ଆସି ଯହିଁ
ହେଉ ଥିଲେ ଭ୍ରୁଣ ଦିନ ଦିନ ଧରି
ଶୀତ କାକରର ଜାଡ଼ିମା ନ ମାନି,
ଗ୍ରୀଷ୍ମର ଖଇଫୁଟା ଖରାର ବିଭୂତି
ଏ ଦାଣ୍ଡର ଧୂଳି ଘିନି ତାହା
ରଚୁଥିଲେ ମହାଭକ୍ତି ଭରେ କପାଳେ ତିଳକ ।
ଆଜି ହାୟ ! ଦେବାର୍ଚ୍ଚନ ଅର୍ଥେ
ଚିନାଏକ ମାଟି ନେଇ ନାହିଁ ପାରେ କେହି ଏଥୁଁ ।
ଘେନି ଗଲେ ତାହା ହେବ ଅକ୍ଷମ୍ୟ ଦ୍ରୋହିତା ।
ହେଉ ସେ ନିର୍ଦ୍ଦୋଷ ନିରୀହ ନ ଜାଣିଲା ଜନ
        ସେ ଯେ ପରସ୍ୱାପହାରୀ ।
ନିଃସଙ୍ଗ ମୁଁ ଆଜି

ସବୁ ଦେଖେ, ସବୁ ଶୁଣେ
ଗାଆଁ ସୁଖ ଦୁଃଖେ ଭାଗୀ ହେବାପାଇଁ
ଇଚ୍ଛିଲେ ବି ଏଠି ମୁଁ ଇତର
ଏତେ ନିଃସହାୟ
ଆଉ—
ମୁଁ ଏ ଧରାଧାମେ ଦୁଇଦିନ ପାଇଁ
ଆସିଥିଲି । ମୋର ମର୍ତ୍ତ୍ୟ ଅଧିବାସ
ସେ ବା ଆଉ କେଇଟା ମୁହୂର୍ତ୍ତ ।
ମାଟି ମାଆ ବୋଲି
ପାରିଲେ ତା କୋଳେ ରଚି ମୋ ଅନ୍ତିମ ଶଯ୍ୟା
ତୀର୍ଥବାସ ଅଭିଳାଷ ସଫଳ ମୋ ସେହି ।
ତେବେ—
ମିଳିବ ତ ଗତାସୁର ଲାଗି
ଏଇ ପିଣ୍ଡ ପରିମିତ ଭୂମି ।
ସଭିଏଁ ଏଥି ଯେ କ୍ଷୁଦ୍ରସର୍ପ
ଆଉ ଶିଶୁ ହେଲେ ବି ତ କ୍ଷୁଦ୍ରସର୍ପ
ବିଷ ଯାର ସବୁଠୁଁ ଉତ୍କଟ ।



॥ ୩ ॥

## ପ୍ରଳୟ ପ୍ଳାବନ

ଏଇ ଥିଲ ଏଇ ନାହିଁ, ଏ କି ବିଡମ୍ବନା
ଏଇ ଯେ ଶୁଣିଲା ପରି ଲାଗେ ପୁରାଙ୍ଗନୁଁ ସେ କଣ୍ଠ ମୂର୍ଚ୍ଛନା
ସେ କି ମିଥ୍ୟା ! କ୍ଷଣକର ପାଇଁ
ପଡ଼ିଥିଲି ସିନା ମୁହିଁ ଅଳପ ଝିମାଇଁ
ଉଠି ଦେଖେଁ କୁଟୀର ମୋ ଖାଲି, ଉନ୍ମୁକ୍ତ ଦୁଆର
ପଦ ଚିହ୍ନ ପଡ଼ିଛି ତ କେବଳ ଯିବାର ।
ନିଶ୍ଚିହ୍ନ ଆସିବା ପଥ— କହନ୍ତି ଯେ କେଯିବା ପରତେ
ଦୁରନ୍ତ ପ୍ରତୀକ୍ଷା ମୋର ଶୂନ୍ୟାଶ୍ରୟୀ ସତେ ।

ଚରଣ ନୂପୁର ଧ୍ୱନି ଶୁଣାଇବା ଲାଗି
ଆଜି ତେବେ ଏ କାର୍ପଣ୍ୟ ?
ମୁଁ ତ ନିତ୍ୟ ଅନୁରାଗୀ
ଜାଣ ତୁମେ ତେବେ କେଉଁ ଅପରାଧ ଦେଖି
କହି ନାହିଁ ପଦେ କଥା, ଯାଅ ଏତେ ନିର୍ମମେ ଉପେକ୍ଷି ।
ଏଇତ ଏ ଗୃହାଙ୍ଗନ ଭାଗେ
ଅଳକ୍ତକ ରାଗ ରଙ୍ଗ । ଲଘୁ ପଦପାତ
ହେଲା ପରି ଲାଗେ
ପୁର ପ୍ରାଚୀର ବି ଦେଖେ କେବଳ ନୀରବେ,
ଏଇ ବାୟୁ ତୁମରି ସେ ଅଙ୍ଗ ସଉରଭେ,
ତୁମରି କବରୀ ଗନ୍ଧ ଭାରେ ଆମୋଦିତ,
ଅନୁଷଙ୍ଗୀ ପରି ଗାଇ ବୁଲେ
ତୁମ କଣ୍ଠୁଁ ନ ସ୍ଫୁରିଲା ଗୀତ;
କେମନ୍ତେ କହିବି କହ, ନାହିଁ ତୁମେ,
ଏତିକି ରେ ଲୀଳା ଖେଳା ସରିଲା କି ତବ ମର୍ତ୍ତ୍ୟ ଭୂମେ ?
ଏବେ ବି ତ ତୁମ କର କଙ୍କଣ ନିକ୍ୱଣେ
ରଣିତ ମୋ ଶ୍ରୁତିପଟ, ଆନମନେ
ଦିନେ କେବେ ଜାଣେନା ମୁଁ ନ ଶୁଣିଲା ଭାବେ
ଏଡାଇ ଯାଉଛ ବୋଲି ମୋ ଆହ୍ୱାନେ
ଆଜି ବି ତ ତହିଁ
ଦେଖଇଁ ବେନିର ମଧ୍ୟେ ସେହି ଏକକ ହିଁ
ଥିଲା ତବ କାମ୍ୟ, ଦେବାଶିଷ ପରି,
ଜଣକର ଆନଠାରେ ହଜାଇ ବସିବା ସୁଖାନନ୍ଦ ସରି,
ଜୀବନର ପରମ ବୈଭବ ।
ଆହୁରି ରଖିବା ନିଧି– ଯାଏ ନା ଭୁଲାଇ
ନିର୍ମାଲ୍ୟ ଗୌରବ
ପଚାରିଛି ତୁମକୁ ମୁଁ କେତେ କେତେ ଥର
'ଅଭିମାନ କାହିଁ ଗୋ ତୁମର'
ଉତ୍ତର ପାଇନି କେବେ, ଦେଖିଅଛି ମୃଦୁହାସେ

ଅକପଟ ଆତ୍ମୋତ୍ସର୍ଗ ଅତି ଅନାୟାସେ ।
ତେଣୁ ପରା ଗୋ ମାନିନୀ
ଅବହେଳେ ମୋ ପୌରୁଷ ଦମ୍ଭ ମାନ ଜିଣି
ଉଡାଇ ଯାଅ ଯେ ନୂଆ ଶିଖରର
ଅଭିମାନ ଧ୍ୱଜା
ସେମିତି ମଉନ ରହି ସେଇ ପରାଭବ ଲଜ୍ଜା
ସହନ ଯାଏ ନା– ପାରନା କି ବୁଝି ?
ତବ ଦେଲା ଦାନ ସବୁ କହ ଗୋ କେମନ୍ତେ
ପାରିବି ମୁଁ ଶୁଝି ।
ତାହେଁନା ମୁଁ ଆଜି ଆଉ ସେ ପ୍ରଶ୍ନ ଉତ୍ତର
ନାହେଁ ଖାଲି ଦେବତା ବାଞ୍ଛିତ ସୁଖ ସ୍ପର୍ଶ ସାନ୍ନିଧ ତୁମର
ଅନ୍ୟ ପୁରୁଁ ଆସି ଅଛି ବୋଲି
ଉତ୍ସବର ଡାକ
ଅନାଦରେ ଠେଲି ଯାଅ ଏ ସଂସାର
ପ୍ରସାଧନଯାକ ।
କମଳିନୀ କୋଠ ଭଣ୍ଡାରେ ସେଠିକି
ରଖିଛନ୍ତି ବାଛି ନୂଆ ଆଭରଣ ତୁମରି ପାଇଁକି ?
ତେବେକେ ତ ସୀମନ୍ତ ସିନ୍ଦୂରେ
ଝଳି ଉଠେ ବଦନ ମଣ୍ଡଳ ।
ନବୋଦିତ ଭାନୁ ପ୍ରଭାପୂରେ
ପ୍ରଭାବିତ କରି ସର୍ବମୟ ଉଦୟ ଅଚଳ,
କିଏ କହେ ମଉଳିଛି ସୌର ଦୀପ୍ତି
ନିଷ୍ଫଳ ମୋ ବାହୁନା ବିକଳ ?
ଅଦୂରେ ମୋ ଧାନ୍ୟ କ୍ଷେତେ ଆଜି
ସ୍ୱର୍ଣ୍ଣ ଶସ୍ୟ ରାଶି ରାଶି ପଡୁଛି ଯେ ଭାଜି
କୁଳ ବଧୂ ତୁମେ, ନ ନେଲେ ବନ୍ଦାଇ ଆଗ
କରେ ଘେନି ଅର୍ଘ୍ୟ ଥାଳି,
କିପରି ଥାପନା ହେବ, କହ ଫେଇ, ସେଇ ପକ୍ୱଶାଳୀ ।
ତୁମେ ଯଦି ଆଜି ଅଶରୀରୀ

ଲୋଡ଼ା ନାହିଁ ମୋର ଏ ଐଶ୍ୱର୍ଯ୍ୟ
ଏ ସମ୍ପଦ ଶିରୀ
ହେଉ ଆଉ ଉଜାଡ଼ ସେ
ସେଇ ଶସ୍ୟ କ୍ଷେତ୍ରେ
ହାହାକାରେ ଭରୁ ଲକ୍ଷ୍ମୀହୀନା ପୁରୀ ।
ଏ ମୋ ନେତ୍ରେ
ଘେରି ଆସୁ ଅସରନ୍ତି ନିରାଲୋକ
ତମିସ୍ରାଧିକାର
ପ୍ରଳୟ ପ୍ଲାବନେ ଆଉ ଏଥି
ମୁଁ ନୁହେ କାହାର ।

■■

॥ ୪ ॥

## ନଗରୀଶ୍ରୁ ଦିଲ୍ଲୀ

ନାହିଁ ରାଜା ନାହିଁ ରାଜେଶ୍ୱର, ଅଛି ରାଜଧାନୀ
ନ ଥିଲା ଅତୀତେ ଝୁରେ ଏଇ ବର୍ତ୍ତମାନ
କାରୁଣ୍ୟେ କମାଇ ଝଇଁସ୍ୱନେ ଦିଗ ଓ ଦିଗନ୍ତ ।
ପୁଣ୍ୟନୀରା ଏ ଯମୁନା ଗାଇ ବୁଲେ
କାହାର କାହାଣୀ
ନୀଳ ଜଳ ବେଣୀ ଧାରେ, କଲ୍ଲୋଳେ କଲ୍ଲୋଳେ ।
ପୁଣି କୋଳେ ଘେନି ଲାଲ କିଲ୍ଲା ପ୍ରତିବିମ୍ବ,
ଯାହାଅଛି ତାକୁଇ ଜାବୁଡ଼ି
ରଙ୍କ ରତ୍ନ ପରି;
ଯେଣୁ ଏହିପରି କେତେ ଶତ ରାଜପୁରୀ
ରାଜାର ବିଭବ,
ବିଲୀନ ହୋଇଛି ସ୍ମୃତି ତୀର୍ଥେ ସବୁ
ପାଇନି ସମାଦି ।
ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା–
ବିରାଟ ଏ ଅହଂକାର, ଜାଣିଥିଲା କେ ବା,

ଲୋଟି ପଡ଼ି ଭୂମିତଳେ ଦୁଇଦିନ ଅନ୍ତେ
କରି ବସିବ ଏମନ୍ତେ ନିଦାରୁଣ ଉପହାସ
ଆପେ ଆପଣାକୁ ।
ପ୍ରତିଧ୍ୱନି ସୁଦ୍ଧା ଥିବ ନାହିଁ
ଦେବାକୁ ଉତ୍ତର
ଅନ୍ତର୍ଦାହୀ ଏ ଦୁଃଖାନଳର ।
ରାଜଧାନୀ ?
   ନାହିଁ ରାଜା
ନ ଥାଉଣୁ ରାଜ ଅଧିଷ୍ଠାନ,
ଅବା ରାଜ ସିଂହାସନ, ବୋଲାଏ ଯେ ରାଜଧାନୀ
   ତୀବ୍ର ବିଡମ୍ବନା ସିନା ।
ସୃଷ୍ଟିର ଅନାଦି କାଳୁଁ କେବେ
ସୃଜନ ସୌଷ୍ଠବ ନିରେଖିବା ଲାଗି ଅବା
   ଶ୍ୱାପଦ ସଙ୍କୁଳ ଘନ ଅରଣ୍ୟାନୀ
ଅଭ୍ୟନ୍ତରେ ମଧ
ଦେଖାଇଲେ ସ୍ରଷ୍ଟା ଆମର ଏ ମାନବଠି
ରାଜ୍ୟ ଅଭିଷେକ ସ୍ପୃହା କେତେ ଊର୍ଦ୍ଧ୍ୱମୁଖୀ ସ୍ୱତଃ ।
ଯମୁନାର ଏଇ ତୀର ଭୂମେ
   ଏଇ ଠାବେ
ଐଶ୍ୱର୍ଯ୍ୟର ବିପୁଳ ସମ୍ଭାର
   ସମ୍ଭବିଛି,
କୁବେର ଭଣ୍ଡାର ନିନ୍ଦି ବିଭବ ପ୍ରାଚୁର୍ଯ୍ୟ;
କୁହାଇଛି ଲୋକ ମୁଖେ
'ନଗରୀଷୁ ଦିଲ୍ଲୀ' ବୋଲି
ଯୁଗାନ୍ତ ପ୍ରସିଦ୍ଧି ।
ସେ ଦିନୁ ଗଲାଣି କେତେ କେତେ
ସମ୍ବତ୍ସର କେତେ କାଳ ବିତି,
କେତେ ମହୀପତି, ମହା ମହିମାରେ ଦୃପ୍ତ
କୁଳଶୀଳ ଶୌର୍ଯ୍ୟ ବୀର୍ଯ୍ୟ ମହାଅଭିମାନୀ ରାଜ ଚକ୍ରବର୍ତ୍ତୀ

ଏଇ ସରିତର ସ୍ରୋତେ ବୁଦ୍ ବୁଦ ପରାୟେ
ଭଜିଲେଣି ଲୟ–
କେ କରିଛି ଲେଖା ।
ଏଠି ସୃଷ୍ଟି ଏଠି ସ୍ଥିତି, ପୁଣି ଏଇଠି ତ
  ଉଦ୍ଦଣ୍ଡ ତାଣ୍ଡବ, ଆଉ
ଧ୍ୱଂସଲୀଳା ବିଭୀଷିକା, ଖଣ୍ଡ ପ୍ରଳୟର ।
କାଳ ବଳେ ଆଜି ଧ୍ୱସ୍ତ ଇନ୍ଦ୍ରପ୍ରସ୍ଥ ପୁରୀ,
ସ୍ମୃତି ଲୋତେ, ପ୍ରତି ଲୋମେ ଉଠି
ଲୁପ୍ତ ରତ୍ନ– ଇତିବୃତ୍ତ- କରିବ ଉଦ୍ଧାର;
କିନ୍ତୁ ବୁଡ଼ିଯାଏ ଅନ୍ଧାର କୋଳରେ କାହିଁ
  ନରର ଅସ୍ମିତା ହାୟ ।
କେବଳ ତା ନାମାଙ୍କନେ
ପବିତ୍ରିତ ଧୂଳି ବାଲି ପଟଳେ ପଟଳେ
ବୋଲାଏ ଏ ତୀର୍ଥପୀଠ, ନିରାଲୟ ଅନୁସନ୍ଧିତ୍ସୁର
ଭାଇ ଭାଇ ମଧ୍ୟେ ବିବାଦ ଉପୁଜି
ମହାକ୍ଷାତ୍ର ତେଜୋରାଶି ସାରା ଭାରତର
ମାତ୍ର କେଇ ଦିନେ କରି ଯିବ
  ଭସ୍ମ ଅବଶେଷ
କୁରୁକ୍ଷେତ୍ର ପରି ମହାହବେ ।
କିଏ ଦେବ କହି ଭିତ୍ତି ପତନ ତା ଘଟିଥିଲା
କାହିଁ, ଇନ୍ଦ୍ରପ୍ରସ୍ଥ ନଗରେ ନା ବାରଣାବତରେ,
ଅବା ହସ୍ତିନାପୁରୀର ଅସଂଯତ ରାଜ ସଭାତଳେ,
ଯହିଁ କୁଳ ଭୁଆସୁଣୀ ପାଞ୍ଚାଳୀ ବଧୂର
ପ୍ରଳମ୍ବ କୁନ୍ତଳ ଦାମ
ଦୀର୍ଘ ଦ୍ୱାଦଶ ବରଷଠାରୁ ବି ଅଧିକ
ରହିଲା ମୁକୁଳା ।
କାହିଁ, ପ୍ରତ୍ୟୁତ୍ତର ଦେବା ଲାଗି
ଲାଗେ ତ୍ରାସ ପ୍ରତିଧ୍ୱନିକୁ ବି ।
କାଳାନ୍ତରେ ଧର୍ମ ରାଜ୍ୟେ

ଉଭା ହେଲେ କେତେ ଧର୍ମୀ, ସହଧର୍ମୀ
ଅବା ଧର୍ମଧ୍ୱଜୀ । ଧର୍ମ ନାମେ
ସସାଗରା ଧରା ପଦାନତ କରିବାର ସ୍ୱର୍ଦ୍ଧିତ ଲାଳସା
ଅଧିକରୁ ଅଧିକରେ ହେଲାକ ପ୍ରବଳ ।
  ସେ ବି ଯାଇଅଛି ଲୁଚି ।
ନାହିଁ ରାଜା, ରାଜପଣ
ଯୁବରାଜ, ରାଜଜେମା ରାଜବଧୂ ହେଲେଣି ସ୍ୱପନ ।
କିନ୍ତୁ,
ଅଛି ରାଜଧାନୀ, ଅଛି ରାଜପଥ
ଅଛନ୍ତି ରାଜପୁରୁଷ । ରାଜ ଦରବାରେ
ମହା ସମାରୋହେ, ଆଜି ଆହୁରି ସମ୍ଭ୍ରମେ
ବନ୍ଧାହୁଏ ଶାଢ଼ୀ
  ଅନୁରକ୍ତ ନରନାରୀ ଶିରେ ।
ପ୍ରତି ପଣ୍ୟ ବୀଥି ଏଥି ବିପଣୀମାଳିନୀ
  ପ୍ରତିଟି ବିପଣୀ ଯାର
  ଷଡୈଶ୍ୱର୍ଯ୍ୟ ପଣ୍ୟେ ପଣ୍ୟେ ଭରା
ଏକୁଁ ଆରେକକୁ ପରାଭବ ଦିଏ
  ପ୍ରତିକ୍ଷେତ୍ରେ ଅବତରି
  ପ୍ରତି ଯୋଗିନୀକି
ମୋତି, ମଣି, ମୁକ୍ତା ଜାଙ୍କେ ଔଜ୍ୱଲ୍ୟ ଉଦ୍‌ଗାରି ଜନମାଏ
ରତ୍ନାକର ରତ୍ନକୋଷ ଭ୍ରମ
ତୃପ୍ତିତ ଥାଏନି
ଯେତେ ହେରି ଦେଖୁଥିଲେ
  ନାହିଁ ତିଳେ ତୃପ୍ତି ଅବସାଦ ।
ଜଳେ, ଜଳିକି ଜଳାଇ ମାରେ
ପ୍ରଲୋଭନ ଜ୍ୱାଳା ଅପରେ କି ଛାର
ତିଦଵ ଚାରିଣୀ ଅପସରାଙ୍କର
ଦରଦୀ ତରୁଣ କଣ୍ଠେ ଚେଇଁଚେଇଁ
କାହାକୁ ଛାଡ଼ି ମୁହିଁ ଯିବି କାହାରି ପାଶେ'

xxxxxxxx

ଅଟାଳିଏ ଲୋହିତ ମର୍ମରେ ଆରକ୍ତିମ ଅବା
ନର୍ମଦାର ଦୁଗ୍ଧ ଫେନନିଭ ଶଙ୍ଖଶୁଭ୍ର ରତା ଲକ୍ଷ୍ମୀ ନାରାୟଣ ପୁରୀ
ଗଗନ ଚୁମ୍ବନ୍ତି ଏକ ଆରେକକୁ ପଶ୍ଚାତେ ପକାଇ ।
କେ କହିବ କାହାର ଏ ଅର୍ଜିତ ସମ୍ପଦ ।
ଭୂମିଚାରୀ ଯାନଘୋଷେ
କମ୍ପଇ ମେଦିନୀ ଆଜି
ମହୀ କମ୍ପ ଭୀତ ନିୟତ ଚହ୍ଲାଇ
ଆଗନ୍ତୁକ ହୃଦେ । ଏହି ପରା ପ୍ରଗତିର ନିୟତି ପ୍ରତୀକ ।
ପୁଣି, ଅନ୍ତରୀକ୍ଷ ମଣ୍ଡଳ ବିଦାରି
ନିମିଷେ ନିମିଷେ ବିଚରେ ଯେ
ଏ ଯୁଗର ନବୀନ ପୁଷ୍ପକ,
ପକ୍ଷୀରାଜ ଭଳି ସେ କାଳର
ଇଚ୍ଛାଗତି ବିମାନକୁ ଦେଇ ପରାଭବ ଗ୍ଳାନି ।
ଏଇ ସେ ରାଜଧାନୀ ।
ଯହିଁ ଜୀବନର ସ୍ରୋତ ବହିଯାଏ
ସେହି ପରି ଅହୋରାତ୍ର ବିରାମ ବିହୀନ
ନିତି ନୂଆ ନୂଆ ବାର୍ତ୍ତା ଘେନି ।
ଥାଉ ବା ନ ଥାଉ ରାଜା
ଅଥବା ରାଜାଧିରାଜ, ରାଜ ଚକ୍ରବର୍ତ୍ତୀ ।
ରାଜ ମୁକୁଟ କାହାଣୀ
ଏବେ ଏ ଯେ ଶୁଣାଯାଏ
ଚାରଣର କଣ୍ଠୁଁ ବେଳେ ବେଳେ
କେ ଜାଣେ ସେ ଅବା ଆଉ କେତେ ଦିନ ।
ନୀରବିଲେ ଥରେ ଇତିହାସ ସୁଦ୍ଧା
ହେବ ମୂକ କଣ୍ଠ ସାଥେ ସାଥେ ।
ଐତିହ୍ୟର ପୂର୍ବ ପୂଜ୍ୟ ପୂଜା ସାଙ୍ଗ ତେବେ କି ଏମିତି !!!
ରାଜାନୁଚିନ୍ତନ ପାପଗ୍ରହ ପରି
ଶାନ୍ତି ସ୍ୱସ୍ତି ବାଚନ ପାଇଁ କି

ହୁଏତ ବା ହେବ ଲୋଡ଼ା
ଖାଲି ଉତ୍ତର କାଳକୁ ।
ନବ ଯୁଗେ ନବ୍ୟ ଭାବମାନ
ଡୋଳନ୍ତି ଏଠାବେ କେତେମନ୍ତେ,
ବହୁ ରୁଚି ଗୁଣ, ବହୁ ପଥ ମିଳି
ଏକ ଠାବେ, ସୃଜନ୍ତି ଗୋଲକଧନ୍ଦା
ନିଷ୍କ୍ରମଣ ପାଇଁ ନାହିଁ ମିଳେ ପନ୍ଥା,
ଅନ୍ଧପରି ହେଲେ ହେ ଦରାଣ୍ଡି ।
ପରିଣତି କାହିଁ ଏ ସବୁର !!!
ଚିର ବିଭବିନୀ ଦିଲ୍ଲୀ
ଅଗ୍ରଗଣ୍ୟା ନଗରୀ ସମାଜେ
କୋଳେ ଯାର ଅପ୍ସରା ବାଞ୍ଛିତ
ଶୋକ ହରା ମର୍ତ୍ତ୍ୟଭୂତି ।
କିନ୍ତୁ ଆହା କାହିଁ ତହିଁ
ପୌର୍ଣ୍ଣମାସୀ ଚନ୍ଦ୍ରିକା ପ୍ଳାବନେ
ମଧୁ ଯାମିନୀ ବିହାର ।
ଆହ୍ଲାଦିନୀ ବିଦ୍ୟୁଦ୍‌ଲତା
ମରହାତେ ଆଜି ସିଏ କ୍ରୀଡା ପୁତ୍ତଳିକା ।
ବନ୍ଦିନୀ ସେ ପରପାଶେ
ଅନୁଗତ ପ୍ରାୟ ଦିଏ ଯେଉଁ ଆଲୋକ ସମ୍ଭାର
ଆନ ଜନ ଇଚ୍ଛା ମତେ,
ତହିଁ, ଉଷାମୁଖେ ପାଟଳିମ ତ୍ରିଦିବ ମାଧୁରୀ
ଲଜ୍ଜାନମ୍ରା ବରବଧୂ ପରି
ଛପି ଯାଇ ହରାଏ ତା ସତ୍ତା ଅତି ଅବଜ୍ଞାତେ ।
ଏଠିବି ଦେଖୁଛି ଆଜି
ଯନ୍ତ୍ର ଦାନବର କ୍ରୂର ଅଟ୍ଟହାସ
ସୁନ୍ଦର ଶ୍ରୀ ବୋଲି ଯାହା ଥିଲା ଏଥି,
ସବୁ ଧୂସରିତ ଧୂମୋଦ୍‌ଗାରେ
ଧନାର୍ଥୀର ପାଷାଣ ପ୍ରାଚୀର ତଳେ

ବନ୍ଧା ଆଜି ଧନିକ ସଭ୍ୟତା ।
ତା ହାତର ତୁଳାଦଣ୍ଡେ ଆଜି ମାନ ନିୟନ୍ତ୍ରଣ
ମୂଲ୍ୟାୟନ ସତ୍ୟ ଶିବ ଆଉ ସୁନ୍ଦରର ।
ତାରି ନୀତି ନିର୍ଦ୍ଧାରଣ ସୀମାରେଖା ତଳେ
ରହିଲା ଯା ସବୁ ଅପାଙ୍‌କ୍ତେୟ ?
ପହଞ୍ଚି ପାରେ ନା ପରା ବିଚାରଣା ପାଖ ।
ପୁଣି ଏ କି ପ୍ରହେଳିକା ।
ଅର୍ଥ ଅନର୍ଥର ମୂଳ ବୋଲି ଧନାଗମ ପନ୍ଥା ସବୁ
ଲୋକ ମୁଖେ ପାଏ ନିନ୍ଦା, ଅପଖ୍ୟାତି, ତା ନୀତି ରୀତିରେ ।
ଭୋଗାମୋଦ ବ୍ୟସନ ବିଳାସୀ
ସବୁଦିନେ ସେ ତ ପରଶ୍ରୀ କାତର ।
ସେ ବି ଆପଣାର ଚମକ ବଢ଼ାଇ
ପ୍ରଚାରି ବୁଲଇ ନିଜ ଦୀନବନ୍ଧୁ-ପଣ ।
ପ୍ରବଳ ଓ ଦୁର୍ବଳର
ଏଇ ତେବେ ଭାଗ୍ୟ ଗତି ।
କେ କହିବ ନୁହଇ ଏ
ପରଧର୍ମ ଭୟାବହ ।
ହେଉ ବା ଏ ଉଡନ୍ତା କଳ୍ପନା
ଅର୍ଥହୀନ ଅଳସ ଚିନ୍ତନ
କିନ୍ତୁ, କାଲି ଯିଏ ଥିଲା ନଗରୀ ତିଳକ
ପୁରାଣ ପ୍ରଥିତ ଅପରୂପ ରାଜଧାନୀ
ଆଜି ସେ କେବଳ ରାଜଧାନୀ ନୁହେ,
ମହା ନଗରୀଠୁଁ ବଳି ଶ୍ରୀ-ଶ୍ରେୟସୀ,
ମହୀୟସୀ ସର୍ବଧର୍ମ ସଂସ୍କୃତିର ସମନ୍ୱୟ ଶାଳା ।
ଦେଶ ବିଦେଶରୁ, ସପ୍ତସିନ୍ଧୁ ପରପାରୁଁ
ଆଗତ ପ୍ରଣିଧି ବର୍ଗ, ନତଶିରେ
ନିବେଦନ୍ତି ଏଠି ସାମ୍ୟ, ମୈତ୍ରୀ
ପରିହରି ନିଜ ବଡ଼ ପଣ ।
ଏକି ତେବେ ବହୁପୂର୍ବ ଅର୍ଜିତ ଗୌରବ ?

ରାଜୋଚିତ ପ୍ରତିଷ୍ଠାର ପୁନଃ ପ୍ରକାଶନ !
ନବ ଜାଗ୍ରତ କି ଅବା ଠୁଳୀଭୂତ ମୂକ ଜନଶକ୍ତି !!!–
ନା–ଏବି ଏକ ଆଜ ଖାଲି ବାଞ୍ଛନାର–
ନ ମିଳେ ଉଦନ୍ତ ।
ଜଣା କଥା ଏହା–
ମର୍ତ୍ତ୍ୟ ମାନବର ଅଭିଳାଷ ·
ବିରାଟ ଅନନ୍ତ ଆକାଶ ପ୍ରାୟେକ
ଚନ୍ଦ୍ରଲୋକେ ବି ତ ହୋଇନି ପୂରଣ
ଗ୍ରହୁଁ ଗ୍ରହାନ୍ତରେ ଲୋଡି ବୁଲେ କିସ, କିବା ଅର୍ଥେ ?
ସେ ତେବେ–
ଦିଲ୍ଲୀଶ୍ୱରେ ବା ଜଗଦୀଶ୍ୱରୋ ବା ।

■■

॥ ୫ ॥

## ଯାଜକ

ମହାଭାରତର ମହାସାଗର ଏ ପ୍ରାନ୍ତୁଁ
ଉଠିଲା ଯେ ଆହ୍ୱାନ ଆକାଶେ,
ତା ସାଥେ ପ୍ରଶାନ୍ତ ମହା ପାରାବାର ପାରୁଁ
ଉଠିଲା ଯେ ପ୍ରତିତାଳ
ତୁଙ୍ଗ ହିମାଳୟ ଶୃଙ୍ଗ ଶ୍ରେଣୀ ଲଂଘି
''ହିନ୍ଦି ଚୀନୀ ଭାଇ ଭାଇ''
ସେ କି କେବେ ଜଣାଇଲା ଭୟ ବିଭୀଷିକା
ଅହମିକା ଅଭିମାନୀ ଦେଶ ଦେଶାନ୍ତରେ ?
ପ୍ରବଳର ଏକଛତ୍ର ପ୍ରଭୁପଣ
ହୁଏ ତ ବା ଧୂଳିସାତ୍ ହେବ ବୋଲି
ଦୁଇ ଜନ-ଗରିଷ୍ଠ ରାଷ୍ଟ୍ରର
ଅଭିନବ (ନିଷିଦ୍ଧ ବା) ଏସନ ମେଣ୍ଟକୁ !!
କାହିଁଗଲା (କିମିତି ବା–
–ହେଲା ସେ ସମ୍ଭବ ?) ସେ କେଉଁ ଅପୂର୍ବ

ଗଗନ ବିଦରୀ ମହାରୋଳ ।
କୃମି କୀଟ ଅଲକ୍ଷ୍ୟେ ପ୍ରବେଶି ଇକ୍ଷୁଦଣ୍ଡେ
କରେ ତାକୁ ଶୂନ୍ୟ ଗର୍ଭ, ରସାସ୍ୱାଦ ହୀନ ।
ଏ ଦେଶର ଜାହ୍ନବୀ– ଯମୁନା ବିଧୌତ ମୃତ୍ତିକା
ପୀତଜ୍ୱର ସଂକ୍ରମଣେ ହୋଇଯାଏ
ମରୁ ବାଲୁଚର ପରି ଶୁଷ୍କ ଆଉ ରୁକ୍ଷ ।
କେଉଁ ଶୂନ୍ୟେ ଲୀନ ହୁଏ ସ୍ନିଗ୍ଧ ଶ୍ୟାମଳିମା ।
ତିବ୍ବତ ତ ଗଲା, ଦଲେଇ ଲାମା ବି ଗଲେ
ପଞ୍ଚେନ ଲାମାଙ୍କ ସ୍ମୃତି
କେଉଁଠି ରହିଲା ଗୋପ୍ୟ, ଜାଣିଲା ନି କେହି ।
ଦୁଇଦିନ ଯାଇନି ଆହାରେ ।
ଉତ୍ତର ପଶ୍ଚିମ ପ୍ରାନ୍ତେ, ହିମଗିରି ଭାଗେ
ପଡ଼ିଗଲା ଛୁରି-
ଭାଇ ଭାଇ ବୋଲି ଆଲିଙ୍ଗନେ ଯାକୁ
କରିଥିଲୁଁ ଆପଣାଠୁଁ ବଳି ଆପଣାର ।
ସହସ୍ର ସହସ୍ର ଯୋଜନ ବିସ୍ତାରେ
ଆମର ଏ ପବିତ୍ର ଭୂଖଣ୍ଡେ
ଉଡାଉଛି ଜୟଧ୍ୱଜା, ସେଇ ସେ ମଦାନ୍ଧ ।
ଅସ୍ତ୍ରମୂନେ ଅଗଣିତ ଜନପଦ
କଲାଣି ତା ବଶାଧୀନ
　　କିଏ ଜାଣିଥିଲା–
ନିରେଖ ଜନର କେଉଁ ଦୁର୍ବଳତା –ଦୋଷେ
ଘଟିଥାଏ ଦୁର୍ଘଟନ ।
ମହାମହାଗିରି ସଂକଟ ବି ଦୁର୍ଗମ ହେଲେହେଁ
　　ନ ପାରିଲା ରୋଧି
ବିପୁଳ ସେ ପୀତ ବାହିନୀର
　　ଅତର୍କିତ ଅଭିଯାନ !
ବଜ୍ରନାଦୀ ତୋପଧ୍ୱନି
ଶୁଣିବାକୁ ହେବ ଏଇ ଦ୍ୱାରଦେଶେ

କିଏ ଅବା ଭାବିଥିଲା ନିଃସନ୍ଦେହୀ ଆମେ ସବୁ ଦିନେ,
କୂଟ ପ୍ରପଞ୍ଚର ପାଦତଳେ ଆତ୍ମବଳି ଦେବି ଆମ ଜନ୍ମଗତ ବ୍ୟାଧି
ଦିନେ–
ଅରୁଣୋଦୟ ଦ୍ୱୀପପୁଞ୍ଜର (୧) ତୀର୍ଥବାଲି ସମ
ଯାହା ଥିଲା ଏକଇ ଆଦର୍ଶ–
ପରମ ଆଦର୍ଶ– ଆମ କୃଷି ଜୀବୀଙ୍କର
ସେଇ ହେଲା ତ୍ୟଜ୍ୟପତ୍ର
କପଟିଆ ଚୀନା ପ୍ରୀତି ବାକ୍ ଆଡମ୍ବରେ ।
ଚୀନାଂଶୁକ ଭଳି ଆମ ଧାନ୍ୟ କ୍ଷେତ୍ର
ଚୈନିକ ପ୍ରଣାଳୀ ହୋଇ ଉଠିଲା ଏଇଠି
ପ୍ରିୟତର, ପୂଜାପାଠ ଅଗ୍ରଗଣ୍ୟ ।
ସେ କି ଖାଲି 'ହିନ୍ଦୀ-ଚୀନୀ'' ଭାଇ ଭାଇ ଢୁଆ ଲାଗି ?
କାହିଁଗଲା ସମଧର୍ମ ସମ ଆନୁଗତ୍ୟ ?
ଏଡ଼େ କ୍ଷଣଭଙ୍ଗୁର ତେବେ ତା ?
ହେ ଚୈନିକ ହେ ପୀଡିମ
ତୁମ ସର୍ବଗ୍ରାସୀ ରକ୍ତ ଧ୍ୱଜା କାହିଁ
ତୁମ ଖର୍ବ ପୀତ କଳେବରେ
କରି ତ ପାରିନି ମାତ୍ର ଚିହ୍ନାଏ ରକ୍ତାକ୍ତ !!
ଲୋହିତ ତନ୍ତ୍ରରେ ଯାର ସବୁଦିନେ ଶଙ୍କା
ଲୋହିତର ଅନୁଷଙ୍ଗ ଯିଏ ମଣେ ପରଶ ବିଷାକ୍ତ
ସେ ଦେଶର ସେଇ ଧନଗର୍ବେ ସ୍ଫୀତ
ସେ ରାଜ୍ୟର କର୍ଣ୍ଣଧାର
ସେ ବି ହେଲେଣି ତୁମ ସହଯୋଗର ଭିକ୍ଷାର୍ଥୀ
ତୁମ ସିଂହାସନ ତଳେ ଉପଯାଚକ ପ୍ରାୟେକ ।
ସେ କି ତେବେ
ତୁମ ହାତେ ଲୋକ ଶକ୍ତି ସବୁଠୁଁ ଭୂୟିଷ୍ଠ ବୋଲି–
ସେଇ ଶକ୍ତି ବଳ ଯାହା ଜଣଙ୍କର ଇଙ୍ଗିତେ ଚାଳିତ ?
ଆମେ ତ ତାହିଁ ନୁ
ଆନ ସାଥେ ବୈର ପଣ ସାଧିବାରେ କେବେ ।

ମୈତ୍ରୀ, ବନ୍ଧୁ ଭାବ, ସର୍ବୋପରି
ସହ-ଅବସ୍ଥିତି ସିନା ଆମ କାମ୍ୟ,
ଆମର ଚରମ ଲକ୍ଷ୍ୟ ପଞ୍ଚଶୀଳ ନୀତି ।
ଅନ୍ୟ କାହା ସାର୍ବଭୌମ ପଣେ
ଆମେ ଚାହିଁ ନାହୁଁ ଦିନେ କରିବାରେ ଖର୍ବ ।
ବିଶ୍ୱାସରେ ବିଷ ଦେବା ବୁଦ୍ଧି
କେବେ କାହା ପାଖେ ଥିଲା ବୋଲି
ଜାଣି ନାହୁଁ ଆମେ ।
ଥିଲେ ବା ସେ ସବୁ ଦୁଃସ୍ୱପନ ପରି
ଗଲାଣି ପାଶୋର ।
ସେମିତିକା ଅଭିସନ୍ଧି ଆମ କଳ୍ପନାର ବହୁ ଦୂରେ ।
ଖଡ୍ଗ ହସ୍ତେ ପଛପଟୁ ଭୁଷିବା ବେଭାର
ସେ ଆମର ଅପଧର୍ମ, ଚରମ କୁନୀତି ।
ଅତି ଆଚମ୍ବିତେ ଦେଖୁଁ–
ସହୋଦର ମଣି ଆଲିଙ୍ଗନେ ଆଶେ
ଯଦି ଆମେ ବଢ଼ାଉଁ କର
ସନ୍ନିହିତ ଉପାନ୍ତ ପଡୋଶୀ ସହ
ଅନର୍ଗଳ ତୁମେ ତହିଁ କର
ମାଳ ମାଳ ଅନର୍ଥ ସଂଘାତ ।
କି ଅହନ୍ତା ସେ ତୁମର ?
ହେ କପଟୀ ପ୍ରତିବେଶୀ,
ଆମ ବୋଧଶକ୍ତି ହାରମାନେ
ଖଳ କୁଟିଳ ତୁମ ଏ ମନୋଭାବ ପାଶେ ।
କାହିଁପାଇଁ ଏ ବିଦ୍ୱେଷ ?
ଆମେ ଦେଉ ସଦିଚ୍ଛାର ପରମ ପ୍ରତୀକ
ନିଷ୍କପଟ ଯାଚଞ୍ଜା
ଆଉ ତୁମେ ଦିଅ ଦାନେ
ପଦତଳେ ଠେଲି
ଆମର ଯା କିଛି
ଅବଜ୍ଞାରେ ସବୁ ହେୟ କରି ।

■■

॥ ୬ ॥

# ମହାପ୍ରୟାଣ

ଭାରତର ମହାକାଶୁଁ–
କେବଳ ଭାରତ ନୁହେ, ସମଗ୍ର ବିଶ୍ୱର
ଅନ୍ତରୀକ୍ଷୁଁ– ଛିଡି ଯାଏ ଆଜି,
ଏକ ଉଜ୍ଜ୍ୱଳ ବିରାଟ ଜ୍ୟୋତିଷ୍କ
ନିଜ ଗୁଣେ ଦୀପ୍ତିମନ୍ତ, ସମୁଦ୍‌ଭାସିତ
ସେଇ ଜ୍ୟୋତି ପିଣ୍ଡ ତୁମେ ।
ହେ ତାତ୍ତ୍ୱିକ ତୁମ ତତ୍ତ୍ୱରାଶି
ପାଇଲା ନି ଯେଣୁ ଅବରୁଦ୍ଧ କରି
ରଖିବାକୁ ଏ ଭୁବନ, ଯାଏ ଆଜି
ଅନ୍ୟ ଧାମ ଖୋଜି,
କରିବାରେ ପ୍ରସାରଣ, ଆନ ପରିସରେ ।
ତତ୍ତ୍ୱଦର୍ଶୀ ତୁମେ । ତଥାପି ତ
ତତ୍ତ୍ୱ ଅନୁସାରୀ, ଦଗ୍ଧ କଲ
ଆପଣାକୁ ଯେଉଁ ମହାନଳେ
ମହାସତ୍ୟ ଅନୁଧ୍ୟାନେ
ତହୁଁ ଉଠି ଅଗଣିତ ଶିଖା
ଆଲୋକିତ କରିଯାଏ ଏ ଧରିତ୍ରୀ
ଏଇ-ବିଶାଳ ବ୍ରହ୍ମାଣ୍ଡ ।
ଗୁରୁ, ଜ୍ଞାନୀ, ପୁଣି ଜ୍ଞାନଗୁରୁ ।
ରୂପେ ତୁମେ ବିଦ୍ୟାର୍ଥୀ ସମାଜେ
ତୁମ ଅମୂଲ୍ୟ ଜ୍ଞାନ ଭଣ୍ଡାର
ଫେରଦେଲ ଲୋକହିତେ
ପୁଣି
ଦେଶାନ୍ତରେ ଆମ
ସୁଯୋଗ୍ୟ ପ୍ରତିଭୂ ପଦେ
ବରିନେଲ ଆପଣାରେ ।

୧୬.୦୪:୧୯୭୫ରେ ସର୍ବପଲ୍ଲୀ ରାଧାକୃଷ୍ଣଙ୍କ ମହାପ୍ରୟାଣରେ

ଟେକାଇଲ ଏ ଦେଶର ଶୁଭ୍ରଜ୍ୟୋତି ରାଶି
ପ୍ରାଚ୍ୟ ପ୍ରତୀଚ୍ୟର ମହିମିତ
ସମନ୍ୱୟ ବିହି ।
ଏଇତ ସେଦିନ ପରି ଲାଗେ
ରାଜ୍ୟ ମଣ୍ଡଳର ମହାସଭା ପୁରୋଭାଗେ,
ବିଚକ୍ଷଣ କର୍ଣ୍ଣଧାରରୂପୀ ତୁମର ସେ
ନିରପେକ୍ଷ କ୍ଷେପଣୀ ଚାଳନା-
ଯୁଗ ଯୁଗାନ୍ତରକୁ ଯା ରହିଥିବ
ଦିଗ୍ ଦରଶୀ ଅଣଲିଭା ଆଲୋକରସ୍ତମ୍ଭ ।

ଜନନୀର ସଯତ୍ନ ସଞ୍ଚିତ ନିଧିଶ୍ରେଷ୍ଠ
ଭାରତର ମହାରତ୍ନ,
ତୁମ .ଶିରୋଭୂଷା ଭାବେ,
ମାଗି ନ ଥିଲେ ହେଁ ତୁମେ,
ଆପେ ଆପେ ଖଚିତ ତୁମଠି ହେଲା ସିନା ଆସି
ସେତିକେ ତ ମପା ଯାଇ ପାରିବ ନି
ତବ ଜଗଜ୍ଜୟୀ କୀର୍ତ୍ତିର ପରିଧି
ତୁମେ ଥିଲ ମୁକୁଟ—ବିହୀନ ରାଜା ।
ନିଜ ଦେଶେ ପୂଜାପାଏ ରାଜ୍ୟ ରାଜ୍ୟାଧିପ,
କିନ୍ତୁ ହେ ମହା ମନୀଷୀ,
ତୁମ ପୂଜା ଦେଶେ ଦେଶେ, ଦିଶେ ଦଶ ଦିଶେ
କାଳ କାଳ ଜିଣି,
ଯାବତ ନୋହିଛି ନରଦେହେ
ତିରୋଧାନ ସ୍ୱଚ୍ଛ ହୃଦୟର ।
ହେ ରାଜର୍ଷି,
ଇନ୍ଦ୍ରସୁଖଦାୟୀ ଅସରନ୍ତି ଭୂତି ଥାଉଁ
ତବ କରତଳଗତ,
ତୁମେ ଥିଲ ବୀତସ୍ପୃହ ।
ଅଟ୍ଟାଳୀ, ଉଦ୍ୟାନ, ବୃକ୍ଷ ବାଟିକା ନିଚୟ

ଆଉ, ଯାନ ବାହନର ରାଜସିକ ରାଜ ସମାହାର
ଥିଲା ସବୁ ନିୟୋଜିତ
ଭୋଗାମୋଦ ଅର୍ଥେ,
ଅଭିଳାଷ ଉଦେ ହେଲା କ୍ଷଣି,
ଥିଲେ ଶତ ଶତ ଆଜ୍ଞାବହ,
ଇଂଗିତ ମାତ୍ରକେ ପୂରାଇବା ଲାଗି ।
ବିଷୟ ବାସନା ପାଶେ
କେବେ କ୍ଷଣିକର ପାଇଁ ଧରା ଦେଇ ନାହିଁ
ତୁମ ମହାର୍ଘ ଜୀବନ ।
ଯାହା କେବେ ଘଟାଇ ଦେଇ ନି,
ଗୁରୁକୁଳ ଆଦର୍ଶର ତିଳେକ ବିଚ୍ୟୁତି ।
ତେଣୁ –
ଜନଗଣ ମନ ଅଧି ନାୟକ. ଆବାସ
ମର୍ମର ପ୍ରାସାଦ ମଧ ଲଭିଥିଲା
ପୁରାଣ ଯୁଗର ତାପସ ଆଶ୍ରମ ରୂପେ
ଯୁଗୋତ୍ତର ଖ୍ୟାତି ।
ତୁମେ ଥିଲ ତହିଁ
ଭେକହୀନ ସନ୍ୟାସ ଧର୍ମର ନିଷ୍କାମ ସାଧକ ।
ତୁମେ ପାରିଥିଲ ଚିହ୍ନି ହେ ଦରଦୀ,
ଆମ ମର୍ମତଳେ କିସ ସେ ବେଦନା,
ଯାହା ଯୁଗ ଯୁଗ ଧରି
ଥିଲା ପୁଞ୍ଜୀଭୂତ; ଆଉ ଅନ୍ତସ୍ତଳ
ନିର୍ମମେ କରତି ତିଳେ ତିଳେ
କରି ରଖିଥିଲା ମାନବକୁ
ନିର୍ଜୀବ ଅଳ୍ପାୟୁ ।
ଯାହା ଦେଖି
ଦୁଃଖେ ମ୍ରିୟମାଣ ତୁମେ କହିଥିଲ-
କୋଟିଏ ମରଣ ମାର୍ଗେ
ମାତ୍ରକ ଗୋଟିଏ ମାର୍ଗ ଆତ୍ମରକ୍ଷା ମାର୍ଗ ।

ଆତ୍ମ ପ୍ରତ୍ୟୟ ସେଇଟି
କାହିଁ ସେ ଦରଦ ଆଜି !!!
ଆଜି ସେ କାଲିର ସ୍ମୃତି ପାଲଟିଛି ।
ନଶ୍ୱର ଶରୀର ତବ ମିଳାଇଛି ସିନା
ପଞ୍ଚ ମହାଭୂତେ ।
କିନ୍ତୁ ଆତ୍ମା ?
ସେ ପରା ଅବିନଶ୍ୱର
ଆଉ ସେମିତି ଅମର ତୁମ ଗ୍ରନ୍ଥରାଜି
ନିୟତ ଜ୍ୱଳନ୍ତ, ନିତ୍ୟ ମୂର୍ତ୍ତିମନ୍ତ ।।



॥ ୭ ॥

## ବୈତରଣୀ

ଗୋନାସା ପ୍ରଭବା ବୈତରଣୀ ସୂତିକା ମନ୍ଦିର
ଏଥି ଘରେ ଏକ ରନ୍ଧ୍ରବାଲୁ, ଆନ ରନ୍ଧ୍ରୁ ନୀର ।
ଗିରି ପ୍ରାଚୀର ବେଷ୍ଟନୀ ତଳେ ଅବରୁଦ୍ଧ
ନିଜକୁ ସେ କରେ ନିଜେ ଶୁଚି ଶୁଦ୍ଧ
ଏକାନ୍ତେ ସମାଧି ଧ୍ୟାନ ମୁକ୍ତି କାମୀ ଏଥି ସନ୍ଥଜନେ
ଯୋଗରତ ଜନ୍ମାନ୍ତର ପୁଣ୍ୟ ଆହରଣେ ।
ନିତ୍ୟ ବସନ୍ତର କୁସୁମିତ ପୁଲକେ ମଞ୍ଜୁଳ
ଶାଖେ ଶାଖେ ଛନ୍ଦାଛନ୍ଦି ଚମ୍ପକ ବକୁଳ
କରୁଥାନ୍ତି ସୁରଭିତ ଛାୟାସ୍ନିଗ୍ଧ ଏ ବିତାନ ତଳ,
ଏଠି ଅଛି ଦେବସଭାରୁଚି, ଦେବୋଦ୍ୟାନ ବାସ ପରିବନ ।
ଶୋକହର ଅଶୋକ ଏ ପାରୁଶେ ପାଟଳୀ
ନିକାଞ୍ଚନ କରେ ସିନ୍ଦୂରିମ ଦରଦୀର ହୃଦପଟ ଭାଳି ।
ତମାଳ ପୁନ୍ନାଗ ଶ୍ୟାମ ଶୋଭାବନ
ଅତର୍କିତେ ସମାଦର କାଳଲୋଭୀ ନିସର୍ଗ ତର୍ପଣ ।
ପବିତ୍ର ପିପ୍ପଳ ଚନ୍ଦନକ ବ୍ୟଞ୍ଜନ ଢାଳନେ
ରତ ଥାନ୍ତି ସଦା ସୌରତାପ କ୍ଳେଶ ନିବାରଣେ ।

ବନଦେବୀ ଅଙ୍ଗ କାନ୍ତି ହରି
ସ୍ୱର୍ଣ୍ଣ ବର୍ଣ୍ଣ ରସାଳ ପାଚନ୍ତି ସ୍ୱର୍ଗୁ ଅବତରି ।
ବିଷ୍ଣୁ-ନଖ କୋଣୁ ଗଙ୍ଗାଧାରା ନିଃସରିଲା ପରି
ଆରମ୍ଭିଲା ଗତି ଯେଉଁ ଦିନୁ ଉତ୍କଳର ପୁଣ୍ୟ ଗୋଦାବରୀ
ନିମ୍ନ ମୁଖେ, ସେଇଦିନ ପୁଣି କିସ ଭାଳି କୁତୁକିନୀ
ଭୂମିତଳେ ହେଲା ଗୋପ୍ୟ ଯଥା ଗୁପ୍ତ ମନ୍ଦାକିନୀ ।
ଲୋଡ଼ି ନ ପାଆନ୍ତେ ତହୁଁ ଭକ୍ତଜନେ ବିସ୍ମୟ ଚକିତ
କଠୋର ତାପସ ବ୍ରତେ ନିଯୋଗିଲେ ଅବିଚଳ ଚିତ୍ତ ।
ତୋଷ ଲଭି ଆଶୁତୋଷ କିଛିଦିନ ଅନ୍ତେ
ଦେଲେ ବର– ସ୍ରୋତମୁଖେ ସାରା ଗତି ପଥେ
ନିବସିବେ ? ଦେବାଳୟ ରଚି ଯୋଜନେ ଯୋଜନେ,
ବିଷକଣ୍ଠ ବିଷଜ୍ୱାଳା ନିବାରଣେ
ପ୍ରକାଶିବେ ବୈତରଣୀ । ସ୍ଫୁରିଲା ଏତେକେ ସ୍ରୋତର ଉଲ୍ଲାସ
ପଟହ କାହାଳୀ ନାଦେ ଉଚ୍ଛୁଳିଲା ଅବନୀ ଆକାଶ ।
ଏଇ ସେଇ ବୈତରଣୀ । ଦେବଅଂଶେ ଯାହାର ଉତ୍ପତ୍ତି
ପାତାଳୁ ଉଦ୍ଧରି ନ ମାଗୁଣୁ ଦିଏ ମୁକ୍ତି, ମୋକ୍ଷଗତି ।
ଗିରି ଦରୀ ଅବରୋଧ ତେଜି ପୁଣ୍ୟବ୍ରତୀ–
ଇଚ୍ଛାମୟୀ, ଅବାଧ ତା ଇଚ୍ଛାଗତି–
ଚଳେ ଶୈଳ, ଶୈଳ ଖଣ୍ଡେ ଲଂଘି
ପ୍ରପାତେ ଗରଜି ଅବା କୁଟିଳ ଭ୍ରୁଭଙ୍ଗୀ
ଖେଳାଇ ଭଉଁରୀ ମାଳେ ଚଳାଏ ତା ରଥ
ଉପଳ ବନ୍ଧୁର ଶେଯେ, ଅବା ସିକତିକ ପଥ ।
ଯେଣେ ଯାଏ ହସି ଉଠେ ତଟ ପ୍ରାନ୍ତ ବେନି
ଫୁଲ ଫଳେ ଶ୍ୟାମଶସ୍ୟ ଭରେ, ହସାଏ ତା ସ୍ନିଗ୍ଧ ଜଳବେଣୀ ।
କାହିଁ ଉଠେ ହାସ୍ୟ କଳରୋଳ
ମୁଖରିତ କରି ନଦୀ ସଲିଳ କଲ୍ଲୋଳ
ସ୍ନାହାନ ସାରନ୍ତି ଜନପଦ ସୀମନ୍ତିନୀଗଣ;
କଳସ ଭସାଣ ସୁଖେ କେଳି ସନ୍ତରଣ
କରୁଥାନ୍ତି କୁମାରୀ କିଶୋରୀ ବାରଣ ନ ମାନି;

ବାହୁଡ଼ିଲା ନବବଧୂ ଆର୍ଦ୍ର ପିନ୍ଧାବାସୁଁ ଝରିପଡ଼େ ବାରିଧାରା ଜାଣି
ଛଟକିନୀ ସିଏ, ମୁଖୁଁ ତାଙ୍କ ଉଚ୍ଛଳଇ ପରିହାସ ରସ
ପାଦତଳେ ଫୁଟାଉଛୁ ବୋଲି ଅଦିନ ସାରସ ।
ଲାଜ ଭୟେ ରୋମାଞ୍ଚନେ ନବୀନାର ଥରଇ ନିତମ୍ବ
ଆଷାଢ଼ର ପ୍ରଥମ ଦିବସେ ଫୁଟିଲା ବା କୁସୁମ କଦମ୍ବ ।
ଶୁଭ ଦିନ ଶୁଭଯୋଗ ମିଳେ ନା ଏକତ୍ର—
ବୋଲନ୍ତି ବିବୁଧେ
ତେଣୁ ପରା ଏତେ ତୀର୍ଥ କ୍ଷେତ୍ରେ ଠାବେ ଠାବେ
ତଟେ ତଟେ ଉଦେ ।
ତହିଁକି ବାରୁଣି ଯୋଗ ସଂଯୋଜିଲେ ଆସି
ଧର୍ମ, ଅର୍ଥ, କାମ, ମୋକ୍ଷ, ଚତୁର୍ବର୍ଗ ଚୟନ ପ୍ରୟାସୀ
ସୃଜି ଯାନ୍ତି ତଟଦେଶେ ଘନ ଲୋକାରଣ୍ୟ
ଉଚ୍ଚାରି ଶ୍ରୀଦେବ ଦେବ ନମସ୍ୟ ଶରଣ୍ୟ ।
ଶ୍ରୀରାମ ଶ୍ରୀପାଦ ପୂତ ପୂଜିତ ଅଦ୍ୟାପି
ନାହିଁ ଭୟ ଭ୍ରାନ୍ତି ଯହିଁ ଏକା ଏକା ବିହରେ କଳାପୀ
କଣ୍ଠେ ତାର ନୀଳକାନ୍ତ ମଣିମାଳା ରାଗ
ରାମ କରାଙ୍ଗୁଳି ସ୍ପର୍ଶ ଗାଢ଼ ଅନୁରାଗ ।
ଏଇ ସେଇ ରାମତୀର୍ଥ ଧାମ
ପୂରାଏ ଏ ଜଗତର ଶତ ଇଚ୍ଛା, ଶତ ମନସ୍କାମ ।
କିଶୋରିକା ଚପଳା ସେ ନାନା ଲାସ୍ୟ ଛନ୍ଦେ
ଧାଇଁଯାଏ ଖରସ୍ରୋତା ନିର୍ମଳ ଆନନ୍ଦେ
ନିର୍ଝରିଣୀ ନର୍ମ ସହଚରୀ କେତେ
ଚାଟୁବାକ୍ୟେ ଫୁଲାନ୍ତି ତା ଫୁଲଣା ବଡ଼ିମା, ଫୁଲଇ ସେ ଯେତେ ।
ଅତୀତେ ସେ କେଉଁ ଏକଦିନ
ବିଶାଳ ପାଷାଣ ଏକ ଏତେ ଅର୍ବାଚୀନ
କେଉଁ ଦୁଃଖେ
ରୋଧି ବସିଲା ତା ଯାତ୍ରାପଥ ସ୍ରୋତମୁଖେ ।
ବୁଝିଲାନି କାଳ ଚକ୍ରପରି କେତେ ଶକ୍ତି ଧରେ
ଏଇ ଜଳାବର୍ତ୍ତ ଆନ ଆଗୋଚରେ ।

ବଜ୍ରାଘାତେ ବିଦାରିତ କରି ଶିଳାଦେହେ ଦିଓଟି ବିବର
ଯୋଗାଏ ବାରୁଣୀ ବୁଡ଼ ଯୋଗ ଆଦ୍ୟ ମକର ମାସର
ସନ୍ଧସୁଜ୍ଞ ଜନେ ବେନିକୁଣ୍ଡ ବୋଲାଏ 'କେଶରୀ'
ବେନିର ସଂଯୋଗ ଶିଳାତଳ ଛଳେ ମୁକ୍ତି ମାର୍ଗ ସରି
କେଶରୀ କୁଣ୍ଡ ଦୁଇଟି ଜମଜ, ପ୍ରସ୍ତର ଦେହରେ କେଉଁ ଅଜ୍ଞାତ
ସମୟରୁ ଖୋଦିତ ହେଲାପରି ଅବସ୍ଥିତ । ଏହାରି ଈଷତ୍‌ତୃଷ୍ଣ ଜଳ
ମକର ସ୍ନାନ ପକ୍ଷେ ବେଶ୍ ଆରାମ ପ୍ରଦ । ପ୍ରଥମ କୁଣ୍ଡରେ
ନିମଗ୍ନ ହେଲେ ସ୍ୱତଃ ଟାଣି ହୋଇ ଅନ୍ୟ କୁଣ୍ଡରେ ବାହାରି
ଆସିବାର ଶୈଶବ କାଳୀନ ବ୍ୟକ୍ତିଗତ ଅଭିଜ୍ଞତା ଲେଖକର
ଆଜିଯାଏ ଜାଗରୂକ ରହିଛି ।

ଆଦି ଭଞ୍ଜ ପ୍ରତିଷ୍ଠିତ ଦୁର୍ଗ ଆଦିପୁର
ଭଞ୍ଜ ରାଜ ବଂଶାବଳୀ ପ୍ରଥମ ଅଙ୍କୁର
ସମ୍ଭବିଲା ଯହିଁ ଆଉ ସପ୍ତତାଳ ପଙ୍କେ ପଙ୍କେ ଢ଼ଙ୍କା
ରହିଛି ଯା ଇତିଗାଥା; ସଂଶୟ ଆଶଙ୍କା
ଧାରି ରଖେ ସଙ୍କେତ ସନ୍ଧାନ
ବ୍ୟର୍ଥ କରି ସବୁ ପ୍ରତ୍ନତତ୍ତ୍ୱ ଜ୍ଞାନୀ ଅଭିମାନ
ବାମ ପାର୍ଶ୍ୱୁ ଆସି ପାର୍ଶ୍ୱଚର
'ଭଣ୍ଡନ' ମିଳଇ ଆସି ଏଥି
ଗୈରିକ ପଙ୍କିଳ ସଳିଳ ସମ୍ଭାରେ
ଯୋଜନ ଓ ଯୋଜନାନ୍ତ ସରଣୀ ସଞ୍ଚାରେ
ହୋଇ ନି ସେ ତିଳେ ବୋଲି କ୍ଷମ
ସଲିଳ ସମୃଦ୍ଧ ତାର ହରିବ କର୍ଦ୍ଦମ
ତୀରବନ୍ତୁ ପାଇ ଯେତେ ନିର୍ମଳ ପରଶ
ବରଜି ପାରି ନି ଅଂଗୁ ତାର ମଳିନ କଳୁଷ ।

କଳୁଷ ଦୂଷିତ ମଣି
କଳ କଲୋଳିନୀ ସ୍ୱଚ୍ଛ ନୀରା ବୈତରଣୀ
ପାରି ନି ତ ଏକାକାରେ ନିଜ ଅଙ୍ଗୀଭୂତ କରି;

ଦୁହିଁଙ୍କର ଜଳଧାରା ଚଳେ ଦୁଇଧାର ଧରି ।
ଯେସନ ଏ ଜାହ୍ନବୀ ଯମୁନା
ବିଭାଜନେ ଗୁଣେ ପୁଣ୍ୟ ଭାଗ ହୋଇନାହିଁ ଊଣା ।
ଦୋ ମୁହାଁଣୀ ନାମେ ଖ୍ୟାତ ଏ ସଙ୍ଗମ-
ଚରାଚର ପରିତ୍ରାଣ ମାର୍ଗ କରେ ଯେ ସୁଗମ -
ତାରିବାରେ ପିତୃଲୋକେ ସାଜିଛି ତରଣୀ
ଏଇ ସେଇ ମର୍ତ୍ତ୍ୟ ବୈତରଣୀ ।
ହୁଏ ସମାହିତ ଏଇ ଠାବେ
ପିତୃ ଅର୍ଥେ ପିଣ୍ଡଦାନ ବିଧି ନିଷ୍ଠାଭକ୍ତି ଭାବେ ।
ତେଣୁ ପରା ଅୟୁତ ଯୋଜନ
ଅନ୍ତର ନ ଗଣି, ବାୟୁ ମାର୍ଗେ ଆଣି
କହେ ବିସର୍ଜନ
ରାଷ୍ଟ୍ରପିତା ଗାନ୍ଧୀଚିତା ଭସ୍ମ ଏଥି । ଏଇ ଧାମ
ବୋଲାଇଲା ତୀର୍ଥରାଜ ତୀର୍ଥଙ୍କ ଲଲାମ ।
ନିମ୍ନ ତଟ ଦେଶେ ଜ୍ୟୋତି ପୁର କାହିଁ ଜ୍ୟୋତି
କାହିଁ ରୂପ କାନ୍ତି
ତା ସ୍ରୋତ ଯାଇଛି ଭାସି
        ପୂର୍ବ ଯଶ କୁଳମାନ ଖ୍ୟାତି
ପାଶୋର ଯାଏ ନା କିନ୍ତୁ ସେଇ
        ଇତି ଗାଥା ସୌରଭ ବହୁଳ
ସ୍ମୃତି କୋଷ ଗଣ୍ଠିଧନ
        ବିକୀରି ବୁଲେ ଯା ଆଜିଯାଏ
        ଚମ୍ପକ ବକୁଳ
ନୀଳିମାରେ ନିନ୍ଦି ମେଘମୁକ୍ତ ଶାରଦ ଗଗନ
ପାରାବାର ଭ୍ରମ ଜନମାଏ ଏଯେ ଜଳ ଆସ୍ତରଣ
ଅତଳ-ପରଶ ବୋଲି ଯାହା କହେ କିମ୍ବଦନ୍ତୀ ।
ନିଃଶଙ୍କ ଆନନ୍ଦେ ଯହିଁ ଜଳଗର୍ଭେ ସୁଖେ ବିହରନ୍ତି
ଅତିକାୟ ଜଳଚର ମକର ମୀନାଳି,
ନିସ୍ତରଙ୍ଗ ବକ୍ଷ ଚିରି ସନ୍ତରେ ମରାଳୀ

ଲୀଳାୟିତ ଖେଳା ଲୋଲା ଚାରୁ ଗ୍ରୀବା ସଙ୍ଗେ,
ଯହିଁ କୋକ କୋକବଧୂ ସଙ୍ଗେ
ଯାପୁଥାଏ ଅଶଙ୍କିତେ ଅଳସ ଦିବସ
କ୍ଲାନ୍ତିର ଗ୍ଲାନିମା ନାହିଁ, ସୁନ୍ଦର ସରସ,
ସବୁ ରମ୍ୟ, ସବୁ କାମ୍ୟ, ସବୁ ମନୋରମ ।
କୂଳେ ଶଙ୍ଖ ଘଣ୍ଟା ନାଦେ ଶ୍ରୀ ପୁରୁଷୋତ୍ତମ ।
ରଚନ୍ତି ସୁପାତି କର୍ପୂର ଚନ୍ଦନେ, ସୁପ୍ତି ଭୋଳସୁଖ
ସତେ ତେବେ ସେକି ସୃଷ୍ଟି ପାଳନ ବିମୁଖ ।
ଥାଇ ଏତେ ହେଁ ସୁଷମା ଗୋନାସା ତନୁଜା
ପାଇ ପାରିନି ଏ ଠାବେ ଅର୍ଚ୍ଚିତା ପୂଜା ।
ରାଜା ଦତ୍ତ ଦାନେ ପୁଷ୍ଟ ବିପ୍ରପୁରୀ
ଯହିଁ ନିବସନ୍ତି ବିପ୍ରେ ଆଜିଯାଏ, ପୂଜାହଂ ସବୁରି,
ସାଙ୍ଗ କିବା ପୂଜାର୍ଚ୍ଚନା ନିୟୋଗ ତାଙ୍କର
କାହିଁ ସେହି ଖ୍ୟାତି ଗ୍ରନ୍ଥ 'ରାଜ ନବର'ର
ଖ୍ୟାତି ? ସତେ ସେଇ ନିପଟ ଛଳନା
ସୁମରି ଢାଳନ୍ତି ଅଶ୍ରୁ ପୁରାଙ୍ଗନ୍ନୁଁ ଦ୍ୱିଜକୁଳାଙ୍ଗନା
ଯାଗ ଯଜ୍ଞ ସୁପଣ୍ଡିତ ଯଯାତି କେଶରୀ
ନୃପ ମଣ୍ଡଳେ ପୂଜିତ ଅଜାତ ମସରୀ
ଆଚରିଲେ ଯହିଁ ମହାଯଜ୍ଞ
ଅଣାଇ ଉତ୍ତରା ପଥୁଁ ପରମ ଦେବଜ୍ଞ ସହସ୍ରେ ଯାଜ୍ଞିକ
ଅଛିମାତ୍ର ଆସ୍ଫାଳନ ଆଜଯାଏ ଯାର
ଦାୟାଦର ଆତ୍ମ ଶ୍ଳାଘା ବୃଥା ଅହଙ୍କାର ।
ସେଇ ଯଜ୍ଞକୁଣ୍ଡୁଁ ଉତ୍ତରିଲେ ଦେବୀ ଭଗବତୀ,
ସିଂହ ବାହିନୀ ବିରଜା ରାଜୋଗୁଣେ ମହାଶକ୍ତିମତୀ
ଯହିଁ ଭକ୍ତିଜାଣି ଦେଇଗଲେ ବର—
ରାଜକୁଳ ଖ୍ୟାତ ହେଉ 'କେଶରୀ' ନାମର
ଆମ୍ରକୁଞ୍ଜ ଅନ୍ତରାଳେ ଏ ତଟନୀ ତଟେ
ଦଶ ଅଶ୍ୱମେଧ ଘାଟ ଆଜି ବି ପ୍ରକଟେ
ଏଥି ଗଙ୍ଗା ଅବତୀର୍ଣ୍ଣ ସଂକଳ୍ପ—ସମ୍ଭବା,

ତୋଳା ଯଜ୍ଞପୁରୀ (୧ ଯାଜପୁର) ଭେଦୀ ଗହନ ଅଟବୀ ।
ଭୀମକାନ୍ତ ଭୀମକୁଣ୍ଡେ ପଡ଼େ ପରା ନିଶାଥେ କୁହାଟ
ନଦୀ ଗର୍ଭ ରୋଧି ଯେଉଁ ଯାଉଁଳି କବାଟ
ପଡ଼ିଥିଲା ମଧ୍ୟମ ପାଣ୍ଡବ ଦୃଢ଼କର୍ମା ହାତେ
ସେ ହେଲାଣି ଟଳମଳ ପ୍ରବାହର ପ୍ରଚଣ୍ଡ ସଂଘାତେ ।
ଉଠ ସର୍ବେ, ବୈତରଣୀ ଆଜି ସଂହାରିଣୀ ମୂର୍ତ୍ତି
କାଳାନ୍ତକ ପ୍ରଳୟର ନିଜେଇ ପ୍ରସୂତି ।
ପ୍ରଭାତର ପ୍ରଥମ ଆଲୋକେ
ନିଦ୍ରାସୁଖ ପରିହରି ଆଚମ୍ବିତ ଲୋକେ
ଦେଖିଲେ ବିରାଟ ବନ୍ଧ ଯାଇଅଛି ଭାଜି
ପତନ ଇଙ୍ଗିତ ମାତ୍ର ପଡ଼ି ରହେ ଆଜି ।
ଅଛି ନିମ୍ନେ ଦେବଖ୍ୟାତ, ନଗ୍ନଭୀମ କୁଣ୍ଡ
ପୂଣ୍ୟାର୍ଥୀ ଚୁଅନ୍ତି ଯହିଁ ଅବାରିତ ତୁଣ୍ଡ ।
ଦେବୀ ବୈତରଣୀ କ୍ଷଣଜନ୍ମା ତିନି ଲୋକେ ବନ୍ଦ୍ୟା ।
ଥିଲୁ ଆଗେ ସୁରାଚାର ରତା ପ୍ରତ୍ୟକ୍ଷ ବା ସନ୍ଧ୍ୟା ।
ଆଜି ଲୋକାଚାର, ସେତ ବଡ଼ ସକଳ ଆଚାରୁଁ
ଭିନ୍ନ ସେ ବିଚାରଧାରା ବିହିତ ବିଚାରୁଁ ।
ପାପପୁଣ୍ୟ ଉଭଳ ସଂକଟ
ଆଜି ଯେହ୍ନେ ତୋର ତୀରେ ପକାଏ ଆଳଟ ।
ତଥାପି ବି ଆଶା ?–
ଆଶା ସେତ ମରୀଚିକା ତୃଷାଜଳ ପରି
ହାତେ ନ ଆସୁଣୁ ହାତୁଁ ଯାଏ ଅପସରି ।
ମାନିନୀ ଜନନୀ ଆଗୋ ! କେଉଁ ସ୍ୱୈରାଚାର
କରି ରଖେ ମୌନାବତୀ ତୋତେ
କହ କେଉଁ ଛାର
ଜନମିଲା ସୁତ ତୋର ରହିବ ସମ୍ଭାଳି
ଅକୁହା ତୋ ଦୁଃଖଭାରେ ଲୋତକ ନ ଢ଼ାଳି ?



॥ ୮ ॥

## ଲୋକଗୀତି

(ଉତ୍ସର୍ଗ ଏକାଙ୍କିକା)

ପରବତ ଶିଖରେ ଫୁଟିଲା ମଲ୍ଲୀ
ପାକଲା ପାନଖିଲେ ଶରଧା କଲି ରେ
ପାହାନ୍ତି ନିଶି ଜାଣି ହେଲା ସପନ
ହସି ମୁଁ ଦେଲି ଯାହା ନିବିଡ଼ ମନରେ ।
ବୋଇତ ବାହି ନେଲି ଦରିଆ ସରି
ତେରଛ ଆଖି ଦେଖା ଅଳପ କରି ରେ
ବଣିଜ କାରବାର କଉଡ଼ି ଗଣା
ଯେତେ ଗଣିଲି ହେଲା ଗୋଟିଏ ଊଣା ରେ ।

■■

॥ ୯ ॥

## ଅନୁବେଦନ

ଆଜି ମୋର ମନେ ପଡ଼େ-
ବହୁଦିନ ଆମେ ଏମିତିକା ଏକ
ବର୍ଷାସିକ୍ତ ସଞ୍ଜ ଅନ୍ଧକାର ବକ୍ଷ ଚିରି
ଘନ ଘନ ବିଦ୍ୟୁତର ଉଦ୍ଦାମ ସ୍ଫୁରଣ
ମୋର ସେଇ ଅମାନିଆଁ ଶିଶୁ ପ୍ରାଣେ
ଜନମାଇ ଅମିତ ପୁଲକ, ସେଇ କ୍ଷଣପ୍ରଭା
ଯାର ଅଗ୍ନିମୟ କାନ୍ତି ଦୂର ଆକାଶରୁ
ଏଇ ଆମ୍ରକୁଞ୍ଜ ଶୀର୍ଷଯାଏ କରୁଥାଇ
କ୍ଷଣକେ ଜ୍ୱଳନ୍ତ ।
ପୁଣି ମନେ ପଡ଼େ–
ଆରାଧ୍ୟ ପିଅର ମୋର ଅତିରିକ୍ତ ସନ୍ତାନ ବାତ୍ସଲ୍ୟେ ଭରପୂର
(ହାୟ ! କାହାନ୍ତି ସେ ଆଜି, ମୁଁ ବା ଆଉ କେତେ ଦିନ ଥିବି)
ଶୁଣାଉ ଯେ ଥିଲେ ସେଇ ବର୍ଷା ଘୋଷ ଜିଣି
ଗମ୍ଭୀର ଉଦାତ୍ତ କଣ୍ଠେ, ଛନ୍ଦୋବଦ୍ଧ ପ୍ରକାଶନେ

ଶିଶୁର ଏ ମୁଗ୍ଧ କର୍ଣ୍ଣ ପୁଟେ-
ବିଞ୍ଚୁଳି କନ୍ୟାର ସରମଶଙ୍କିତ ନବବଧୂ ଯାତ୍ରାଗାଥା ।
ମନୋରମ ଶ୍ରୁତିସୁଖକର,
ସତେ ବା ସେ କୋଉ ଆପଣା ଜନର
ପରିଣୟ ଘଟା । ବଜ୍ର ଗରଜନ ସେ ଯେମନ୍ତ
ବିବାହ ଚମକ ।
ସାଥେ ସାଥେ ମନେ ଜାଗେ ପୁଣି,
ଜଳଭାରେ ଆନମିତ ବିହ୍ୱଳିତ ମତି
ଗୁମ୍ଫିତ ମେଘର ଗୁମ୍ର ପରିବେଶ
ଦିବାଲୋକ ରୁନ୍ଧି ରଖେ ଅମାସ୍ୟା କାଳିମା
କେ ପାରିବ କଳି କହ
ଗଭୀର ନିଶୀଥ ଭାଗେ
ଘନୀଭୂତ ତମିସ୍ର ଗୁମର ।
ଅବିରଳ ଝର ଝର ଝରୁଥିବା ବାରି,
ନ ଥିବାର ତିଳେକ ବିରାମ,
ଏତେ ଯେ ଧାରାପାତ
କ୍ଳାନ୍ତି କିବା ଲାଗେ ନା ଅଙ୍ଗକୁ ।
ଜୁଳାଇ ପଡ଼େ ମୁଁ,
ଅଥଚ ସେ କେଉଁ ବିଧୁରା ନାରୀର
ଦୀର୍ଘଶ୍ୱାସ ଭଳି ସାଇଁ ସାଇଁ ଶୁଭେ ବାୟୁସ୍ୱନ
ଅଥବା ଏ ପ୍ରଳୟ ବିକ୍ଷୋଭ
ସର୍ବଂସହା ଧରଣୀକି ପ୍ଲାବିତ ନ କଲାଯାଏ
ନାହିଁ ତାର ତନ୍ଦ୍ରା, ନିଦ୍ରା ଅବସୁପ୍ତି
ଜାଣିଥାଏ ଶ୍ରମ ହରଣାର୍ଥେ ବିଶ୍ରାମ ଲାଳସା ?
ସେବର ସେ ଘନଘୋର ବିଭାବରୀ ସାଥେ
ଅଗାଧ ସେ ବାତ୍ସଲ୍ୟର ରସାସ୍ୱାଦ ନାହିଁ ଆଉ ମୋର,
ହରାଇଛି ଅବାହୁନା-ଶୈଶବର
ନିର୍ଦ୍ଦୋଷ ସାରଲ୍ୟ ନିଶ୍ଚିହ୍ନ ସେ ବିସ୍ମୃତି ଗରଭେ ।
ଆଜି ମୁହିଁ ଶୂନ୍ୟ ହସ୍ତ, ନିଃସ୍ୱ ନିରିମାଖୀ:

କି ଘେନି କରିବି ମୋର ସାଂଧ୍ୟ ଆହ୍ନିକ ତର୍ପଣ ।
ଋତୁର ପର୍ଯ୍ୟାୟେ ଆସେ ଶ୍ରାବଣ ଏଇ ଯେ
ଆଷାଢ଼ ଗଲାଣି କେଉଁ ଦିନହୁଁ ପାଶୋର ।
ଧାନକ୍ଷେତେ ଯହିଁ ଫୁଟିଥାଏ ଝରର ଫୁଆରା
ସେ ହୋଇଛି ଶୁଷ୍କ ।
ବାତାୟନ ପଥେ ଶୀକର ସିଞ୍ଚିତ
ପ୍ରଣୟିନୀ କଣ୍ଠେ ନିବିଡ଼ ଆଶ୍ଳେଷ ସ୍ପୃହା
ଆବେଗ ହରାଇ ହେଲାଣି ଶିଥିଳ ମାନେ କା ଚନ୍ଦନଚର୍ଚ୍ଚା
ଯେଣୁ ଧରଣୀର ଉତ୍‌ଫୁଲ୍ଲ ଉରସେ
ପ୍ରାଣ ମତାଣିଆଁ ସଲିଳ ଉଚ୍ଛ୍ୱାସ-
ଆଦି ତୃଷ୍ଣୀଭାବାପନ୍ନ ।
ଉଚ୍ଛଳ ଯୌବନ କଣ୍ଠେ
ମହ୍ଲାର ମୂର୍ଚ୍ଛନା- ଯୁଗର ଯା ପରମ ବ୍ୟଞ୍ଜନା-
ସେ ବି ଆଜି ଭୁଲିଯାଏ ତାଳ, ମାନ, ଲୟ ।
ତୃଷାତୁରା ଚାତକିନୀ କାନ୍ଦେ ଆର୍ତ୍ତସ୍ୱରେ
ଜଳ ଆଶେ ନ ଗଣି ବଜ୍ରାଗ୍ନି ଜ୍ୱାଳା
ଜାଣେ ନିକି ଦାତା ହାୟ ? ଯାଚିକାର ମନ ?
ବିନ୍ଦୁ ଏକ ସଲିଳ ବି ହୁଏ ଦୂର ଦୂରାନ୍ତରୀ ମାୟା ମୃଗତୃଷ୍ଣା ।
ଚାତକ ଘରଣୀ କାହିଁ ? କାହିଁ ଖର ରୌଦ୍ର ତପ୍ତା ବସୁନ୍ଧରା ?
କେ ବେଶୀ କାତରା ?
ତୃଷା ମେଣ୍ଟାଇବ ବୋଲି ଚାହିଁ ରହେ
ଆକାଶ ଅଙ୍ଗନେ, ଶଇଳଯୂଥର
ଛାୟା ସମ୍ପାତକୁ ପ୍ରତ୍ୟାଶିତ ମେଘାଗମ ମଣି ।
ନାହିଁ ବୋଲି ପରା ବୃଷ୍ଟି ମହୋତ୍ସବ
ବକୁଳ ବନାନୀ ହରାଇଛି ଅନୁରାଗ
ବିରହ ତାପିତ ପ୍ରଣୟୀ ଜନର
ନାହିଁଛି ସଞ୍ଚାର ଆର୍ଦ୍ର ଅନିଳର
ଯାର ସ୍ପର୍ଶ ଲଭି
ବିକଶିତ ଫୁଲ ହୋଇ ଶାଖେ ଶାଖେ

ନବୋଦ୍‌ଗତ କୋରକ ସମ୍ଭାର ।
ଆଚମ୍ବିତ ଲାଗେ କାହିଁକି ସୀମିତ
ଝିମାଇଁ ପଡ଼ିଛ ମନ୍ଦ୍ର ଘନଘୋଷ
କଦମ୍ବ ଶରୀରେ ତେଣୁ ଅବା ଆସୁ ନାହିଁ
ପୁଲକ ରୋମାଞ୍ଚ । ଭରା ଯମୁନାର
ତଟ ପ୍ରାନ୍ତେ, ସେଇ ପାଶୋରିଲା ପ୍ରାୟେ ନୀପ ତରୁ ମୂଳୁଁ
ଶୁଭୁନାହିଁ ଶ୍ୟାମ ମୁଖୁଁ କାରୁଣ୍ୟ ବହୁଳ ଉଦାସିଆ ବଂଶୀ
ତୁହାଇ ତୁହାଇ ।
ମାରିବାକୁ କନ୍ଦାଇ କନ୍ଦାଇ
ଉଦ୍‌ବିଗ୍ନା ରାଧାର ଅବଳା ପରାଣ
ଅତି ଅନାୟରେ ।
ଭୟ ନାହିଁ, ଛନ ପଦ ପଥ ଆଉ ନୁହେ
କର୍ଦ୍ଦମ ପିଚ୍ଛିଳ । ଯାହା ପଥିକର ପ୍ରତି ପଦପାତ
କରିଥାଏ ଆତଙ୍କିତ, ଭୀତି ସମାକୁଳ;
ଆକସ୍ମାତେ ହୁଏ ତ ବା ପଡ଼ିବ କଚାଡ଼ି ବୋଲି ।
କି ହେଲା ସେ ତୃଣାକୀର୍ଣ୍ଣ ପଥ ଓ ପ୍ରାନ୍ତର ଦିଶେ ରୁକ୍ଷ
ଯେହ୍ନେ ନିର୍ଜ୍ଜଳ ଉଷର; କୁଶାଗ୍ର ବି ଯାଏ ଶୁଖି
ପାରେ ନା ସମ୍ଭାଳି ଶ୍ରାବଣେ ବି ମେଘ ହୀନ
ତୀବ୍ର ସୌର ତାପ ।
ସୋହାଗିନୀ ପ୍ରିୟା ଲାଗି ଆଦି ଉତଳା ମୟୂର,
ପୟର ଯୁଗ୍ମେ ତା ଜାଗି ଉଠେ ନବୀନ ଆକାଙ୍‌କ୍ଷା
ନୂଆ କଳ୍ପିତ ନର୍ତ୍ତନଛନ୍ଦର ଗ୍ରୀବା ଭାଙ୍ଗି ଥରେ ଚାହେଁ ପ୍ରିୟା ମୁଖେ
ପୁଣି ଚାହେଁ ଦୂର ନଭୋଦେଶେ
ଅଧିକରେ ଲୀଳାୟିତ କରି ଗ୍ରୀବା, ବଧୂ ତୋଷଇଛି,
ନୀଳକାନ୍ତି ନବୀନ ନୀରଦ
ଉଦେ ହେଲାକ୍ଷଣି ରଚିଯିବ
ସେଇ ନର୍ତ୍ତନ କୁହୁକ ।
ଦୀର୍ଘ ଚନ୍ଦ୍ରକିତ ପଛେ ବିତାନ ମେଲାଇ ।
ଭୀରୁ ପ୍ରେୟସୀର ଯାହା ନିର୍ଭୟ ଆଶ୍ରୟ ।
ହାୟ ସେ ସୌଭାଗ୍ୟ ଯୋଗ ଦୂର ପରାହତ ଆଜି,
ଆଚମ୍ବିତୁଁ ଆଚମ୍ବିତ ପରି ଶୁଣାଯାଏ ପୁଣି
ସମଗ୍ର ଉତ୍ତରାପଥେ, ମଗଧେ ବିଦେହେ ଅବା କାମରୂପେ

ଉତ୍ତର ପଶ୍ଚିମ ଖଣ୍ଡେ, ହାହାକାର ବିଭୀଷିକା ଗଗନ ବିଦାରୀ,
ପ୍ରଳୟ ସକାଶ ସର୍ବନାଶୀ ବନ୍ୟାର ତାଣ୍ଡବ । ବିଲ କ୍ଷେତ-
ଚରାଚର ଜୀବନଧମନୀ- ଶ୍ୟାମଶସ୍ୟ ରାଜି ଯାର ନିଶ୍ଚିତ ବିଭବ,
ନିମଜ୍ଜି ସୁଗଭୀର ଗର୍ଭେ ତାର ହରାଇଛି ସତ୍ତା ।
ଲୋକାଳୟ ବାସାଏ ତରୁ ଶିଖେ ଭାସିଆସୁଥିବା ଆକୁଳେ
ଗୃହଛାତ ତଳେ କାହିଁ କେ ଆଶ୍ରିତ ଜାଣେ ନାହିଁ କେହି ।
ଆପଣା ରକ୍ଷଣେ ଅସମ୍ଭବ ଯଦି
କିଏ ବା ପଚାରେ କିଏ ଆନ ଜନ ରକ୍ଷଣ ଦାୟିତ୍ୱ ।
ଅଥଚ ଏ ଦେଶେ ମୋର ସବୁ ଝର ଯାଏ ଶୁଖି
ଉସ ପରିଯନ୍ତେ ପୂର୍ଣ୍ଣାଙ୍ଗିନୀ ବୈତରଣୀ
ସେ ଆଜି କ୍ଷୀଣାଙ୍ଗୀ, କେଉଁ ଭାଗ୍ୟ ଦୋଷୁଁ
ନାଉରୀର ଯୋଡ଼ିନାଆ ପଡ଼ିରହିଛ ଓଲଟି
ନଈଧାର ପ୍ରାନ୍ତେ ବାଲୁକା ବିସ୍ତାରେ ଅବାଞ୍ଛିତ ପରି ।
ନାହିଁ ଚଟପାଟ ପଝାରିର ମେଳ,
ଅସରାଏ ବର୍ଷା ଆସି ଚିନ୍ତାଇବା ଆଗୁଁ ପାରିଲାଣି
ଅଜାଣତେ ଅନିଚ୍ଛାରେ ସୁଦ୍ଧା ଉପୁଜାଇ ଗୋଳ,
ଜଞ୍ଜାଳ ଭିଆଣ, ଏଇ ନି କି ସତେ
ଦୁନିଆର ହାଟ ।
କେତେ କଥା କେତେ ସୁଖ ଦୁଃଖ
କେତେ ନା ଜଞ୍ଜାଳ ଜ୍ୱାଳା
ଗୋଟିକ ନ ଯାଇ ଆନଟିଏ ଆସି
ଅଧିକାର କରି ବସେ ଆଜି ଏଇ ଚିତ୍ତପଟେ
ଜର୍ଜରିତ ହୁଏ ଅନୁଭୂତି ଦୂର ଅତୀତର । ତଥାପି ତ
ଆସେ ନାହିଁ ମେଘଛାୟାସ୍ନିଗ୍ଧ ମନୋଜ୍ଞ ବାସର,
ଦେହଳୀ ପାରୁ ମୁଁ କେଉଁ ରାଜକୁମାରର
ଯୋଗୀ ହୋଇ ଯିବାର କାହାଣୀ କେନ୍ଦରା ସଂଯୋଗେ
କେତେ କିଏ କାନ୍ଦି ନି ଅଲକ୍ଷ୍ୟେ
ଝୁରି ଝୁରି ରାଜବଧୂ
ଦୁଃଖ ଭାରାକ୍ରାନ୍ତ ସଂସାରର ବିଷୟା ବିପାକୁ
ତାରିବାକୁ କୁମର ମଣିରେ ନିଠୁରା ଜନନୀ
କେ ସେ ଭିକ୍ଷାଥାଳ ଦେଇଛି ବଢ଼ାଇ ପଣତ ଉହାଡ଼େ
ଅଶ୍ରୁପୁଞ୍ଜ ଢ଼ାଳି କାତର କାରୁଣ୍ୟେ

ବିଳପାଇ ଜଗତ ଯାକର ଯେତେ ମାତୃପ୍ରାଣ ।
କାହିଁ, ତେବେକେତ ଭାଜିଲା ନି
ନିଷ୍କରୁଣ ବାଦଲର ପାଷାଣ ପିହିତ କ୍ରୂର ହିଆ ।
କି କହିବା ଏକା କେଉଁ ପାଷାଣୁଁ ନିର୍ମମ ତା' ହୃଦ
ପାରି ନାହିଁ ତରଳାଇ ମୁହୂର୍ତ୍ତକ ଲାଗି କରୁଣା କଣାକ
ଯୋଗୀ ହାତେ ସେଇ କେନ୍ଦେରାଖଣ୍ଡିକ
ସତେ ଆଜି ମୂକ ?
ଯୋଗୀ ହେବା ସ୍ପୃହା ଅବା ଗଲାଣି ମଉଳି
ବର୍ଷା ଉନ୍ମାଦନା ପଡ଼ି ଲୋଟେ ଭୂଇଁ ତଳେ
ଦେଖିଲା ନି କେହି ।
ଆଜି ନାହିଁ ଉଜ୍ଜୟିନୀ ରାଜମାର୍ଗେ
ବର୍ଷଣ ତାଣ୍ଡବ, ଝରାଇବ ବିରହୀ ଯକ୍ଷର
ଅନ୍ତସ୍ତଳୁ ଦରଦର ଅସରନ୍ତି କୋହ
ସନ୍ତ୍ରସ୍ତ ଚରଣା ଅଭିସାରିକାର
ବ୍ୟର୍ଥ ନିଶି ଜାଗରଣେ ହେରି
ଅପୂରନ୍ତ ଅଭିସାର ସ୍ପୃହା ।
ଆଜି ତେବେ ଘୋଟି ଆସେ
ସତେ ସେଇ ଦଶା ବିପର୍ଯ୍ୟୟ
ଭୁଲିଯାଏ ପ୍ରାବୃଟପ
ଦୂର ଦିଗବଳୟ ତଳେ,
ସୁକୁମାରୀ ଧରଣୀ ବଧୂର ବନ୍ଧୁଳୀ ଅଧରେ
ଅତି ଅପେକ୍ଷିତ ଚୁମ୍ବନ ଚାତୁରୀ ଚୁମ୍ବନ ଗୁମାଳ
ପୀନ ପୟୋଧରୁଁ ତାର
କ୍ଷରାଇ ପାରେନା ରେଖାଏ ଅମୀୟ ।
କୋଟି ହତଭାଗ୍ୟ ସୁତେ
ସତେ ତେବେ ହେଉଥିବ ନିରାଶ ଜର୍ଜର !!
ସତେ ନି କି କାଳଗତି
ଏତିକି କୁଟିଳା !!!



# ଅମୁହାଁ ଦେଉଳ

କୈଶୋର ଯାଇ ଯୌବନ ଦେଖାଦେଲା, ମଞ୍ଜରୀର ଚଞ୍ଚଳ ପ୍ରାଣରେ ଟିକିଏ ସଂଯମ ଆସିଲା ସତ, କିନ୍ତୁ ଅନ୍ୟମନସ୍କତା ବଢ଼ିଲା ବରଂ କମିଲା ନାହିଁ । ମଥା ବାନ୍ଧି ଦେଉ ସୁନା ମା ଉଠିଗଲାଣି ହୁଏ ତ ମଞ୍ଜରୀର ଖିଆଲ ନାହିଁ, ଶାଗ କାଟୁ କାଟୁ ପନକି ଧାରରେ ଆଙ୍ଗୁଳି କଟି ଗଲାଣି ସେ ଜଣେ ନା, କଳସୀ ଭାସି ଯାଇ ପୋଖରୀ ମଝିରେ ହେଲାଣି ଅଥଚ ସେ ଘାଟ ପଥରରେ ପାଦ ଘଷୁଛି । ମଞ୍ଜରୀ କ'ଣ ଏତେ ଭାବେ ? ଏତିକିରେ ଯେପରି ବାପା ମାଙ୍କର ଅନୁସନ୍ଧାନ ସରେ । ତାର ଅନ୍ତର ଭିତରେ କିନ୍ତୁ କେଉଁ ଏକ ଅଜଣା ପୂରବୀର ଝଙ୍କାର ଖେଳେ ସେ କଥା ସେ ନ ବୁଝି ସୁଦ୍ଧା ଅଜ୍ଞତାରେ ସଜାଗ ହୋଇ ଉଠେ । ମନେ ମନେ ସେ ହସେ, ଏଟା ତାର କି ପ୍ରବୃତ୍ତି !

ସଞ୍ଜ ଆସେ, ଦିବସର କଳରୋଳ କ୍ରମେ ରାତ୍ରିର ଅନ୍ଧକାରରେ ଆତ୍ମଗୋପନ କରେ । ରାତି ୧୦ଟା ବାଜୁଣୁ ଗାଁଟା ସାରା ନିର୍ଜନତାର ଝାଇଁରେ ଭରିଯାଏ । ଖାଲି ଝିଙ୍କାରୀର ଝିଁ ସ୍ୱରଟିରେ ମାତ୍ର ଯାହା ନୀରବ ପ୍ରକୃତିର ଜୀବନ-ବ୍ୟଞ୍ଜନା ଜଣି ହୁଏ । ମଞ୍ଜରୀ ଶଯ୍ୟା ଗ୍ରହଣ କରେ, କିନ୍ତୁ ନିଦ ତା ଆଖିକୁ ସହଜରେ ଆସେ ନା । ସେ ଶୁଣିବାକୁ ପାଏ ଛାତ ଭିତରେ ତାର ପୂରବୀର ତେଜ ଆତ୍ମପ୍ରକାଶ ପାଇଁ ପଥ ଖୋଜି ବୁଲୁଛି । ସ୍ୱରର ନୂତନତା ଓ ଚିରଚମତ୍କାରିତାରେ ସେ ମୁଗ୍ଧ ହୁଏ, ସେଇ ତାନ ଘେନି କଣ୍ଠ ତାର ସଙ୍ଗୀତମୟ ହୋଇ ଉଠେ, କିନ୍ତୁ ଗାଇବାର ଅଧିକାର ନାହିଁ ଜାଣି ନାରୀ ଜନ୍ମ ପ୍ରତି କ୍ଷୋଭ ଜାଗେ ।

ବିଛଣା ଧରିବା ଆଗରୁ ସେ ଦିନ ରାତିରେ ସେ ଶୁଣିଲା ଆଉ ଏକ ପୂରବୀ, ଭିତରେ ନୁହେ ବାହାରେ । କ୍ଷୀଣବାହିନୀ ତଟିନୀର ଅପର ତୀରରୁ କେତେ ଦୂରରୁ ଏ ସ୍ୱର ପ୍ରବାହ ଆସୁଛି କଳିବାର ଚେଷ୍ଟା କଲା ସେ, କିନ୍ତୁ ତାର କୌତୁହଳୀ କାମନା ଉପରେ ଗୋଟିଏ ଆଲୋଡ଼ନ ସୃଷ୍ଟି କରି ସେ ସ୍ୱର ସେଦିନ ହଠାତ୍ ବନ୍ଦ ହୋଇଗଲା ।

ପର ଦିନ ରାତି ଠିକ୍ ସେତିକିବେଳେ । କୃଷ୍ଣା ନିଶୀ ଦେହରେ କମ୍ପନ

ଖେଳିଗଲା । ମୁଗ୍ଧା ହରିଣୀ ପରି କାନ ପାତି ମଞ୍ଜରୀ ଶୁଣିଲା ତା ଅନ୍ତରର ପ୍ରବୀ ହାର ମାନିଛି ନଦୀ-ତୀରର ବଂଶୀ-ଧ୍ୱନିରେ । ରୂପ ଧରି ସେ ଧ୍ୱନି ତରଙ୍ଗ ଦୋହଳର ଦୌଡ଼ି ଆସୁଛି ତାରି ସନ୍ଧାନରେ । ବିଛଣା ଛାଡ଼ି ସେ ଆସି ଖୋଲା ଝରକା ନିକଟରେ ଠିଆ ହେଲା । ସେ ଚାହିଁଲା ନିକଟରୁ ଦୂରକୁ, ଦୂରକୁ ଦୂରକୁ, କିନ୍ତୁ ଆଖିରେ ଦୃଷ୍ଟି ତାର ଅନ୍ଧକାରର ଗଭୀରତା ଭିତରେ ହଜିଗଲା ପଥ ନ ପାଇ ।

କିନ୍ତୁ ନିଷ୍କରୁଣ ବଂଶୀ ତାର ସମସ୍ତ କାରୁଣ୍ୟ ଘେନି ଅପ୍ରବୀଣାର ଦୁର୍ବଳତା ସ୍ପର୍ଶ କରି ଚାଲିଗଲା । ହଜିଲା ସ୍ୱରର ଖିଅ ଖୋଜିବାକୁ ଯାଇ ସେ ଦେଖେ ତା ଆଖିରୁ ଦୁଇ ବିନ୍ଦୁ ଅଶ୍ରୁ ଝରିପଡ଼ିଛି ବଂଶୀର ଅଜଣା ଦୁଃଖରେ । ଏଡ଼େ କରୁଣ ସେ ଧ୍ୱନି !

ନିତି ସେତିକିବେଳେ ବଂଶୀ ବାଜେ, ଠିକ୍ ସେଇଠି, ସେଇପରି କରୁଣ, ସେଇପରି ପ୍ରାଣସ୍ପର୍ଶୀ । ମଞ୍ଜରୀ ଆସି ଖୋଲା ଝରକା ନିକଟରେ ଠିଆ ହୁଏ ଠିକ୍ ସେହିପରି । ବଂଶୀ ଧ୍ୱନି ନୀରବି ଯାଏ, ବିଛଣାକୁ ଯିବା ଆଗରୁ ସେ ଦେଖେ ତାର ତରଳିଲା ପ୍ରାଣର ପାଣିତକ ଅଶ୍ରୁରୂପେ ଆଖିରୁ ଝରି ଗାଲ ଦିଓଟିକୁ ସିକ୍ତ କରିଛି । ବଂଶୀର ଦୁଃଖ କ'ଣ ସେ ଜାଣେ ନା, ଜାଣିବାକୁ ଚେଷ୍ଟା ସୁଦ୍ଧା ସେ କରିନାହିଁ; ତଥାପି ନିଜକୁ ତାର ଦୁଃଖର ଭାଗୀ କରି ନେବାକୁ ଆନନ୍ଦ ପାଏ । ବିଛଣାରେ ପଡ଼ି କେବେ କେବେ ସେ ମାତ୍ର ଭାବିଛି ସାଇର ସବୁ ଝିଅ କ'ଣ ବଂଶୀର ମର୍ମକହାଣୀରେ ସମଦୁଃଖିନୀ ହେବାକୁ ଯାଇ ଉଜାଗରରେ ରାତି ପୋହାନ୍ତି ? ସେ ସମସ୍ତଙ୍କ ଆଗରୁ ତାର ଦରଦୀ ମନ ଧ୍ୱନି ଅନୁସରଣ କରି ଧାଇଁ ଯିବାକୁ ଚାହେଁ ସେଇଠିକି ଯେଉଁଠି ବସି ଅପରିଚିତ ଉଦାସୀ ତାର ଦୁର୍ବଳ ବେଦନାକୁ ସୁର୍ ଦେଇ ତରଙ୍ଗାୟିତ କରୁଛି । ଦୁଃଖ କ'ଣ ବୁଝିବାର ଅବସର ତାର କେବେ ଘଟି ନାହିଁ । ସବୁ କ୍ଷେତ୍ରରେ ନିର୍ଲିପ୍ତ, ଉଦାସୀନ ରହିବାଟା ସେ ଦିନ ଯାଏ ଯେପରି ଥିଲା ତାର ଧର୍ମ କିନ୍ତୁ ଅଜଣା ଦୁଃଖର ମୂର୍ଚ୍ଛନା ଘେନି ଏ ବଂଶୀ କି ଆକର୍ଷଣ ଲଗାଇ ଦେଲା କେ ଜାଣି, ତା କାନରେ ପଡ଼ିଲା ଦିନଠୁ ଏ କାରୁଣ୍ୟ ହୋଇ ଉଠିଲା ତା ନିଜର । ଏମିତି କି ପରିବର୍ତ୍ତନ ଆସେ ।

* * * *

ନବ ଦମ୍ପତିଙ୍କ ସୁନାର ସଂସାର ହସି ଉଠିଲା । ମଧୁଯାମିନୀରେ ଆତ୍ମହରା ତରୁଣ କହିଲା, 'ରାଣୀ, ପ୍ରିୟା, ମୋର, ତୁମକୁ ଘେନି ସ୍ୱର୍ଗସୁଖ ସୁଦ୍ଧା ମୁଁ ଅବଜ୍ଞା କରେ ।' ସରମରଙ୍ଗା ନବ ବଧୂ ଭୂଇଁ ତଳେ ଲୋଟିବାକୁ ମନ ବଳାଇଲା । ତରୁଣ ମନେକଲା ତା ଜୀବନରେ ଏ ଜ୍ୟୋତ୍ସ୍ନା-ପ୍ଲାବନ । ପ୍ରେୟସୀର ପୂର୍ଣ୍ଣ-ଶଶୀ ପରି ମୁଖକାନ୍ତିରେ ଫୁଟି ନ ଫୁଟିଲା ପ୍ରାୟ ବିଷାଦର ଅଳ୍ପାଭାସ ତା ସୌନ୍ଦର୍ଯ୍ୟ ସୃଷ୍ଟିରେ ଆଣି ଦେଇଥିଲା ବାସ୍ତବତା । ଯା ଛଡ଼ା ଅନ୍ୟ ଯା କିଛି ବାସ୍ତବ, ସେଥିରେ ନା ଥିଲା

ତାର ମନ ନା ଦେଖିବାର ଅବସର, ଅନ୍ତତଃ ତାଙ୍କ ସେ ମନେକଲା । ସେଠି ନିଃସଙ୍ଗ ସେ ଓ ତାର ପ୍ରିୟା । ଅସହିଷ୍ଣୁ ନାରୀ ମହଲରେ କଥା ଉଠିଲା, - 'କେ ଜାଣି କୁହୁକିନୀ ବୋଧହୁଏ ମନ୍ତ୍ର ଜାଣେ ।'

ତରୁଣ ଜାଣେ ନା, ହୁଏତ ତୃପ୍ତିର ଏ ପ୍ରଥମ ଅବସାଦ । ଏଇ ସେ ପ୍ରଥମ ଲକ୍ଷ୍ୟ କଲା ପ୍ରିୟାଠାରୁ ତାର ଅନ୍ୟମନସ୍କତା ଆକୁଳ ପ୍ରାଣ ତାର ବୁଝିବାକୁ ପ୍ରୟାସ କଲା । କିନ୍ତୁ କବି-ଭାଷାରେ ଚକୋର ସେ, ଜ୍ୟୋସ୍ନାର ସୀମାରେଖା ସେ ପାରରେ କେଉଁଠି ଅନ୍ଧକାରର ସ୍ୱର୍ଶ ଖୋଜି ପାଇବ କାହୁଁ ?

ସେ ନିଜେ ବ୍ୟଥା ଭୋଗୁ, କିନ୍ତୁ ତାର ସୁକୁମାରୀ ପ୍ରିୟାର ପ୍ରାଣରେ ଆଘାତ ସେ ଦେବ, ଏ ଦୁର୍ବଳତା ତାର ନ ହେଉ । ଏଇଯୋଗୁଁ ବୋଧହୁଏ ତାର ଗୋପନ ବ୍ୟଥା କ୍ରମେ ଗୁରୁ ହେବାର ଉପକ୍ରମ କଲା ।

ଆଦରିଣୀର କଷ୍ଟ ହେବା ଜାଣି ସୁଦ୍ଧା ଦିନେ ତରୁଣ ଆପଣାର ଦୁର୍ବଳତା ଅତିକ୍ରମ କରି ପଚାରିଲା, "ତୁମେ ଏତେ କ'ଣ ଭାବ ମଞ୍ଜରୀ !" ତରୁଣର ଅତିପ୍ରିୟ ହସଟିଏ ମଞ୍ଜରୀର ଅଧର ପୁଟରେ ଦେଖା ଦେଲା । "କାହିଁ ମୁଁ ତ କିଛି ଜାଣେ ନା": କହି ସେ ପ୍ରିୟର କଣ୍ଠଲଗ୍ନ ହେଲା, ମାତ୍ର ତାକୁ ଭାବିବାକୁ ହେଲା, 'ହଁ ସତେ ତ; କ'ଣ ମୁଁ ଏତେ ଭାବେଁ ?' ଯେତେଦୂର ମନେପଡ଼େ, ତାର ଅତୀତ ସେ ଘାଣ୍ଟିଲା, ମାତ୍ର କିଛି ସନ୍ଧାନ ବି ପାଇଲା ନାହିଁ । ଅନ୍ତରଙ୍ଗ ଆଲିଙ୍ଗନର ଉଷ୍ଣତା ଓ ଶ୍ୱାସର ସୌରଭରେ ତରୁଣର ଭିତର ବାହାର ପୂର୍ଣ୍ଣ ହୋଇ ଉଠିଲା । ପ୍ରଶ୍ନ କରିବାର ସ୍ଥାନ ସେଠି ଥାଇ ପାରେ ନା ।

ପ୍ରିୟ ପ୍ରିୟାର ଆଳାପରେ ସେ ଦିନ ଗୁଞ୍ଜନ ଲାଗିଥିଲା । ମେଘମୁକ୍ତ ଆକାଶର ନିର୍ମଳ ଜ୍ୟୋସ୍ନାଘର ଭିତରେ ପ୍ରବେଶ କରି ମଞ୍ଜରୀର ଦୋଳାୟିତ କେଶ ଦାମକୁ ଆହୁରି ଲୋଭନୀୟ କରିଥିଲା । ତରୁଣ ଭାବୁଥିଲା, ଏହାହିଁ ସୁନ୍ଦର, ଅତି ସୁନ୍ଦର ଦଣ୍ଡକ ପରେ କିନ୍ତୁ ସେ ଲକ୍ଷ କରି ପାରିଲା ମଞ୍ଜରୀ ଭାବୁଛି । ନିଜର ସର୍ବସ୍ୱ ଦେଇ ସୁଦ୍ଧା ପ୍ରିୟାର ଗୋପନ ବ୍ୟଥାଟିକୁ ଆବିଷ୍କାର କରିବାରେ ତାର ଅସାମର୍ଥ୍ୟ ତାକୁ ଯେତିକି ବାଧିଲା ସେତିକି ତାର ମନେ ହେଲା ସେ ଅଭାଗା ।

ଦୂରରେ, ବୋଧହୁଏ ନଦୀ ଆର ପାରରେ, ଭରା ରାତ୍ରିର ନୀରବତାକୁ ଚଞ୍ଚଳ କରି ବଂଶୀ ବାଜି ଉଠିଲା କରୁଣ, ଅତି କରୁଣ । ମଞ୍ଜରୀ ପ୍ରାଣରେ ଆସିଲା ଚମକ । କେତେକାଳ ପୂର୍ବର କେଉଁ ଅସ୍ପଷ୍ଟ ବ୍ୟଥାସ୍ମୃତି ଆଜି ଯେପରି ପୁଣି ରୂପାୟିତ ସେ ମନେ କଲା । ମନ ପ୍ରାଣ ଦେଇ ଶୁଣିବାକୁ ସେ ଭଲପାଇଲା - ଆଉ ଯେତିକି ଶୁଣିଲା, ସେତିକି ଭାବିଲା, ଏ ବୋଧହୁଏ ପୂର୍ବ ଜନ୍ମର ତା'ର ଅଙ୍ଗଲିଭା କାରୁଣ୍ୟ । ତାର ବେଦନା ଭାଷା ହୋଇ ଦେଖା ଦେଲା । ନିଜକୁ ପ୍ରଶ୍ନ କଲା ପରି ସେ କହି ଉଠିଲା, ବଂଶୀର୍ ଦୁଃଖ କଣ ?

ଉତ୍ତର ଦେଲା ତରୁଣ, "ତୁମେ ତେବେ ଏଇ କଥା ରାତି ଦିନ ଭାବ ?"

କାହାରି ଉତ୍ତର ମଞ୍ଜରୀ ଚାହିଁ ନଥିଲା । ସୁତରାଂ କଥାଟା ଘରର ଅନ୍ଧକାରରେ ହିଁ ମିଳାଇ ଗଲା । କିନ୍ତୁ ତରୁଣ-ଜୀବନରେ ହେଲା ଏ ମସ୍ତ ବଡ ଆଘାତ ।

ଭାବାତୁର ପ୍ରାଣରେ ତାର ଅଗାଧ ସରଳ ବିଶ୍ୱାସ । ସେଠି ସଂଶୟର ଛିଟା ପଡ଼ିଲା, ତରୁଣ ତାକୁ ବିଶ୍ୱାସ କରିବାକୁ ରାଜି ହେଲା ନାହିଁ। କିନ୍ତୁ ଛିଟାର ସଂକ୍ରମଣକୁ ରୋଧି ନ ପାରି ନିଜ ଉପରେ ହିଁ ବିରକ୍ତ ବଢିଲା ତାର ।

ହେତୁହୀନ ବ୍ୟବଧାନ ଏମିତି ହେଲା ସୃଷ୍ଟ । କରୁଣର ଉଦ୍ଦାମ ଆକାଙ୍କ୍ଷାରେ ତାର ପୂର୍ବ ବିଭବ ଆଉ ରହିଲା ନାହିଁ; ସେଠି ଦେଖାଦେଲା ଅବସାଦ । ଶକ୍ତିହୀନ ପରି ସେ ଦେଖିଲା ଓ ବୁଝିଲା, କିନ୍ତୁ ଏ ସୁଅ ମୁହଁରେ ଭାସିଯିବା, ଛଡ଼ା ତାର ଅନ୍ୟ ଗତି କିଛି ନଥିଲା । ହତଭାଗ୍ୟ ସ୍ୱାମୀ ପତ୍ନୀଠାରେ ଅଭିଳାଷର ଆକର୍ଷ ଛାଡ଼ି ଅନ୍ୟ ଅନ୍ୟ କିଛି ସେ ଦେଖିପାରେ ନା ।

* * * *

ସେଦିନ ଗୋଟାଏ ଦୁଃସ୍ୱପ୍ନ ଦେଖି ତରୁଣର ନିଦ ଚାଉଁ କରି ଭାଙ୍ଗିଗଲା । ପତ୍ନୀପ୍ରାଣ ସ୍ୱାମୀ ପ୍ରଥମେ ଖୋଜିଲା ପ୍ରିୟାକୁ, ଯେପରି ସେ ଆଜି ଅନନ୍ତ ବିରହୀ । ମଞ୍ଜରୀର ସ୍ଥାନ ଖାଲି ପଡ଼ିଲା । ଶଙ୍କା ତାର ହେଲା, କିନ୍ତୁ ଜୋରକରି ତାକୁ ଦମନ କଲା । ମିନିଟ୍ ପରେ ମିନିଟ୍ କଟିଗଲା, ପ୍ରିୟା ତାର ଫେରେ ନା । ଆଶଙ୍କା ତାର ବଢ଼ି ଚାଲିଲା, ତାକୁ ଆହୁରି ଦୁର୍ବଳ, ଆହୁରି ନିଶକ୍ତ କରି ଭାସି ଆସୁଥିଲା ଦୂରରୁ ସେଇ ରାତିର ସେଇ ବଂଶୀ-ଧ୍ୱନି ।

ଅଗଣାକୁ ଆସି ଦେଖେ ସେଠି ବି ମଞ୍ଜରୀ ନାହିଁ । ବାଡ଼ି ଦୁଆର ଦେଲା । ଅନ୍ତର ତମାମ ତାର ଆତଙ୍କ ଘେରିଗଲା । କୃଷ୍ଣା ତ୍ରୟୋଦଶୀ ରାତି । ଏ ଘନ ଅନ୍ଧକାରକୁ ନ ଡରି ମଞ୍ଜରୀ ଗଲା କୁଆଡ଼େ ? ଅଶୋକ ଗଛ ମୂଳରେ ଯେଉଁଠି ଅନ୍ଧକାର ଆହୁରି ନିବିଡ଼ ହୋଇ ଉଠିଛି ତା'ର ମନେ ହେଲା ସେଠି ଗୋଟାଏ ମୂର୍ତ୍ତି । ସମ୍ଭବତଃ ମଞ୍ଜରୀ । ନିକଟେର ହୋଇ ସେ ଦେଖିଲା ଅଶୋକଗଛକୁ ଆଉଜି ତାର ଜୀବନାଧିକା, ସେଇ ଅଶୋକ ଗଛର ଗଣ୍ଡିଟି ପରି ନିସ୍ପନ୍ଦ । ଦୂରରୁ ଭାସି ଆସୁଥିବା ବଂଶୀ-ଧ୍ୱନିରେ ହିଁ ସେ ତନ୍ମୟ ଏ କଥା ବୁଝିବାକୁ ତରୁଣର ବେଶୀ ଡେରି ହେଲା ନାହିଁ ।

ସେ ଡାକିଲା, "ମଞ୍ଜରୀ" ହୃଦୟର ଆବେଗ ଘେନି କଣ୍ଠ ସ୍ୱର ତାର କମ୍ପ ।

ମଞ୍ଜରୀ ଆଦୌ ବିଚଳିତ ହେଲା ନାହିଁ । ସେହି ଅବସ୍ଥାରେ ହିଁ କହି ପକାଇଲା "କି ସୁନ୍ଦର, କି କରୁଣ ! ଶୁଣ, ଗୋଳ କରନା"

ଆଲିଙ୍ଗନ-ଅଭିଳାଷ ତରୁଣର ପ୍ରବଳ ହୋଇ ଉଠିଥିଲା, କିନ୍ତୁ ଅଧ ପଥରେ

ତାହା ଯେପରି ପାଇଲା ଏକ ବାଧା ପର୍ବତ ପରି ଅଲଂଘ୍ୟ, ଅବାକ୍ ସେ ସେଇଠି ଠିଆ ହୋଇ ରହିଲା, ପୁରୁଷର କ୍ଷୁଣ୍ଣ ଅଭିମାନ ଆଜି ତାର ଜାଗି ଉଠିଲା ଗର୍ଜନ କରି ।

ତରୁଣର ଫେରିବା ପଛେ ପଛେ ଧଡ଼କିନା ଯେଉଁ ଶବ୍ଦ ହେଲା ସେତିକି ଯାଇ ମଞ୍ଜରୀର ଧ୍ୟାନ ଭାଙ୍ଗିଲା । ସେ ଦ୍ୱାର ନିକଟକୁ ଆସି ଦେଖେ କବାଟ ରୁଦ୍ଧ । ଭିତରୁ ସେତେବେଳକୁ ନୀରବ ବଂଶୀର ଶେଷ ରେଶ୍‌ଟି ଅନ୍ଧାର ଭିତରେ ମିଳାଇ ଗଲାଣି ।

ଦେବତାର ଦେଉଳ ମଞ୍ଜରୀ ପାଇଁ ସେହି ଦିନଠୁଁ ହେଲା ଅଗମ୍ୟ । ନିଶୀଥ ବଂଶୀର ଅବହେଳିତ ସ୍ୱରଟି ପରି ସେ କେବଳ ଭାସି ବୁଲିଲା ଦେଉଳ ବାହାରର ତିମିରାବରଣରେ ।

## ଫଲଗୁ-ଧାରା

ଏମିତି ନିର୍ଜନ ନିଛାଟିଆ ସ୍ଥାନଟି, ଏଠି ପୁଣି ପ୍ରେମ-ସ୍ରୋତର ପ୍ରାଣବାନ୍ କଳତାନ ? ଅବିଶ୍ୱାସୀଏ କହିବେ ନିରାଟ ମିଛ, କବି-କଳ୍ପନା । ତଥାପି କଥାଟି ସତ ।

କ୍ଷୁଦ୍ର ବଙ୍ଗଳା ଘରଟି, ଠିକ୍ ନିମ୍ନରେ ଗୋଟିଏ ଛୋଟ ନଦୀ, ଚିରନୀରା । ଅଧ ମାଇଲ ଭିତରେ ଗ୍ରାମ ଘର କିଛି ନାହିଁ । ବଙ୍ଗଳାହତା ଭିତରେ ଚୌକୀଦାରର ଘରଟି ନ ଥିଲେ ଦିନ ଦିପହରେ ଶ୍ମଶାନର ଝାଇଁ ବାଜନ୍ତା । ନିର୍ଜନତାକୁ ଛାଡ଼ି ଦେଲେ ସ୍ଥାନଟି ନିର୍ମଳ, ମନୋରମ । କ୍ୱଚିତ୍ କେବେ କେହି ବଙ୍ଗଳାରେ ରାତ୍ରିଯାପନ କରିଛନ୍ତି ।

ଏହି ବଙ୍ଗଳାର ଗୋଟିଏ କୋଠରୀରେ ଗୋଟିଏ ଆରାମ ଚୌକୀରେ ବସି ଏକାକୀ ମୁଁ ଗୋଟିଏ ଛୋଟ କାଗଜରେ କଣ ଲେଖୁଥିଲି ଓ ଭାବୁଥିଲି । ସାମନା କାନ୍ଥ ଦେହରେ ଟଙ୍ଗା ଗୋଟାଏ ବଡ଼ ଆଇନା । ଆଇନାକୁ ଆଶ୍ରୟ ଦେଉଥିବା ଦୁଇଟି ବଡ଼ ଲୁହା କଣ୍ଟା ମଧ୍ୟରୁ ଗୋଟିକରେ ବସିଛି ଗୋଟିଏ ବାଇଚଢିଆ, ଆଉ ଅନବରତ ଖୁମ୍ପୁଛି ଆଇନା-କାଚକୁ । ପ୍ରଥମେ ମୁଁ ମନେକଲି ଏହା ବୋଧହୁଏ ଆଇନା ଉପରେ ବସୁଥିବା ଛୋଟ ଛୋଟ ପୋକଗୁଡ଼ିକରେ ଚଟିଆଟିର ଉଦର-ତୃପ୍ତି-ସାଧନ । କିନ୍ତୁ ପ୍ରାଣ ଭିତରେ ଯାର ଆଉ ଏକ ତୀବ୍ର ଅଗ୍ନି ଜଳୁଛି, ଜାଣେ ନା ଜଠରାନଳର ତୀବ୍ରତା ସେଠି କେତେ ? କ୍ରମେ ମୋର କୌତୂହଳ ବଢାଇ ପକ୍ଷୀଟି ଯେଉଁ ଆବଭାବ ପ୍ରକାଶ କଲା, ସେ ସବୁରୁ ଅନୁମାନ କରିବାକୁ ଇଚ୍ଛା ହେଲା, କ୍ଷୁଧା-ନିବାରଣର ପଛାଠାରୁ ଆହୁରି ବେଶୀ କିଛି ଅଛି ଏଠି । ଦେଖିଲି ପକ୍ଷୀଟି ଆଇନାକୁ ଚାହିଁ ଚାହିଁ ଖୁମ୍ପିବାରେ ଲାଗିଛି, ଆଉ ମଝିରେ ମଝିରେ ଝାଡ଼ି ଝାଡ଼ି ହୋଇ ନିଜ ଅଙ୍ଗ ଆଡ଼କୁ କ୍ଷଣିକ ଦୃଷ୍ଟି ଦେଇ ପୁଣି ପରେ ଆଇନା-କାଚକୁ ଖୁମ୍ପୁଛି ।

ଖୁମ୍ପିବାଟା ଯେପରି ତାର ମୁଖ୍ୟ ଉଦ୍ଦେଶ୍ୟ ।

ରହସ୍ୟ ! ପକ୍ଷୀ ପ୍ରାଣରେ ରହସ୍ୟ ! ଆଶ୍ଚର୍ଯ୍ୟ ଲାଗିଲା । ରହସ୍ୟ-ଭେଦ ପାଇଁ ସ୍ପୃହା ଜାଗିଲା । ମନେକଲି ପ୍ରତିଛବିଟିକୁ ଆଉ ଏକ ପକ୍ଷୀ ମନେକରି ହୁଏ ତ ଏ ଦ୍ୱନ୍ଦ୍ୱଯୁଦ୍ଧ-ଲାଳସୀ । ନିର୍ବୋଧ ସେ କଣ ବୁଝେନା ଚଞ୍ଚୁ-ବ୍ୟଥା କେବଳ ସାର - ଆଇନା ଉପରୁ ତାକୁ ଘଉଡ଼ାଇ ଦେଇ ଆଶ୍ୱସ୍ତ ହେଲି ।

ଦଶ ବାର ମିନିଟ୍ ପରେ ପୁଣି ହତଭାଗା ଲେଉଟି ଆସି ଆପଣାର ନିର୍ବୋଧତା ଦେଖାଇ ବସିଲା, ପୁଣି କାଚକୁ ବା ତା ସ୍ଥାନରେ ନିଜ ପ୍ରତିବିମ୍ବକୁ ଖୁମ୍ପି ଖୁମ୍ପି । ଅନ୍ତତଃ ମୁଁ ମନେକଲି ଏ ତାର ନିର୍ବୋଧତା । ବିରକ୍ତି ପରିବର୍ତ୍ତରେ ହେଲା ଦୟା, ପୁଣି ଘଉଡ଼ାଇ ଦେଲି, ସେ ଯାଇ ବସିଲା ପଙ୍ଖା ଉପରେ । ନିର୍ବାକ୍ ବିହଙ୍ଗ; ସେ ଯାହାକୁ ପ୍ରତିଦ୍ୱନ୍ଦ୍ୱୀ ମନେକରେ ତା ପ୍ରକୃତ ପ୍ରତିଦ୍ୱନ୍ଦ୍ୱୀ ନୁହେ; ଆପଣାର ପ୍ରତିରୂପ ମାତ୍ର । ଏଇ କଥା ବୁଝାଇ ଦେବାପାଇଁ ମୁଁ ଯାଇ ଆଇନା ନିକଟରେ ଛିଡ଼ା ହୋଇ ପାନିଆଁ ଧରି କେଶବିନ୍ୟାସ କଲି - ଯଦି ଏଇଟା ତାକୁ ବୁଝାଇବା ଭଳି ଉପାୟ ହୋଇପାରେ । ହା ରେ ବିଚାରବୁଦ୍ଧିଦୃପ୍ତ ମାନବ !

କିନ୍ତୁ ନିରୀହ ବିଚାରା ସେ ସବୁ ବୁଝିବ କାହୁଁ ? ଆଇନା ନିକଟରୁ ମୋର ଫେରିବା ସଙ୍ଗେ ସଙ୍ଗେ ତାର କଳ୍ପିତ ଯୁଦ୍ଧର ପୁନରାଭିନୟ ।

ଦ୍ୱିପ୍ରହରର ଏଇ ଅସହ୍ୟପ୍ରାୟ ନିର୍ଜନତା ଭିତରେ ସମୟ-କ୍ଷେପଣର ଏଇ ନିର୍ଦ୍ଦୋଷ ପନ୍ଥାଟି ଯେପରି ମୁଁ ନୂଆ ଆବିଷ୍କାର କରି ପାଇଛି । ଏଇ ଅଭିନୟ ଉପଭୋଗ କରୁଁ କରୁଁ କେତେବେଳେ ମୁଁ ଶୋଇ ପଡ଼ିଲି ଜାଣେନା । ତନ୍ଦ୍ରା ଭେଦ କରି ସୁଦ୍ଧା ପକ୍ଷୀଟିର ଚଞ୍ଚୁଘାତ ଶୁଭୁଥିଲା ଟିକ୍, ଟିକ୍, ଟିକ୍ ।

ଉଠି ଦେଖେ ହତଭାଗା ସେଇପରି ବ୍ୟସ୍ତ, ସେଇ ଅଭିନୟରେ । ତୃପ୍ତିର ଅବସାଦରେ ମୋର ଆସିଲା ବିରକ୍ତି । ଟେବୁଲ୍ ଉପରୁ ପାନିଆଁଟା ଫିଙ୍ଗିଲି ପକ୍ଷୀ ଉଦ୍ଦେଶ୍ୟରେ । ପକ୍ଷୀଟିର ଡେଣାରେ ବାଜି ପାନିଆଁଟି ପଡ଼ିଲା ତଳର ପକ୍କା ଚଟାଣ ଉପରେ । ପାନିଆଟା ଖଟ୍ କରି ଦୁଇ ଖଣ୍ଡ ହୋଇଗଲା । ପକ୍ଷୀଟି ଉଡ଼ିଗଲା, ମୁଁ ଲକ୍ଷ୍ୟ କଲି ମାତ୍ର । କିନ୍ତୁ ତା ବେଦନାର ଯେ ଗୋପନ ଫଲ୍ଗୁ-ଧାରା ତାର ସନ୍ଧାନ କଣ ମୁଁ ପାଇଲି ? ସେ ଯେ ସେହିପରି ଛପି ରହିଗଲା !

ବେଳା ଚାରିଟା । ଚୌକୀଦାର ଆସି ଘର ସଫା କରିବାରେ ବ୍ୟସ୍ତ । ଜଣେ ମାନବର ଏ ଅବସ୍ଥିତିକୁ ଲକ୍ଷ୍ୟ ନ ରଖି ପୁଣି ପକ୍ଷୀଟି ଆସିଲା ସେଇ ଆଇନା ପାଖକୁ, ଆସି ସେହିପରି ତା ପ୍ରତିବିମ୍ବକୁ ଖୁମ୍ପିବାରେ ଲାଗି ପଡ଼ିଲା । ବାରନ୍ଦାରେ ଠିଆ ହୋଇ ମୁଁ ଦେଖିଲି ତାର ସେହି ଆଚରଣ । ମୋର ଆଗ୍ରହ ବଢ଼ିଲା । ଚୌକୀଦାର ନିକଟରୁ କୌଣସି ସନ୍ତୋଷଜନକ ଉତ୍ତର ପ୍ରତ୍ୟାଶା ନ କରି ସୁଦ୍ଧା ତାକୁ ପଚାରିଲି "ଚଟିଆଟି କାହିଁକି ବରାବର ଏ ଆଇନାଟିରେ ଖୁମ୍ପାଖୁମ୍ପି କରୁଛି କି

ରେ ?''

ଚୌକିଦାର ଝାଡୁ ଛାଡ଼ି ମୋ ମୁହଁକୁ ଥରେ ଚାହିଁ ପୁଣି ପକ୍ଷୀ ଆଡ଼କୁ ଦୃଷ୍ଟି ଫେରାଇଲା । କହିଲା, ''ତାର ଗୋଟାଏ ଦୁଃଖ ଅଛି ବାବୁ ।''

ପକ୍ଷୀ-ଜୀବନରେ ଇତିହାସ ! ପୁଣି ଦୁଃଖର ? ମୁଁ ଅପ୍ରତ୍ୟୟ କଲାପରି କହିଲି; ''କ'ଣ କହୁଚୁରେ ?''

''ହଁ ବାବୁ ଶୁଣନ୍ତୁ'' ସେ କହିଲା ।

ଆରାମ ଚୌକୀ ଖଣ୍ଡ ଟାଣି ମୁଁ ବସିଲି । ଚୌକୀଦାର ପକ୍ଷୀର ଇତିହାସ ବ୍ୟାଖ୍ୟା କଲା । କହିଲା -

''ଏମାନେ ଥିଲେ ଦ୍ୱି ପ୍ରାଣୀ । ଏ ଘର ଭିତରେ ଏତେ ଯେ ଚଟିଆ ଦେଖୁଛନ୍ତି - ସେମାନଙ୍କ ସଙ୍ଗେ ଏ ଦୁହିଁଙ୍କର ମୋଟେ ମିଳାମିଶା ହୁଏନା । ଯେଉଁଠିକି ଯାନ୍ତି ଦୁହେଁ, ଆହାର ଖୋଜିଲେ ଦୁହେଁ ଏକାଠି, ଚରି ବୁଲୁଥିଲେ ଦୁହେଁ, ଉଡ଼ିଗଲେ ଦୁହେଁ - ମାଣିକଯୋଡ଼ । ବସା ବାନ୍ଧିବାକୁ ଛଣ କୁଟା ଗୋଟାନ୍ତି ଦୁହେଁ ଏକାଠି । ସବୁଠାରୁ ବଡ଼ କଥା ଥିଲା, ଦୁହେଁ ଏଆଡୁ ସେଆଡୁ ଉଡ଼ି ଆସି କେଉଁଠି ବସିଗଲେ ଥଣ୍ଟରେ ଥଣ୍ଟରେ କିମିତି ଦୁହେଁ କାମୁଡ଼ା କାମୁଡ଼ି ଲଗାନ୍ତି । ଏତେ ଚଟିଆ ଥାଉଁ ଥାଉଁ ଏ ଦୁହିଁଙ୍କର ବୁଝାମଣା ଦେଖି ମୁଁ ମଧ ଆଚମ୍ବିତ ହୋଇଯାଏଁ, ଏମିତି ମନୁଷ୍ୟଙ୍କ ଭଳି ଥିଲା ଏମାନଙ୍କ କାରବାର ।

''କେଜାଣି ବା ଏ ଦୁଇଟା ଚଢ଼େଇ ବାପୁଡ଼ାର ଭାବ ପୀରତିରେ କିଛିଥିଲା, ବିଧାତା ପୁରୁଷ ଦେହରେ ଗଲା ନାହିଁ । ଆଜିକି ମାସଟାଏ ସୁଦ୍ଧା ପୂରିନାହିଁ । ସେଦିନ ପାଣି ନାହିଁ, ନିପଟ ଶୁଖିଲାଟାରେ ପଡ଼ିଲା ଏଡ଼େ ଏଡ଼େ ପଥର, ଘରୁ ପଦାକୁ ବାହାରି ହେଲା ନାହିଁ । ପଦାଟାରେ ଯେଉଁ ପଥର ପଡ଼ିଥିଲା, ତାହା ତରଳିବାକୁ କେଜାଣି ଲାଗିଗଲା ଘଡ଼ି ତିନି । ମୁଁ ଆସି ବଙ୍ଗଲାରେ ଦେଖେଁ ଚଟିଆଟା ମରି ପଡ଼ିଚି ବାରନ୍ଦାରେ, ଆଉ ଏଇ ଚଟିଆ ବିଚାରା ତା ପାଖରେ ବସି ତାକୁ ଖୁମ୍ପି ଉଠାଇବାକୁ ଚେଷ୍ଟା କରୁଛି, କିନ୍ତୁ ବିଚାରୀ ଯେ ଆଉ ଜୀବନରେ ନାହିଁ ସେ କଥା ଚଢେଇ ବାପୁଡ଼ା ବୁଝିବ କାହୁଁ ? କୁହ ନାଇ ବାବୁ, ମୁଁ ଯେତବେଳେ ମଲାଟାକୁ ନେଇ ଫିଙ୍ଗି ଦେବାକୁ ଯାଏଁ ଦେଖିଲି ପୁରୁଷଟିର ଆଖିରୁ ସତେ ଯେମିତି ଦର ଦର ପାଣି ବହୁଛି । ବୁଢ଼ା ହେଲି ମୁଁ, ତିନିକାଳ ଯାଇ ଚାରି କାଳ ହେଲା । ଏମିତି କେବେ ଦିଖି ନଥିଲି । ମୋ ଆଖିରୁ ସୁଦ୍ଧା ପାଣି ବୋହିଗଲା ।

ସେଇ ଦିନଠୁଁ ସଙ୍ଗଛଡ଼ା ଏ ବିଚାରା ଏଇ ଆରଶିରେ ନିଜ ଛାଇ ଦେଖି ତାକୁ ହୁଏତ ସାଥୀ ମନେ କରି ଖୁମ୍ପି ବୁଲେ । ଚଢ଼େଇ ଜନ୍ମ ହେଲେ କଣ ହେଲା, ଆମର ପରି ଏମାନଙ୍କର ବି ଦୁଃଖଶୋକ ଅଛି କି ନା କହନ୍ତୁ ନା ଦେଖି ବାବୁ ?''

ତନ୍ମୟ ହୋଇ ମୁଁ ଶୁଣିଲି ପକ୍ଷୀ-ଜୀବନର ଏ କରୁଣ ଇତିହାସ ।

ଚୌକୀଦାରର ଶେଷ କଥାଟା ମୋ ପ୍ରାଣରେ ସୁଦ୍ଧା କାରୁଣ୍ୟର ଲହରୀ ମେଲି ଦେଲା । କିଛିକ୍ଷଣ ଆଗରୁ ଏଇ ବିରହୀ ପ୍ରତି ମୋର ଯେଉଁ ଅଯଥା ଆକ୍ରୋଶ ତାହା ସ୍ମରଣ କରି ବ୍ୟଥିତ ହେଲି । ଦୁଇ ମାସ ପୂର୍ବେ ଏଇ ବଙ୍ଗଳାରେ ମୋର ରହଣି କଥା ଆଜି ପୁଣି ମନେ ପଡ଼ିଲା, ସେତେବେଳେ ସୁଦ୍ଧା ଏଇ ପ୍ରଣୟୀ ଯୁଗଳକୁ ମୁଁ ଦେଖିଛି, ଏଇ ଆରଶି କଣ୍ଡାରେ ବସି କିମିତି ଦୁହେଁ ପାଳି କରି ଉଡ଼ି ଆସି ପ୍ରଣୟ-ସମ୍ଭାଷଣ କରୁଥିଲେ ଚଞ୍ଚୁଘାତରେ । ଆଜି ଆଉ ସେଦିନ ମଧ୍ୟରେ ତଫାତ୍ ? କ୍ରୋଞ୍ଚ-ନିଧନରେ କ୍ରୋଞ୍ଚ ବିହଙ୍ଗର ଶୋକ-ଫଳରେ ଆଦି କବିଙ୍କ ଶୋକୋଚ୍ଛ୍ୱାସ ଯାହା ଶ୍ଳୋକ ରୂପେ ସମଗ୍ର ଅବନୀକି ମୋହିଥିଲା । ଆଜି ବି ତ ସେହିପରି ଏକ ବିରହୀର ବେଦନା ଅଶିକ୍ଷିତ ବଙ୍ଗଳା ଚୌକୀଦାରର ସୁପ୍ତ କବିଟାକୁ ଜାଗ୍ରତ କରିଛି, କିନ୍ତୁ କାହିଁ ସେ ଶ୍ଳୋକ ? ସଦିନ ନିଷାଦର ପ୍ରତିଷ୍ଠା ଅଭିଶପ୍ତ ହୋଇ ସୁଦ୍ଧା ଅମର କବିଙ୍କ ହାତରେ ଅମରତ୍ୱ ପାଇଛ । କିନ୍ତୁ ଆଜି ? ଜାଗ୍ରତ କବିର ଅଭିଶାପରେ ଡ ବିଧାତା ପୁରୁଷ ବା ଇନ୍ଦ୍ରଦେବତାର କିଛି ଘଟି ନାହିଁ ! ବିଡ଼ମ୍ବନା ସ୍ଥାନ କାଳର ନା ପାତ୍ରର ?

ଏ ବଙ୍ଗଳାକୁ ଆସିବାର ମୋର ଆଉ ସୁବିଧା ଘଟି ନାହିଁ । କିନ୍ତୁ ଅନ୍ୟ ଲୋକଙ୍କଠାରୁ ଶୁଣୁଛି ବିରହୀର ଏ ପର୍ଯ୍ୟନ୍ତ ସେହି ଆରଶି ଉପରେ ଚଞ୍ଚୁ ପ୍ରହାର । ହୃଦୟର ବେଦନା ଏବେ ସୁଦ୍ଧା ଅପସାରିତ ହୋଇ ନାହିଁ ? ବିରହୀ ଯକ୍ଷ ଯଦି ଜୀବିତ ଥାଏ, ତେବେ ଆଜି ହୁଏତ ସେ ଏ ଆଦ୍ୟ ଯକ୍ଷ ଯଦି ଜୀବିତ ଥାଏ, ତେବେ ଆଜି ହୁଏତ ସେ ଏ ଆଦ୍ୟ ଆଷାଢ଼ର ମେଘକୁ ଦୂତ ନ କରି ଗୋଟାଏ ନିର୍ଜୀବ ପ୍ରତିବିମ୍ବକୁ ସଜୀବ ମନେ କରି ତା ସଙ୍ଗରେ ପ୍ରୀତି-ସମ୍ଭାଷଣ କରୁଥିବ ।

## ଜୀବନର ମୋହ

ସୁନାର ସଂସାର ଯାହାକୁ କହନ୍ତି ଶେଳ ଜୀବନରେ ତାହା ସାର୍ଥକ ହୋଇଥିଲା । ଷୋଳପଣ ନ ହେଉ, ଅନେକଟା । ବିବାହ ତାର ଘଟିଥିଲା, ରୋମାଣ୍ଟିକ୍ ମତିଗତିର ତରୁଣ ଯେମିତି ସର୍ବାନ୍ତଃକରଣରେ ଚାହିଁଥାନ୍ତି ସେମିତି ନୁହେ, ପ୍ରାୟ ମାମୁଲି ଧରଣରେ । ତଥାପି ରୂପସୀ, ଶିକ୍ଷିତା, ଲଜ୍ଜାବିନମ୍ରା ସର୍ବୋପରି ରସପ୍ରାଣା ବରବଧୂଟି ସେ ଆବିଷ୍କାର କରି ପାରିଥିଲା ତା କାମନାର କାବ୍ୟନାୟିକା । ସୁତରାଂ ବିବାହିତ ଜୀବନର ପୂରା ଗୋଟିଏ ବର୍ଷ ଗୋଟାଏ ରାତିର ସୁଖ ନିଦ୍ରା ପରି ଯେ ଏଡ଼େ ଚଞ୍ଚଳ, ଏଡ଼େ ଅଜ୍ଞାତରେ ପାହିଗଲା ସେ ମୋଟେ ବୁଝିନି । କେବଳ ସେ ଅନୁଭବ କରିଛି, ଏହା ଅରୂପ, ଅତଳସ୍ପର୍ଶ ଅଥଚ ସଙ୍ଗୀତର ମୂର୍ଚ୍ଛନା ପରି, ଫୁଲର ସୌରଭ ପରି, ସତ୍ୟ, ଚିରନ୍ତନ, ମଧୁର ଓ ମାଦକତାମୟ । ଦୁଇଟି ଜୀବନସ୍ରୋତର ଏକପ୍ରାଣତାରେ ମର ସୁଖବିରାଗିଣୀ ନିୟତିର ସୁଦ୍ଧା ହୁଏତ ହସିବାକୁ ସାହସ କୁଳାଇ ନଥିବ । କିନ୍ତୁ ଜଗତର ଦୁର୍ଭାଗ୍ୟ, ତାର ଗତି ସବୁଦିନେ କୁଟିଳ ।

ବିବାହବାର୍ଷିକୀ ଯାଉଁ ନ ଯାଉଁ ଶୈଳ ହେଲା ସାଗର ପାରର ଦେଶାନ୍ତରୀ । ୟାର୍ଡ଼ ମାଷ୍ଟର ହିସାବରେ ନିଜକୁ ଉପଯୋଗୀ କରିବାକୁ ତାକୁ ଯିବାକୁ ପଡ଼ିଲା ଶିଙ୍ଗାପୁର । ବିଦାୟ ଦିନର ପୂର୍ବ ରାତିଟି ଅଶ୍ରୁପିଚ୍ଛିଳ ମାନଅଭିମାନରେ ଶ୍ରାବଣ ମେଘ ପରି ଝରଝର ହୋଇ ଉଠିଥିଲା । ବିରହକାତର ମୁଖ ଖଣ୍ଡି ସ୍ୱାମୀର ବକ୍ଷ ଭିତରେ ଲୁଚାଇ ସୁନତା ରାତି ତମାମ୍ ବାଷ୍ପକ୍ଲିଷ୍ଟ କଣ୍ଠରେ ଖାଲି କହୁଥିଲା, "କେମିତି ମୁଁ ବଞ୍ଚେ" । କବି ନ ହେଲେ ମଧ ଶୈଳ ଥିଲା ଭାବୁକ । ଅଶ୍ରୁଭାରରେ ସେ ବି କମ ଆତୁର ହେବାର କଥା ନୁହେଁ । ଆଶ୍ୱାସନା ଆସିବ କେଉଁ ପକ୍ଷରୁ ?

ସିନ୍ଧୁର ଅସୀମ ନୀଳିମା ଭିତରେ ମଧ ଠାବ ଖୋଜିବା ମନୁଷ୍ୟର ପ୍ରକୃତି । ଆଶାୟିନୀ ସୁନତାକୁ ବଞ୍ଚିବାକୁ ହେଲା; ଅସହ ବେଦନାର ସୀମାରେଖା ତଳେ ପ୍ରିୟର ସେଇ ଆଲୋକଛଟାଟିକ ପାଇଁ ।

ନବ ଦମ୍ପତିଙ୍କ ପ୍ରୀତିର ନିବିଡ଼ତାରେ ଯେଉଁ ଜଣକ ସବୁଠୁଁ ବେଶୀ ଅସହିଷ୍ଣୁ ଉଠିଥିଲେ, ସେ ଆଉ କେହି ନୁହନ୍ତି - ନିଜେ ଶୈଳର ମା । ପ୍ରତ୍ୟକ୍ଷରେ ନ ହେଲେ ମଧ କାଛବାଡ଼କୁ ଶୁଣାଇ ଶୁଣାଇ କେତେ ଥର ସେ ନିଜର ଅସହିଷ୍ଣୁ ପଣ ଦେଖାଇ କହିଛନ୍ତି, "ମା ଲୋ ମା, କିଏ କ'ଣ କେବେ ଆଉ ନୂଆ ହୋଇବାହା ହୋଇ ନାହିଁ"; କିନ୍ତୁ ସ୍ୱାମୀ ସୋହାଗକୁ ସମ୍ବଳ କରି ବିଭୋରା ସୁନତା ଏ କଳିଭିଆଁ କଥାକୁ କେବେ କାନ ଦେଇ ନାହିଁ । ଘରର ଅନ୍ୟ ବିଷୟଧନ୍ଦା ପ୍ରତି ଶୈଳୀ ସବୁଦିନେ ଉଦାସୀନ; ନୋହିଲେ ମା'ଙ୍କର ଅନୁଚିତ ଉପରେ ପଡ଼ିବା ପ୍ରବୃତ୍ତ ନେଇ ତୁମୂଳ କାଣ୍ଡ କିଛି ଘଟାଇ ନଥାନ୍ତା ଏମିତି ନୁହେ । ସୁନତାର ମଧ ପ୍ରକୃତି ନୁହେ ସୂତାଖିଅକୁ ଆହୁରି ଅଡୁଆ ଭିତରକୁ ଟାଣିନେବ । ସ୍ୱାମୀ ପରି ସେ ଶାନ୍ତିପ୍ରିୟ ହୋଇ ନଥିଲେ କେଉଁ ଦିନ ହୁଏତ ଏଇ କଥା ତାଙ୍କ କୋମଳ ପ୍ରାଣରେ ଗୋଟାଏ ଅନିଭା ବେଦନାର ଦାଗ ଆଙ୍କି ଦେଇଥାନ୍ତା ।

ଶୈଳ ଭୟରେ ଯେଉଁ ନିଆଁ ଭିତରେ ଭିତରେ କୁହୁଳୁଥିଲା, ଶୈଳ ଘର ଛାଡ଼ିବାର ଦିନଟିଏ ନ ଯାଉଣୁ ତାହା ବାହାରକୁ ନିର୍ଗତ ହେବାର ସୁବିଧା ପାଇଲା ଠିକ୍ ସେମିତି ବେଗରେ ଯେମିତି ରୁଦ୍ଧବାଷ୍ପ ବାଟ ପାଇଲେ ଠେଲି ଉପରକୁ ଉଠେ ।

ଏହାର ପ୍ରଥ ନିଦର୍ଶନ ସୁନତା ପାଇଲା ତା ବିରହିଣୀ-ଜୀବନର ପ୍ରାରମ୍ଭରେ ହିଁ । ସ୍ୱାମୀଙ୍କ ବିଦାୟ ବେଳାରେ ସେ ଛାତିକି ପଥର କରି ଅଶ୍ରୁରୋଧ କରିଥିଲା । କିନ୍ତୁ ଏକାନ୍ତ ବିଛଣାଟିରେ ଯାଇ ପଡ଼ିବା ମାତ୍ରେ ତାର ସକଳ ପ୍ରୟାସକୁ ପଣ୍ଡ କରି ଆଖିରୁ ଛୁଟିଲା ଧାରା ଶ୍ରାବଣ । ସେ ଯେତିକି ମନେ କଲା ଆଜି ତାର ଛିନ୍ନ ପାଲ ତରଣୀ ଅଧପଥରେ ପରିତ୍ୟକ୍ତ, ନିଃସହାୟ, ସେତିକି ତାର ଶୋକର କୋହ ତୀବ୍ର ହୋଇଉଠିଲା ।

ଶାଶୁ ତାର ବୋଧହୁଏ ସେ ଆଡୁ ପ୍ରସ୍ତୁତ ହୋଇ ଆସିଥିଲେ । ଝଡ଼ ପରି

ଘର ଭିତରେ ପ୍ରବେଶ କରି କହି ଉଠିଲେ, ''ଶୈଳଙ୍କୁ କ'ଣ ମୁଁ ଜନ୍ମ କରି ନାହିଁ ନା ମୋ ଆଖିରେ ପାଣି ନାହିଁ ? ଅମଙ୍ଗଳୀଟା କୋଠିକାର, ପିଲାଟା ଗାଁମୁଣ୍ଡ ପହଞ୍ଚୁଁ ନପହଞ୍ଚୁଁ ଘର ଭସାଇ ସାରିଲାଣି । ବର୍ଷଟା ସାରା ତ କାନିପଣନ୍ତରେ ବାନ୍ଧି ପିଲାଟିକୁ ଏମିତି କଲୁ ଯେ, ଘର ଦ୍ୱାର ବିଷୟ ବାସନା କିଛି ବୁଝା ସୁଝା କରାଇ ଦେଲୁ ନାହିଁ । ଶେଷରେ ମା ବାପାଠୁଁ ବି ଛଡ଼ାଇ ନେଲୁ, ଏଇଲେ ବାହାରୁଛି ସୋଆଗ । ଉଠୁ, ଏମିତି କାନ୍ଦି ମୋ ପୁଅର ଅମଙ୍ଗଳ ଯଦି ଡ଼ାକିଆଣୁ, ତେବେ କହି ରଖୁଛି ତୋର ଦିନେ କି ମୋର ଦିନେ ।'' ଆହୁରି ହୁଏତ କେତେ କ'ଣ କହି ଏତେ ନିର ମନଓର ମେଣ୍ଟାଇ ଥାନ୍ତେ । ବାହାରେ 'ମାଉସୀ, ମାଉସୀ' ଡ଼ାକ ଶୁଣି ସେ ଯେମିତି ଆସିଥିଲେ ସେମିତି ଝଡ଼ ବେଗରେ ବାହାରି ଯାଇ ଜିଭ କାମୁଡି ଦେଖିଲେ ପଡ଼ୋଶୀ ପଦ୍ମନାଭ ବାବୁଙ୍କ ପୁଅ ରାଜୀବ ।

ଯାକୁ ସେ ଦେଖି ପାରେ ନା ତାର କର୍ମକାଳପରେ ତ୍ରୁଟି ଥାଉ ନଥାଉ, ସବୁ ପଦାକୁ ବାହାରେ ଦୁର୍ଗୁଣ ହୋଇ । ସୁନନ୍ଦା ପ୍ରାଣପଣ ଖୋଜିବାକୁ ଚେଷ୍ଟା କରିଛି ତାର ଅପରାଧ କେଉଁଠି; କ'ଣ କଲେ ଶାଶୁଙ୍କ ମନ ନେଇ ଚଳି ପାରିବ । କିନ୍ତୁ ପାଇଛି କ'ଣ ? ନିର୍ଦ୍ଦୟ ଗଞ୍ଜଣା । ସ୍ୱାମୀବିରହିଣୀ ସେ, ଅଥଚ ସ୍ୱାମୀଙ୍କ ସ୍ମୃତିଟିକୁ ମନକୁ ଆଣି ଟିକିଏ ଶାନ୍ତ ପାଇବ ଏତିକି ଅଧିକାର ତାର ନାହିଁ । ଭଙ୍ଗାହୃଦୟରେ ସେ କେତେ ଥର ଏଇକଥା ଭାବିଛି, ଆଉ ଭାବି ଭାବି ତା ଭିତରର ନିରୀହ ନାରୀ ଥରେ ଥରେ ବିଦ୍ରୋହ କରିବାକୁ ତେଜି ଉଠିଛି । କିନ୍ତୁ ସେ କୁଳବଧୂ !!!

ନିତାନ୍ତ ମନ୍ଥର ଗତି କରି ସୁଦ୍ଧା ଦିନମାନ ତାର ଚାଲିଲା । ନିର୍ଯ୍ୟାତନର ମାତ୍ରା ବଢ଼ି ଚାଲିବା ସଙ୍ଗେ ସଙ୍ଗେ ସେଇ ପରିମାଣରେ ତାର ଅତି ପ୍ରିୟ ସୁଖର ଦିନ ଗୁଡ଼ିକ ବହୁ ଦିନ ପଛରେ ପଡ଼ିଲା ସ୍ୱପ୍ନ ପରି ଅସ୍ପଷ୍ଟ ହୋଇ ଉଠୁଥିଲା । କେହି ଦେଖୁ ନ ଦେଖୁ ଏଟା ନିଷ୍ଠୁର ରୂପେ ସତ ଯେ, ମେଘୁଆ ସଞ୍ଜର ଶେଷ ରାଗ ପରି ତା ମୁଖଖଣ୍ଡ ହୋଇ ଉଠୁଥିଲା କ୍ରମମଳିନ କ୍ରମବିବର୍ଣ୍ଣ ।

ଦୁର୍ଦ୍ଦିନର ସହାନୁଭୂତି ପରି ବେଳ ଅବେଳରେ ସୁନନ୍ଦାର ଆଗେ ଠିଆ ହୁଏ ଆସି ରାଜୀବ । ବିବ୍ରତା ଦୁଃଖିନୀର ନିଃସହାୟ ଦଶା ଦେଖି କରୁଣା ଜନ୍ମେ ରାଜୀବର ! କଅଁଳେଇ ଦୁଇ ଚାରି କଥା କହି ଅଭାଗୀକୁ ସାନ୍ତ୍ୱନା ଦେବାର ଲୋଭ ସେ ଅନେକ ସମୟରେ ସମ୍ଭାଳି ପାରେ ନା ! କ'ଣ ହେବ ? ଭିତରଟା ଯାର ଘୋଟାଯାକେ ତରଳ ଅଗ୍ନିସ୍ରୋତ ବାହାରର କ୍ଷଣିକ ପ୍ରଲେପ କେତେଟା ତାର ଉପଶମ ଆଣିବାକୁ ସମର୍ଥ ହେବ ? ସୁନନ୍ଦା ପୁଣି ବାଲ୍ୟରୁ ଟିକିଏ ଅଭିମାନିନୀ । ଦୁର୍ଦ୍ଦଶାର ଦୁହାଇ ଦେଇ ପରର ଅଯାଚିତ କରୁଣା ଆକର୍ଷଣ କରିବାର ହୀନତାକୁ ସେ ହାଡ଼େ ହାଡ଼େ ଚିଡ଼େ । ସ୍ୱାମୀଙ୍କ ବିଦେଶ ବାସ ଦିନଠାରୁ ତାର ନିଃସଙ୍ଗ ସଂସାରର ଗତି କିପରି ତାର ଗୋଟିଏ ଛୋଟ ଇତିହାସ ତା ଭଗ୍ନୀପତି ନିକଟକୁ ଚିଠିରେ ଜଣାଇ

ଥିଲା । ଫଳରେ ପ୍ରସ୍ତାବ ମଧ ଆସିଥିଲା ସୁନନ୍ଦା ଯଦି ରାଜି ହୁଏ, ଇଗ୍ନୋପତି କମ୍ପାନିର ମେନେଜିଂ ଡିରେକ୍ଟରଙ୍କଠାରୁ ଦୁଇ ଦିନ ଛୁଟି ନେଇ ଆସି ତାକୁ ଘେନି ଯିବେ । କିନ୍ତୁ ଆତ୍ମସମ୍ମାନ ଉପରେ ଅତ୍ୟନ୍ତ ନିର୍ଭରଶୀଳ ସୁନନ୍ଦା ତାର ଉତ୍ତର ଦେଇଥିଲା ଅନ୍ୟ ପ୍ରକାରେ । ସେଇ ସୁନନ୍ଦା ଫେର ହେବ କ'ଣ ନା ରାଜୀବର କୃପାପାତ୍ରୀ ? ରାଜୀବ ଯେ ଏଇ ବିବାହ ପୂର୍ବରୁ ଦେବତା ପରି ସ୍ୱାମୀ ଶୈଳକୁ ନଷ୍ଟ ଚରିତ୍ର ରୂପେ ଠିଆ କରାଇ ବିବାହ ଭଙ୍ଗାଇବାର ଚେଷ୍ଟାରେ କମ୍ ଶ୍ରମ ପାଇନାହିଁ ?

ସୁନନ୍ଦା ଆୟାସ ସହ ଆପଣାକୁ ଏକାକିନୀ କରି ରଖିବାର ଯତ୍ନବତୀ ହୁଏ ।

ରାତିରେ ବିଛଣା ଧରି ଶୋଇବାକୁ ଯାଇ ସେ ଦେଖେ ଆଖିରେ ନିଦ ଆଣିବାକୁ ତାକୁ ରୀତିମତ ପରିଶ୍ରମ କରିବାକୁ ପଡୁଛି । ଚିନ୍ତା ଭାବନା ତାର ଯା କିଛି, ସବୁ ଯେପରି ମୂର୍ତ୍ତିଧରି ଏଇ ଶୋଇଲା ସମୟଟାକୁ ହିଁ ଚାକି ବସିଥାନ୍ତି ତାକୁ ଆକ୍ରମଣ କରିବାକୁ । ଅନିଚ୍ଛା ସତ୍ତ୍ୱେ ମଧ ତାକୁ ଭାବିବାକୁ ହୁଏ, ''କ'ଣ ଯାଏ ଆସେ ରାଜୀବର ଯେ ସେ ଆସି ଅନୁଚିତ କରୁଣା କରିଯିବ'' ଜୋର କରି ସେ ଏ ଚିନ୍ତାକୁ ଠେଲି ଦିଏ । ଶାଶୁଙ୍କ ପାହାନ୍ତିଆ ଗର୍ଜନରେ ନିଦ ଭାଙ୍ଗିଲାକୁ ଦେଖେ ଯେଉଁ କେତେ ଖଣ୍ଡି ଚିଠି ସେ ସ୍ୱାମୀଙ୍କ ନିକଟରୁ ପ୍ରଥମ ପ୍ରଥମ ପାଇଥିଲା ପ୍ରତ୍ୟେକ ଛତ୍ର ସେଗୁଡ଼ିକର ମୁଖସ୍ଥ ହୋଇ ପଡ଼ିଥିଲେ ସୁଦ୍ଧା ସେଇ ଗୁଡ଼ିକରୁ ଖୋଲା ଗୋଟିଏ କି ଦୁଇଟା ତା ଛାତିର ସ୍ପନ୍ଦନ ସଙ୍ଗେ ଉଠୁଛି ପଡୁଛି । ପ୍ରଭାତରୁ ହିଁ ଦିବାର ସୂଚନା ଜାଣି ସେ ବିଛଣା ଛାଡ଼େ ।

ସୁନନ୍ଦାର ସହିଷ୍ଣୁପଣ ଦେଖି ରାଜୀବ ସୁଦ୍ଧା ବିସ୍ମିତ ହୋଇଥିଲା । ଦିନେ ସେ କହିବାକୁ ବାଧ ହୋଇଥିଲା, ''ତୁମେ ଯା ସହିଲଣି ବୋହୂ, ମର୍ତ୍ତ୍ୟର କୌଣସି ନାରୀ ତା ସହିବ ନାହିଁ ।'' ସେଇ ଦିନ କେବଳ ତାର ଶୁଷ୍କ ମୁଖରେ ହସ ଦେଖା ଦେଇଥିଲା, ତାଚ୍ଛିଲ୍ୟର ହସ । ଏଇ କଥା ନେଇ ପରେ ସେ ଏକାନ୍ତରେ ବସି ଭାବିଲା, ''ମୋର ସ୍ଥାନ ଯେ ଅଧିକାର କରିଥାନ୍ତା ତାର ଯେଉଁଠି ଏ ସଂସାରଛଡ଼ା ଆଚରଣ, ସେଠି ଦୂର ସମ୍ପର୍କୀୟ ରାଜୀବର ଏ ଦରଦ କାହିଁକି ?''

ଭାରା ଅତିରିକ୍ତ ହେଲେ ଧରଣୀ ସୁଦ୍ଧା କମ୍ପେ ବୋଲି ପ୍ରାଚୀନ ବିଶ୍ୱାସୀ କହେ । ସୁନନ୍ଦା ତ ସହଜେ ମାନବୀ । ସହିଷ୍ଣୁତାର ବନ୍ଧ ତାର ଦିନେ ଯେ ଭାଙ୍ଗିବ ଏଥିରେ ଆଉ ବିଚିତ୍ର କ'ଣ ?

ଶିଙ୍ଗାପୁରର ଅଦୂରରେ ଜାହାଜ ବୁଡିବାର ଖବର ରାଜୀବ ହିଁ ପ୍ରଥମେ ଆଣେ । ସଂବାଦଟା ହୁଏ ତ କାହାରି ଦୃଷ୍ଟି ଆକର୍ଷଣ କରି ନଥାନ୍ତା । କିନ୍ତୁ ଜାହାଜ ଯାତ୍ରୀଙ୍କ ଭିତରୁ ଯେଉଁମାନଙ୍କ ପତ୍ତା କିଛି ମିଳୁ ନଥିବାର ସଂବାଦ ପ୍ରକାଶ ପାଇଥିଲା, ତା ଭିତରେ ଶୈଳର ନାମହିଁ ଥିଲା ପ୍ରଥମ । ଦିଗ୍‌ବଳୟ ତଳେ ଯେଉଁ ଆଲୋକ ରେଖାକୁ ସମ୍ବଳ କରି ସୁନନ୍ଦା ସହସ୍ର ନିର୍ଯ୍ୟାତନ ଭିତରେ ମରିବାର

ପ୍ରଲୋଭନରୁ ନିଜକୁ ସମ୍ଭାଳି ରଖିଥିଲା, ସେଇଟିକ ତା ଆଖି ଆଗରୁ ଏମିତି ହଠାତ୍ ନିଭି ଯିବ ସେ କଳ୍ପନା କରି ନଥିଲା । ଠିଆରୁ ତଳେ ପଡ଼ି ଯାଇ ସେ ଦେଖିଲା କେବଳ ଅନ୍ଧକାର, ହାତରେ ଛୁଇଁ ପାରିବା ଭଳି ଅଗଣିତ ଅମାବାସ୍ୟାର ଠୁଳକରା ଅନ୍ଧକାର । ତା ଶ୍ୱଶ୍ରୁଦେବୀଙ୍କ ଆଖିରେ କିନ୍ତୁ ଜଳକ୍ଷରଣ ପରିବର୍ତ୍ତରେ ଅଗ୍ନିସ୍ଫୁରଣ, ଯାହା ଦେଖି ରାଜୀବକୁ ସୁଦ୍ଧା ତ୍ରସ୍ତ ହୋଇ ପଛଘୁଞ୍ଚା ଦେବାକୁ ହେଲା । ଖଞ୍ଜାଟାର ବାତାବରଣକୁ ଧ୍ୱନିତ କରି ଶୁଭୁଥିଲା, ''ବାହାର ମୋର ଘରୁ ଅଲକ୍ଷଣୀ, ଥର ଥର କରି କହିଲି ଆଖିରୁ ପାଣି ଗଡ଼େଇ ମୋ ପୁଅର ଯିବା ବାଟରେ କଣ୍ଟା ପକାନା । ସରଗଚାନ୍ଦ ପରି ଗୁଣବନ୍ତ ପୁଅ ମୋର ଘର ଅନ୍ଧାର କରି ଚାଲିଗଲା ସର୍ବନାଶୀ ତୋର ଆଖି ପାଣିରେ ବୁଡ଼ି ମରିବାକୁ । ଏମିତି କାଳସର୍ପକୁ ଆଣି ଘରେ ପୋଷିଲି । ତୋତେ ବି ମରଣ ନାହିଁକି, ବୁଢ଼ୀମାଟା ବେଳକୁ ଯମର ଆଖି ଫୁଟିଥାଏ । ମୋରି ଆଗରେ ମୋ କୋଟିନିଧି - ହାୟରେ କପାଳ !'' ଏତିକି ବେଳେ ଯାଇ ତାଙ୍କ ଆଖିର ଅଗ୍ନିରାଶି ତରଳ ସ୍ରୋତ ହୋଇ ଅଶ୍ରୁରୂପେ ଦେଖାଦେଲା । ରାଜୀବର ମାତା ଆସି ବୁଝାଶୁଝା କରି ତାଙ୍କୁ ଧରି ଅନ୍ୟତ୍ର ଘେନି ଗଲେ । ''ନା, ଅମଙ୍ଗଳୀଟା ମୋ ଘରୁ ବାହାରିବ ତ ବାହାରିବ ନ ହେଲେ ଅନ୍ନଜଳ ଛାଡ଼ି ଆଜିଠୁଁ ମୁଁ ବାଶୁଳୀ ଠାକୁରାଣୀ ନିକଟରେ ଅଧା ପଡ଼ିଲି ।'' ଏଇ ପ୍ରତିଜ୍ଞାର ଉଚ୍ଚାବାଚରେ ଚାରି ପାଖର ପବନ ମଧ ଥରି ଉଠୁଥିଲା ।

ତିନି ବର୍ଷ ପରେ ରେଙ୍ଗୁନର ଆସିଷ୍ଟାଣ୍ଟ ଡ଼କ୍‌ୟାର୍ଡ଼ ମାଷ୍ଟର ଆସି ଶୁଣିଲେ ସୁନତା ତିନିବର୍ଷ ଆଗରୁ ନିରୁଦ୍ଦିଷ୍ଟା !

* * * *

ଚା ବଗିଚାର ଗଲା କେଇଟା ବର୍ଷର ଦୁର୍ଗତି ପରେ ତାର ସୁଦଶା ଅଦୂର ଭବିଷ୍ୟତରେ ଫେରିପାରେ ଏ ଦୁରାଶା କରିବାକୁ ସ୍ୱୟଂ ମେନେଜର ନଜଓ୍ୟାନି ସାହେବଙ୍କ ସୁଦ୍ଧା ସାହସ ନଥିଲା । ତଥାପି ସୌଭାଗ୍ୟ ଫେରିଲା - ଆଉ ନଜଓ୍ୟାନୀଙ୍କ ବିବାହ ପରେ ପରେ । ନଜଓ୍ୟାନୀ ସୁଶ୍ରୀ, ବଳିଷ୍ଠ, ମୁଖମଣ୍ଡଳ ଦୃଢ଼ପ୍ରତିଜ୍ଞତା ଓ ତୀକ୍ଷ୍ଣ ଆଖି ଯୋଡିକ ବୁଦ୍ଧିମତ୍ତାର ପରିଚୟ ଦିଏ । ବମ୍ବେରେ କେଉଁ ଅଖ୍ୟାତ ପଲ୍ଲୀରେ ତାଙ୍କର ଜନ୍ମ ସେ ନିଜେ ଜାଣନ୍ତି ନାହିଁ । ତାଙ୍କର ସମୁଦାୟ ଶିକ୍ଷାଦୀକ୍ଷାର ମୂଳରେ ଥିଲା ପାଦ୍ରୀ ରବର୍ଟ୍‌ସନ ସାହେବଙ୍କ ପୁତ୍ରନିର୍ବିଶେଷରେ କ୍ଲାନ୍ତିହୀନ ଯତ୍ନ ଓ ଅଦମ୍ୟ ଆଗ୍ରହ । ପାଦ୍ରୀ ସାହେବଙ୍କ ଚେଷ୍ଟାରେ ହିଁ ଓଜଓ୍ୟାନୀ ଆଜି ଉଇଲସନ ପ୍ଲାଣ୍ଟେଶନର ମେନେଜର । ଦୁଇ ବର୍ଷ ତଳେ ତାଙ୍କୁ ତୀକ୍ଷ୍ଣଦୃଷ୍ଟି ପଡ଼ିଥିଲା ଚା ବଗିଚାର ଜଣେ ମଳିନା ଅଥଚ ରୂପସୀ ତରୁଣୀ ଉପରେ । ସାଧାରଣ କୁଲିରମଣୀଠାରୁ ଏ ତରୁଣୀଠି କ'ଣ ବୈଶିଷ୍ଟ୍ୟ ଥିଲା କେଜାଣି, ତିନିଟା ମାସ ନ ଯାଉଣୁ ସେହି ରମଣୀ ହିଁ ନଜଓ୍ୟାନୀ-ବଧୂ ରୂପେ ମେନେଜରଙ୍କ ବଙ୍ଗଳା ଘରଟିକୁ

ଲୀଳାଚଞ୍ଚଳ କଲେ । ତା'ରି ପରେ ପରେ ହିଁ ପ୍ଲାଣ୍ଟେଶନର କ୍ଷତି ହିସାବରେ ଆଶାତୀତ ବଳକା ଦେଖି ହେତୁବାଦୀ ନଜଓ୍ୟାନୀଙ୍କୁ ମାନିବାକୁ ହୋଇଥିଲା ଏ ସୌଭାଗ୍ୟ ବୋଧହୁଏ ନବୋଢ଼ା ପତ୍ନୀଙ୍କ ଦାନ । ପତ୍ନୀପ୍ରତି ସେ ଯେତିକି ଆକୃଷ୍ଟ ହେଲେ, ସେତିକି ବୁଝିଲେ ତାଙ୍କର ଦାନ ଅପାତ୍ରରେ ପଡ଼ି ନାହିଁ । ପ୍ଲାଣ୍ଟେଶନଟି ତ ହସିଲା, ଭାଗ୍ୟବତୀର ଆଦର ଆପ୍ୟାୟନ ପ୍ଲାଣ୍ଟେଶନର ପ୍ରତି ଅଧିବାସୀ ଯେପରି ପ୍ରତି କ୍ଷେତ୍ରରେ ଆଯାଚିତ ପାଇବାକୁ ଲାଗିଲେ ।

* * * *

ଚା କାରବାରର ଏକ ଜରୋରୀ ଉପଲକ୍ଷରେ ନଜଓ୍ୟାନୀ ଯାଇଥିଲେ କଲିକତା । ସନ୍ଧ୍ୟାଗମ ପାଇଁ ବେଶୀ ବିଳମ୍ବ ନଥିଲା । ଗୋଟାଏ ନୂଆ କାର୍ ଆସି ନଜଓ୍ୟାନୀ ବଙ୍ଗଳା ଫାଟକ ପାଖରେ ଠିଆ ହେଲା । ଶ୍ମଶ୍ରୁଳ ଆରୋହୀ ଜଣେ କାର୍‌ରୁ ଓହ୍ଲାଇ ସିଧା ସିଧା ଚାଲିଲେ ବଙ୍ଗଳା ଭିତରକୁ । ନଜଓ୍ୟାନୀ ପତ୍ନୀ ପଛପଟ ବଗିଚାରେ କ'ଣ ପରିଦର୍ଶନ କରୁଥିଲେ । ସ୍ୱାମୀଙ୍କ ପତ୍ୟାବର୍ତ୍ତନ ଆଶା କରି ବୈଠକଖାନା ଭିତର ଦେଇ ବାରନ୍ଦାକୁ ଆସିବାମାତ୍ରେ ଆଗନ୍ତୁକ ମୁହଁରୁ ପ୍ରଶ୍ନ ଉଠିଲା, ''ତୁମେ ମିସେସ୍ ନଜଓ୍ୟାନୀ ?''

ମିସେସ୍ ନଜଓ୍ୟାନୀଙ୍କ ମୁହଁ ଫିକା ପଡ଼ିଗଲା । ଯନ୍ତ୍ରଚାଳିତା ପରି ଫେରି ସେ ବୈଠକଖାନାର ସୋଫା ଉପରେ ପଡ଼ିଗଲେ । ସୋଫା ଭିତରୁ ମଧ ବକ୍ଷର ଘନ ସ୍ପନ୍ଦନ କଳିବାକୁ ଅନୁଗାମୀ ଆଗନ୍ତୁକଙ୍କର କଷ୍ଟ ହେଲା ନାହିଁ । ରୂଢ଼ କଣ୍ଠରୁ ବାହାରିଲା, ''ରାକ୍ଷାସୀ, ପ୍ରତୀକ୍ଷାର ପୁରସ୍କାର୍ ଏଇ ଦେଇ ଶିଖିଛୁ, ନା ?''

ମିସେସ୍ ନଜଓ୍ୟାନୀ ସୋଫାରୁ ଉଠିଲେ । ଆଖି ଦୁଇଟିରେ ଯେପରି ବିଦ୍ୟୁତ୍ । ନିଷ୍କମ୍ପ ଅଧରରେ କହିଲେ, ଆଇନତଃ ମୁଁ ବର୍ତ୍ତମାନ ମିସେସ୍ ନଜଓ୍ୟାନୀ, ମୋତେ ଅପମାପ ଦେବାର ଅଧିକାର ତୁମର ଆଉ ନାହିଁ । ଘରକୁ ଫେରି ମାଙ୍କୁ ପଚାରି ପାର ରାକ୍ଷାସୀ କିଏ; କୁଳିରମଣୀର ଭାଗ୍ୟ ଘେନି ଆସାମ ପର୍ଯ୍ୟନ୍ତ ଦୌଡ଼ିଲା ବେଳେ ତୁମର ଏ ଅତି ଆଗ୍ରହର ପ୍ରତୀକ୍ଷା କେଉଁଠି ଥିଲା ଶୁଣେ ?''

ଆଗନ୍ତୁକ ମୁହଁରେ ବାକ୍ୟ ସ୍ଫୁରିବା ଦାୟ ହେଲା । ସେ ନିସ୍ତବ୍ଧ ଠିଆ ହୋଇ ଦେଖିଲେ ମିସେସ୍ ନଜଓ୍ୟାନୀ ପୁଣି ସୋଫାରେ ପଡ଼ି ମୁହଁ ଲୁଚାଇଲେ । ବର୍ତ୍ତମାନ ରୀତିମତ କୋହ ।

କଣ୍ଠ ତାଙ୍କର ନରମ ହୋଇ ଆସିଲା । ସେ କହିଲେ, ''ତୁମେ ତେବେ ସୁଖରେ ଅଛ ସୁନନ୍ଦା; ଅତୀତର ସବୁ ଭୁଲି ଏମିତି ବଞ୍ଚିବାକୁ ଚାହଁ ତୁମେ ?''

ସୁନନ୍ଦାର ଆଖିରେ ଅଶ୍ରୁ ।

''ସୁନନ୍ଦା ନୁହେଁ, ସୁନନ୍ଦା ପୋଡ଼ି ମରିଛି ଶୈଳସୁନ୍ଦରଙ୍କ ମାଙ୍କ ଅଗ୍ନିବାଣରେ, ମୁଁ ରମଲା ନଜଓ୍ୟାନୀ । ମୋ ସାମନାରେ ଅନନ୍ତ ଭବିଷ୍ୟତ୍ -

ସୁନ୍ଦର, ମଦିରା ନିଶାପରି ଉନ୍ମାଦକର, ମୁଁ ଚାହେଁ ବଞ୍ଚିବାକୁ, ଅନନ୍ତ ଜୀବନ ।''

ଉତ୍ତେଜନାର ଆଧିକ୍ୟରେ କାବ୍ ଖଣ୍ଡ ଗେଟ୍ ନିକଟରୁ ସବ୍ କରି ଚାଲି ଯାଇଛି, ଶ୍ରୀମତୀ ନଜଓ୍ୟାନୀଙ୍କ ଖିଆଲ୍ ନଥିଲା । ଭୃତ୍ୟ ଯେତେବେଳେ ଆସି ବୈଠକଖାନାରେ ଆଲୁଅ ଦେଇଗଲା, ସେ ଫାଟକ ନିକଟକୁ ଦୌଡ଼ି ଯାଇ ଦେଖନ୍ତି ସବୁ ଶୁନଶାନ୍ ।

ଦୂରର ଚା କ୍ଷେତ୍ରଗୁଡ଼ିକ ସନ୍ଧ୍ୟାର ପ୍ରଥମ ଛାୟାରେ ଶ୍ୟାମଳତର ହୋଇ ଉଠିଛି ।

## ଏମିତି ବି ଦିନ ଆସେ

ଅଭିମାନ ? କା ଉପରେ ? ଅରୁଣ ତାର କିଏ, ଏ ପ୍ରଶ୍ନ ଉଠିବାର ଅବକାଶ ରେଣୁ ମନରେ ଘଟି ନାହିଁ । ଅରୁଣଠି ସେ ଦେଖି ଆସିଛି ତରୁଣର ଆଦର୍ଶ - ଏହି ଅଧିକାରଘେନି ଯେତେବେଳେ ସେ ଆବିଷ୍କାର କରେ ଲତିକା ସଙ୍ଗେ ତାର ବିବାହ ବ୍ୟବସ୍ଥା, ସୁପ୍ତ ନାରୀ ତାର ବୈଶାଖୀ ଝଟିକାର ଆନ୍ଦୋଳନ ପରି ଅଶାନ୍ତ ହୋଇ ଉଠିଲା ।ତଳିଆ ଭିତରେମୁହଁଲୁଚାଇକଥାଟାର୍‌ସତ୍ୟତାଅପ୍ରମାଣିତକରିବାରପ୍ରୟାସ ମଧ ସେ କଲା । କିନ୍ତୁ ଦେଖିଲା ବୁଦ୍ଧ-ତରଙ୍ଗର ଘାତ ପ୍ରତିଘାତ ଆହୁରି ତୀବ୍ର ।

ଲତିକା ? କ'ଣ ଅଛି ଲତିକାର ? ଆଖି ଦୁଇଟି ମଦିରା ଢଳ ଢଳ ଏଇ ତ ତାର ସର୍ବସ୍ୱ । କିନ୍ତୁ କ୍ଷୀଣ ତନୁଲତା ଯେ ଅରୁଣର ସୁସ୍ଥ ଅଙ୍ଗରେ ଶାକୁଳୀ ହେବ ମାତ୍ର - ଦୁହିଙ୍କର ସଂଯୋଗ ଲୋକଲାଗି ହେବାର ତ ଦୂରର କଥା । ହୋଇପାରେ ଲତିକାର ସୌଭାଗ୍ୟ, କିନ୍ତୁ ଅରୁଣର ? ପିତାମାତା ତାର ଅନ୍ଧ ହୁଅନ୍ତୁ, ଅରୁଣର ତ ବିବେଚନା ଶକ୍ତି ଅଛି । ସବୁରି ପ୍ରିୟ ଅରୁଣ କେଉଁ ତରୁଣୀର କାମ୍ୟ ନୁହେ ? କିନ୍ତୁ କ'ଣ ସେ କଲା ? ଆଉ ରେଣୁ ? ରୂପସୀ ବୋଲି ତ ତାର ଅପ୍ରତିହତ ଖ୍ୟାତି । ଯେଉଁଠି ସେ ହାତ ଦେଉ ତାକୁ ସୁନ୍ଦର କରି ଗଢିପାରିବାର ଜନ୍ମାର୍ଜିତ କଳା ଏକା ରେଣୁର ବୋଲି ଅରୁଣ ତ କେତେଥର କହିଛି । ଅରୁଣ ରେଣୁ ବେଶ ଖାପ ଖାଏ । କିନ୍ତୁ ଏ କ'ଣ ଭାବୁଛି ସେ ! ହୋଇପାରେ ସେ ଭୁଲ, ଶୁଣିଛି । ଲତିକା - ଅରୁଣ ? - ନା -

ରାତି ଗୋଟା କଟି ଗଲା ତାର ଖାଲି ଛଟପଟ ହୋଇ । ଅବୋଧ ମନ ତାର ମୋଟେ ମାନିବାକୁ ରାଜି ହେଲା ନାହିଁ । ଏଥିରେ ତାର କ୍ଷତି କେତେ ? ସେ ତେବେ ଅରୁଣକୁହିଁ ଚାହେଁ - ଏ ଯଥାର୍ଥ ବା ଲତିକା ପ୍ରତି ତାର ଏ ଅନୁଚିତ ଈର୍ଷା ! ନା ଲତିକା ତାର ଈର୍ଷାର ସୁଦ୍ଧା ଅନୁପଯୁକ୍ତା । ଈର୍ଷା ! କାହିଁକି ! ଅରୁଣକୁ ଜୀବନ-ସାଥୀ ରୂପେ ପାଇବାର୍ ଗୋପନତମ ଆଶା ସେ ତ ଦିନେ ବୋଲି କରି ନାହିଁ । ବରାବର ତାକୁ ଦେଖି ଆସୁଛି ନିକଟତମ ଆତ୍ମୀୟ ରୂପେ । ଅନ୍ୟରୂପେ ନୁହେଁ । ତେବେ ଆଜି କାହିଁକି ଏ ବିଡ଼ମ୍ବନା ? ନିଶ୍ଚୟ ଈର୍ଷା, ଅରୁଣକୁ ସେ ଆନ୍ତରିକ ଚାହେଁ । ତା ଉପରେ

ଅନ୍ୟର ଦାବୀ କେବଳ ଅଘଟଣ ନୁହେଁ, ଅନଧିକାର । କିନ୍ତୁ ଅରୁଣ କି ତାକୁ ଚାହେଁ ? ନିଶ୍ଚୟ । ତାଙ୍କ ଘରକୁ ଆସିଲାମାତ୍ରେ ଆଗେ ରେଣୁକୁ ଖୋଜିବା; ଟୀକା କରି ରତିବିଳାପ ପଢ଼ି ଶୁଣାଇବା; ସାମାନ୍ୟ ମୁଣ୍ଡ - ବଥାରେ ରେଣୁର ଶୁଶ୍ରୁଷା ଲୋଡ଼ିବା; ଏ ସବୁ କ'ଣ ଅବ ଅନୁରକ୍ତିର ଲକ୍ଷଣ ? ଯଦି ତାହା ଭାଇଭଉଣୀର ଆଦାନ ପ୍ରଦାନ ? ଯଦି ସେ ଲତିକାକୁ ଜୀବନସଙ୍ଗୀନୀରୂପେ ପାଇବାକୁ ବାସ୍ତବିକ ଆନ୍ତରିକ କାମନା କରିଥାଏ !

ସେ ଆଉ ଭାବି ପାରିଲା ନାହିଁ । ମନ-ପ୍ରାଣ ସହିତ ସର୍ବାଙ୍ଗ ତାର ଅବଶ ହୋଇ ପଡ଼ିଲା । ଶୀତସ୍ପର୍ଶ ପାହାନ୍ତିଆ ବାୟୁ ମାତ୍ର ତା ଆଖିରେ ନିଦ୍ରାର ପ୍ରଲେପ ଦେଇ ତା ହୃଦୟ ଭିତରର ଆନ୍ଦୋଳନକୁ ଟିକିଏ ଶାନ୍ତ କଲା ।

ସକାଳୁ ସେ ଶଯ୍ୟା ତ୍ୟାଗ କଲା ସେଇ ଭାବନାକୁ ସମ୍ବଳ କରି । କିନ୍ତୁ ଆଜି ସେ କାଲି ପରି ବିଚଳିତ ନୁହେ । ସେ ଉଠିଛି ହୃଦୟରେ ଦମ୍ଭ ସଞ୍ଚୟ କରି । ଏ ବିବାହ ସେ କରାଇ ଦେବ ନାହିଁ । ଅରୁଣର ଏ ବିପତ୍ତି ! ତାକୁ ସେ ରକ୍ଷା କରିବ ଯିମିତି ହେଉ, ଏପରିକି ଲୋକ ଲଜ୍ଜାର ବନ୍ଧ ଭାଙ୍ଗି । କିନ୍ତୁ ଅରୁଣ ଯଦି ଏ ବିବାହରେ ସୁଖୀ ହୁଏ ? ଏତେ ବଡ଼ ପ୍ରମାଦ, ଏଡ଼େ ଅପୂରଣୀୟ ଅନ୍ୟାୟ ସେ କରିବାକୁ ଯିବ । ଅରୁଣର ସୁଖ ଯେ ସେ ଚାହେଁ - ସେଥିରେ ସେଇ ପୁଣି ପ୍ରତିବନ୍ଧକ ହେବ ? ନା, ଲତିକା ସଙ୍ଗେ ଅରୁଣ ସୁଖୀ ହୋଇ ପାରେ ନା, ଅସମ୍ଭବ । ସେ ନିଜର ସବୁ ପ୍ରକାର କ୍ଷତି ସହିବାକୁ ପ୍ରସ୍ତୁତ । ଯଦି ଅରୁଣକୁ ସେ ମୁକ୍ତ କରିପାରେ । ଆଶାର ଏଇ ଉତ୍ତେଜନାମୟୀ ସୂଚନା ଆଗରୁ ତାକୁ ବିଜୟିନୀର ଆସନ ପାତି ଦେଲା ।

ଏ ବିବାହ ଘଟାଇ ନ ଦେବାରେ ରେଣୁର ପ୍ରୟାସ କେତେ କେହି ଜାଣେନା; ହୁଏତ ଅରୁଣର ଅଛପା ନ ଥିବ । ତଥାପି ବିବାହ ଅରୁଣର ହେଲା, ଆଉ ହେଲା ସେଇ ଲତିକା ସଙ୍ଗରେ । ବିବାହର ଶେଷ ମଙ୍ଗଳ କର୍ମ ଅବଧି ପାଷାଣକରା ଛାତି ତଳେ ପ୍ରାଣର ଶତକମ୍ପନକୁ ଜବରଦସ୍ତି ଚାପି ରେଣୁ ଯାହାଲାଗି ହସ କୌତୁକର ବାସ୍ତବ ଅଭିନୟ କରିଗଲା ତା'ରି ଠାରେ ହିଁ ସେ ଦେଖିବାକୁ ପାଇଲା ଗୋଟିଏ ଅନିଶ୍ଚିତର ଛାୟା, ଆଶ୍ଚର୍ଯ୍ୟ ! ତେବେ କ'ଣ ଅରୁଣ ତାର ଗୋପ୍ୟ ବସ୍ତୁର ସନ୍ଧାନ ପାଇଛି ?!

* * * *

ଅରୁଣ ଅଗାଧ ଯତ୍ନ କରିଛି; ନିଜଠାରୁ ଯୋଗ୍ୟତର ପାତ୍ର ଅନୁସନ୍ଧାନ କରି ଆଣିଛି । କିନ୍ତୁ ରେଣୁର ଜିଦ୍ ଟଳି ନାହିଁ । ଭଙ୍ଗା ଖପରା ଗୋଟାଇ ନୂତନ ମାଠିଆ ଗଢ଼ିବାର ଦୁଃସାହସିକତାରେ ଆତଙ୍କିତ ହେବା ଛଡ଼ା ଆଉ ସେ କିଛି ଜାଣି ନାହିଁ । ଅରୁଣ ବ୍ୟତୀତ ଅନ୍ୟ କେହି ତାର ରମଣୀ କାମନାକୁ ସମ୍ମାନିତ କରି ପାରିବ, ଏଟା ଯେପରି ବୋଧର ଅତୀତ । ସେବାଶ୍ରମର ସହକାରିଣୀରୂପେ ଯେଉଁ ଦୁଇ ବର୍ଷ ଯା ଭିତରେ ତାର କଟିଗଲା ତା ମଧ୍ୟରେ କାର୍ଯ୍ୟବ୍ୟସ୍ତ ସମୟତକ ବାଦ ଦେଲେ ବାକୀ

ଯେଉଁ ଅବସରମାନ ତାକୁ ମିଳିଛି ସେ ସବୁ ସେ କଟାଇଛି ଅନ୍ତରର ଅନନ୍ତୋଦ୍‌ଗାର ପଥକୁ କେବଳ ବୁଜିବାରେ । ନିଜର ଅତର୍କିତ ମୁହୂର୍ତ୍ତରେ କେତେବେଳେ ଲତିକାର ମୃତ୍ୟୁକାମନା ଜାଗି ଉଠିଲେ, ସେ ପ୍ରାୟଶ୍ଚିତ୍ତ କରିଛି ଆପଣାକୁ ଧିକ୍କାର ଦେଇ । ଅଥଚ ଅଭିମାନ ସେ କରି ନାହିଁ, ଯଦି କରିଥାଏ ଖାଲି ନିଜ ଉପରେ, ଆପଣାର ଅସମର୍ଥତା ଉପରେ, ତାର ଶ୍ରେଷ୍ଠ କାମ୍ୟକୁ ନିଜର କରି ନେବାକୁ ଏତେ ବିଳମ୍ବ କଲା ବୋଲି । ବିଳମ୍ବ ! ନିଶ୍ଚୟ ! ସେ ତାର ଅସୀମ ପ୍ରୀତି ନିବେଦନ କରିବାକୁ ଅଭିସାରଣୀ ସାଜି ଅରୁଣର ଶୟନକକ୍ଷ ପର୍ଯ୍ୟନ୍ତ ପ୍ରବେଶ କରିବାକୁ ଛାଡ଼ି ନାହିଁ, କିନ୍ତୁ କେତେବେଳେ ? ଲେଡ଼ି ଗୁଡ଼ କହୁଣୀକି ବୋହିଯିବା ପରେ । ଆପଣା ଉଚ୍ଚ ସମ୍ମାନବୋଧ ଉପରେ ରେଖାପାତ କରିବାର ଅବକାଶ ନ ଦେଇ ଅରୁଣ ରେଣୁକୁ ଫେରାଇ ଦେଇଛି ଅମାନିଆ ଶିଶୁ ଭଉଣୀ ପ୍ରତି ବଡ଼ଭାଇର ଆଦର ଢାଳି । ଦେବତା ସେ; ମାଟି ଧୂଳିର କାମନା ଘେନି ତାର ପବିତ୍ରତା ଉପରେ ଦାଗ ଲଗାଇବାକୁ ରେଣୁ କିଏ ସେ ? ଏଇ ତାର ଭୟ । କିନ୍ତୁ ଅରୁଣ ତାକୁ ଘୃଣା କରେ ନାହିଁ ତ ? କାହିଁ, ତାଚ୍ଛଲ୍ୟ ତା ବିଦ୍ରୂପର ଆଭାସ ତ ଅରୁଣର ଆଖି ମୁଖରେ କେବେ ସେ ଦେଖି ନାହିଁ । ଏମିତିକି ସେଇ ଜନହୀନ ରାତ୍ରିର ଲଜ୍ଜାକର ସଂଘଟନରେ ବି ତାକୁ ସେ ଦେଖିଛି ସ୍ୱଚ୍ଛ, ପ୍ରଶାନ୍ତ, ନିଷ୍କପଟ । ନା, ସେ ଘୃଣା କରି ପାରେ ନା, ତା ହେଲେ ଯେ ରେଣୁ ବହୁଦିନୁ ମରି ଥାନ୍ତା । ଅରୁଣର ଅନୁରାଗ ତାର ଅନ୍ତର ଚାହେଁ । ଆଉ ଏହି ଅନୁରାଗର ସନ୍ଧାନ ନ ନେଇ ସେ ମରି ସୁଦ୍ଧା ପାରିବ ନାହିଁ ।

* * * *

ଦୁଇଦିନ ଗୋଟିଏ ରାତ୍ରିର ମରଣାନ୍ତ ବେଦନା ପରେ ସନ୍ଧ୍ୟା ପୂର୍ବରୁ ପୁତ୍ରଟିଏ ଭୂମିଷ୍ଠ କରି ଲତିକା ସଂଜ୍ଞାହୀନ ହୋଇ ପଡ଼ିଲା । ଏହି ସନ୍ଧିକ୍ଷଣରେ ଲତିକାକୁ ଛାଡ଼ି ଦଶ ମିନିଟ୍ ସୁଦ୍ଧା ଅନ୍ତର ହୋଇ ରହିବାର ରେଣୁକୁ କେହି ଦେଖି ନାହିଁ । ଈର୍ଷ୍ୟାର ତାଡ଼ନାରେ ଅନିଚ୍ଛା ସତ୍ତ୍ୱେ ଲତିକାର ଅମଙ୍ଗଳ ହୁଏ ତ ସେ ପାଞ୍ଚିଛି, କିନ୍ତୁ କୃପା ଛଡ଼ା ଅନ୍ୟ କିଛି ତା ଅନ୍ତରକୁ ଛୁଇଁ ନାହିଁ । ତାକୁ ସେ କୃପା କରିଛି; କାରଣ ସେ ଜଣେ ଅରୁଣକୁ ତାଠୁଁ ଛଡ଼ାଇ ନେବାଟା ଲତିକାର ଅନ୍ୟାୟ, ତାର ଅତି ସୁକୁମାର ଅଙ୍ଗରେ ଏଟା ଯିବ ନାହିଁ । ଲତିକା ଦେଇ ସେ ଯେ ଅରୁଣର କାର୍ଯ୍ୟରେ ଲାଗିପାରିଛି । ଆଶ୍ରମ ଛାଡ଼ି ଏଇ କେତେଦିନ ଏଠି କଟାଇବାରେ ତାର ମସ୍ତବଡ଼ ଲାଭ ଏଇ । ଡାକ୍ତର, ଧାତ୍ରୀ ଏମାନେ ରୋଗିଣୀ ପ୍ରସୂତିର ପରିଚର୍ଯ୍ୟାରେ ଲାଗିଛନ୍ତି; କିନ୍ତୁ ଶିଶୁଟି ଉପରେ ଅଧିକାର ଏକା ତାରି । ଅରୁଣର ରକ୍ତରେ ଅରୁଣର ଛାପ ଘେନି ଯେ ଏ ଲହୁଣୀ ପିତୁଳାର ସୃଷ୍ଟି ତାକୁ ଆଉ କାହାରି ହାତକୁ ଟେକି ସେ ଦେଇପାରେ ନା । ମାତାର ଗୌରବରେ ସେ ସମସ୍ତ ଜାତସଂସ୍କାର ସାରି ନିଦ୍ରିତ ଶିଶୁକୁ ଆପଣା କୋଳରୁ ଓହ୍ଲାଇ ଶୁଆଇ ଦେବାକୁ ଯାଉଛି, ଲତିକାର ସଂଜ୍ଞା ଫେରିଲା ।

ନାରୀସୁଲଭ କୌତୁହଳରେ କ'ଣ ସେ ଖୋଜିବାର ଦେଖି ରେଣୁ ଟିକିଏ ଗର୍ବିତା ଭଳି ଶିଶୁକୁ ତା ଆଖି ଆଗକୁ ନେଇ ଧରିବାରେ କ୍ଲାନ୍ତ ଅବସନ୍ନ ମୁଖରେ ଲତିକାର କ୍ଷୀଣ ହସ ଫୁଟି ଉଠିଲା । 'ମୁଁ ଶୁଏଁ, ଭଉଣୀ' କହି ସେ ପୁଣି ଚକ୍ଷୁ ମୁଦ୍ରିତ କଲା ।

ଟାଉନରୁ ବଡ଼ ଡ଼ାକ୍ତର ଆସି ବିଧି ବ୍ୟବସ୍ଥା କରି ଦେବା ବେଳେ ସେଠି ଠିଆ ହୋଇ ରହିବାର ସାହସ ଅରୁଣର ନ ଥିଲା । 'ଅବସ୍ଥା ସାଂଘାତିକ' ଜାଣେ ଏହି କଥା ଡାକ୍ତର କହିବେ ଏହି ଭୟରେ ସେ ବାଡ଼ିପଟ ବଗିଚା ଭିତରେ ଲୁଚି ଆସନ୍ନ ବିପଦର ଦୂରରେ ଆତ୍ମଗୋପନ କରିବାର ପ୍ରବଞ୍ଚନା ମାତ୍ର କରୁଥିଲା ।

ବଡ଼ ଡାକ୍ତରଙ୍କ ଅଭୟ ବାଣୀରେ ସବୁଠାରୁ ବେଶୀ ଆଶ୍ୱାସନା ପାଇଲା ରେଣୁ । ସେ ଯେ ଆଶଙ୍କା କରୁଥିଲା ନିଜର ଅତର୍କିତ ଅବସ୍ଥାରେ ଲତିକାର ଯେଉଁ ଅମଙ୍ଗଳ ସେ କେବେ କେବେ ଚିନ୍ତିଛି, ଦୁର୍ଦ୍ଦୈବ ହୁଏ ତ ସେଇ କଥା ଶୁଣିଛି । ଅଧୀର ଆବେଗରେ ତାର ସେଇ ଘର କୋଣ ଭିତରେ ଯେପରି ଶ୍ୱାସ ରୁଦ୍ଧ ହୋଇ ପଡୁଥିଲା ତାକୁ ଟିକିଏ ମୁକ୍ତି ଦେବା ପାଇଁ ସେ ଧାଇଁଲା ବଗିଚା ଭିତରକୁ ।

ଖଣ୍ଡେ ଦୂର ଭିତରକୁ ଯାଇ ନାହିଁ, ପଛରୁ କାହାର ହାତ ସ୍ପର୍ଶ ସେ ଅନୁଭବ କଲା । ଘୁରି ପଡ଼ି ଅନ୍ଧକାରରେ ସୁଦ୍ଧା ଅରୁଣର ମୁଖରେ ସେ ନିଃସହାୟତା ଦେଖି ପାରିଲା । ମୁହୂର୍ତ୍ତକ କେହି କିଛି କହି ପାରିଲେ ନାହିଁ । ଅରୁଣର ଭୟ ଲତିକାର ବୋଧହୁଏ ଏଇ ଶେଷ । ଆଉ ରେଣୁ ? ସେ ଯାହାକୁ ନିକଟରେ ପାଇଲେ ପ୍ରଲୋଭନର ସୀମା ଅତିକ୍ରମ କରି ଯାଇ ପାରେ ବୋଲି ଆଶଙ୍କା କରି ତାଠାରୁ ଦୂରରେ ଦୂରରେ ନିଜକୁ ରଖିଥିଲା ସେହି ଆଜି ଅପ୍ରତ୍ୟାଶିତ ଭାବରେ ଏଇ ଗଛଲତାର ଗହଳି ଅନ୍ଧକାରରେ ତାକୁ ସ୍ପର୍ଶ ସୁଖ ଦିଏ । ଅରୁଣକୁହିଁ ନୀରବତା ଭାଙ୍ଗିବାକୁ ହେଲା । ''କ'ଣ କହିଲେ ଡାକ୍ତର ? ଆଶା ଅଛି ?'' ରେଣୁର ଚମକ ଭାଙ୍ଗିଲା, ତାର ମନେ ହେଲା ଏ ଭାଷା ଯେପରି ଅରୁଣର ନୁହେଁ, ଗୋଟାଏ ଅର୍ଦ୍ଧମୃତ ପିଣ୍ଡର । ଅବଳା ହେଲେ ସୁଦ୍ଧା ଆବଶ୍ୟକ ବେଳେ ନିଜକୁ ସବଳ କରିବାର ଶକ୍ତି ଅରୁଣଠାରୁ ରେଣୁର ଢେର ବେଶୀ ସେ ଜାଣେ । ଅରୁଣକୁ ଏପରି ଭୀତିବିହ୍ୱଳ ଦେଖି ସେ ଟିକିଏ ବିବ୍ରତ ହୋଇଥିଲା ସତ, କିନ୍ତୁ ସମ୍ଭାଳି ନେବାକୁ ବେଶୀ ଡେରି ହେଲା ନାହିଁ । ଯେତେଦୂର ପାରେ କଣ୍ଠରେ ଆଶ୍ୱାସନା ଭରି କହିଲା, ''ତୁମେ ଏମିତି ପିଲା ହେଲେ ଚଳିବ ?''

ଆହୁରି ଅଧୀର ହୋଇ ଅରୁଣ କହିଲା, ''ରେଣୁ, ତୁମେ ମୋର କ'ଣ ନ କରିଛ ? ଲତିକାକୁ ଫେରାଇ ଆଣି ପାରିବ ଏକା ତୁମେ; କୁହ ପାରିବ ।''

ରେଣୁର ହସିବାକୁ ଇଚ୍ଛା ହେଲା । ତଥାପି ସେ ଭାବ ଦମନ କରି କହିଲା, ''ତୁମକୁ ସେ ଚିନ୍ତା କରିବାକୁ ହେବ ନାହିଁ । ଲତିକାର ବଞ୍ଚିବା ଶକ୍ତି ଢେର ।''

''କୁହ ରେଣୁ, ତୁମର ରାଗ ଅଭିମାନ ନାହିଁ, ତୁମେ ତାକୁ ବଞ୍ଚାଇବ;

